ଭୋକ ବିଳାସ
ଡ. ବାସନ୍ତୀ ମହାନ୍ତିଙ୍କ ଗଦ୍ୟ ସଂକଳନ

ପ୍ରକାଶକ : ଟା ଇ ମ୍ ପା ସ୍

ପ୍ରଥମ ସଂସ୍କରଣ : ୨୦୧୯



---

**bhoka bilâsa**
*an anthology of odia prose* by
**dr basanti mohanty**

published & printed by **timepass**
950 (P), green villa, nk marg, baramunda, bhubaneswar

cover design : ramakanta samantaray
first impression : 2019

**₹ 245.00**

---

# ଲେଖକୀୟ

'ଭୋକ ବିଳାସ' ମୋର ପଞ୍ଚମ ସ୍ତମ୍ଭ ସଂକଳନ । ଏଥିପୂର୍ବରୁ 'ପ୍ରଳୟ ପରର ଜୀବନ', 'ପ୍ରଗତି ଓ ପରମ୍ପରା', 'ଦୃଷ୍ଟି ଓ ଦିଗନ୍ତ', 'ନାରୀ ନୀତି ନିୟତି' ଶୀର୍ଷକରେ ଚାରିଖଣ୍ଡ ସ୍ତମ୍ଭ ସଂକଳନ ପ୍ରକାଶିତ ହୋଇ ବେଶ୍ ପାଠକୀୟ ଆଦୃତି ଲାଭ କରି ସାରିଛି । ସାଂପ୍ରତିକ ସମସ୍ୟା ଆଧାରିତ ଏହି ପୁସ୍ତକର ବହୁଳାଂଶ ଓଡ଼ିଶାର ଲୋକପ୍ରିୟ ଦୈନିକ ସମ୍ବାଦପତ୍ର ନିତିଦିନରେ ପ୍ରକାଶିତ । ଏହି ଅବସରରେ ନିତିଦିନର ପୂର୍ବତନ ସଂମ୍ପାଦକ ସମ୍ପଦ ମହାପାତ୍ର, ବର୍ତ୍ତମାନର ସମ୍ପାଦକ ମନୋଜ ମହାପାତ୍ର ତଥା ସଶ୍ରଦ୍ଧ ତାଗିଦ୍ ପୂର୍ବକ ମୋ ଠାରୁ ଲେଖା ଆଦାୟ କରିନେଉଥିବା ସଂମ୍ପାଦକୀୟ ପରାମର୍ଶଦାତା ଅରବିନ୍ଦ ପରିଡ଼ାଙ୍କ ପାଖରେ ମୁଁ କୃତଜ୍ଞ ।

ଲେଖାଟିଏ ପ୍ରକାଶିତ ହେଲେ ଓଡ଼ିଶାର କୋଣ ଅନୁକୋଣରୁ ଭାସି ଆସୁଥିବା ଶ୍ରଦ୍ଧାସିକ୍ତ ପାଠକୀୟତା ମୋ ସାମର୍ଥ୍ୟ । ମୋ ସାରସ୍ୱତ ପଥର ପୁଞ୍ଜି । ଏ ପୁଞ୍ଜିଦାତାଙ୍କ ଅବଦାନକୁ ସାମାନ୍ୟ ଧନ୍ୟବାଦଟିଏ ଦେଇ ଲଘୁ କରିବାକୁ ଚାହୁଁନାହିଁ । ମୁଁ ଋଣୀ ହୋଇ ରହିଲି ଆଜୀବନ ସେମାନଙ୍କ ପାଖରେ । ପୁସ୍ତକଟିକୁ ତ୍ୱରାନ୍ୱିତ କରିବାରେ ଶ୍ରଦ୍ଧେୟ ବିଭୁ (ଦିବ୍ୟ ମୁଦ୍ରଣୀ)ର ଅବଦାନକୁ ଭୁଲି ହେବନାହିଁ । ତାକୁ ମୋର ଆଶୀର୍ବାଦ ।

ଶେଷରେ ଟାଇମ୍‌ପାସ୍‌ର ସୁଯୋଗ୍ୟ ପ୍ରକାଶକ ଶ୍ରୀ ସରୋଜ ବଳ ଏ ପୁସ୍ତକଟିର ପ୍ରକାଶନ ଦାୟିତ୍ୱ ହାତକୁ ନେଇ ମୋତେ ଅନୁଗୃହୀତ କରିଛନ୍ତି ।

ଏ ସଂକଳନଟିର ପରିକଳ୍ପନା ଠାରୁ ପରିପ୍ରକାଶ ପର୍ଯ୍ୟନ୍ତ ଯେଉଁ ଦୁଇଜଣ ଶ୍ରଦ୍ଧାର ସହ ମୋର ସାରସ୍ୱତ ଦୌରାତ୍ମ୍ୟକୁ ସହ୍ୟ କରି ମୋତେ ସବୁ ପ୍ରକାର ସାହାଯ୍ୟ ସହଯୋଗରରେ ଅନୁକୂଳ ପରିବେଶଟିଏ ଯୋଗାଇ ଦେଇଛନ୍ତି ସେମାନେ ହେଉଛନ୍ତି ମୋ ପୁଅ ଇଲୁ (ସ୍ୱୟଂସିଦ୍ଧ) ଓ ତା ବାପା, ଶ୍ରୀହର୍ଷ । ମୁଁ କୃତଜ୍ଞ ସେମାନଙ୍କ ପାଖରେ । 'ଭୋକବିଳାସ' ସଂକଳନଟି ମୋ ପାଠକମାନଙ୍କର ପଠନ ଭୋକ ଚରିତାର୍ଥ କରିବା ଦିଗରେ ସହାୟକ ହେଲେ ମୋ ଶ୍ରମ ସାର୍ଥକ ହେଲା ବୋଲି ଜାଣିବି ।

**- ବାସନ୍ତୀ ମହାନ୍ତି**

# ସୂଚୀପତ୍ର


| | |
|---|---|
| ମୋହଗ୍ରସ୍ତ ସୃଜନଶୀଳତା | ୦୭ |
| ଭୋକ ବିଳାସ | ୧୧ |
| ଅନ୍ଧବିଶ୍ୱାସ ଓ ବିଶ୍ୱାସଘାତକତା | ୧୪ |
| ପୁସ୍ତକ ପ୍ରଦର୍ଶନ - ଜ୍ଞାନ, ଅଜ୍ଞାନ ଓ ଅପଜ୍ଞାନ | ୧୭ |
| ଅପ୍ରାପ୍ତବୟସ୍କଙ୍କ ଅପରାଧ | ୨୧ |
| ଘଟଣା, ଅଘଟଣ ଓ ଦୁର୍ଘଟଣା | ୨୫ |
| କିଏ ଫୁଲ କିଏ ସୁରଭି ? | ୨୯ |
| ଭାଷା ଗୌରବ | ୩୪ |
| ସାହିତ୍ୟ ସତ୍ୟ ପାଇଁ ନା ହିତ ପାଇଁ ? | ୩୯ |
| ଆଦିମ ପ୍ରବୃତ୍ତି | ୪୩ |
| ଅଜବ ଗୁଜବ | ୪୭ |
| ମାତୃ ଆବାହନୀ | ୫୧ |
| ବିଦୁଷୀ ମାଆର ବିକୃତ ମସ୍ତିଷ୍କ କନ୍ୟା | ୫୫ |
| ଋଣ ବୋଝ | ୫୯ |
| ନାରୀ ଓ ଚାକିରି | ୬୩ |
| ସ୍ତ୍ରୀ ଧନ | ୬୭ |
| ପତିତାଶ୍ରମ କାହିଁକି ? | ୭୧ |
| କନ୍ୟାଶ୍ରମର କଳଙ୍କ | ୭୫ |
| ସା ବିଦ୍ୟା ଯା ନିଯୁକ୍ତୟେ | ୭୮ |
| ଚେଙ୍କ ଚିକିତ୍ସା | ୮୨ |
| ପୀଡ଼ିତାଙ୍କ ପ୍ରତି ଆମ ସାମାଜିକ ଦୃଷ୍ଟିକୋଣ | ୮୬ |
| ଗଣମାନସିକତା ଓ ଗଣଦାୟିତ୍ୱ | ୯୦ |
| ଲୋକଲଜ୍ଜା | ୯୪ |
| ଭିକ୍ଷୁ ସଂସ୍କୃତି ଓ ଭିକ୍ଷୁକ ପ୍ରବୃତ୍ତି | ୯୮ |
| ଅଙ୍ଗ ଦାନ ଓ ଅଙ୍ଗ ଛିନ୍ନ | ୧୦୨ |
| ସ୍ୱାମୀ ବନାମ୍ ଜୀବନସାଥୀ | ୧୦୬ |
| ଦୁଃଶୀଳ ମାତୃଦୋକ୍ଷେଣ | ୧୧୦ |
| ମାଣ୍ଡିଆ ରାଣୀ ଉପାଖ୍ୟାନ | ୧୧୪ |

କାଷ୍ଟିଂ କାଉଚ୍ ୧୧୭
ଗଣଦେବତା ଓ ଗଣ ଅସନ୍ତୋଷ ୧୨୧
ଗଣେଶଙ୍କ ଫାଦର୍ ଓ ଆମ ପ୍ରବୁଦ୍ଧମାନେ ୧୨୫
ପୁଅର ମାଆ ୧୨୯
ଦକ୍ଷଯଜ୍ଞଠାରୁ ଦାନ ମାଝୀ ପର୍ଯ୍ୟନ୍ତ ୧୩୩
ମାନିଯିବା ଓ ସହିଯିବା ୧୩୭
ନିଶାର୍ଦ୍ଧରେ ରାଜରାସ୍ତାରେ ନିଶାଗ୍ରସ୍ତ ଯୁବତୀ ୧୪୦
ଦୁର୍ଗା ଦଶଭୁଜା ୧୪୪
ମାତୃପକ୍ଷ ୧୪୭
ସୁରକ୍ଷା କବଚ ବନାମ ଢାଲ ୧୫୧
ଆତ୍ମହତ୍ୟା ଅନ୍ତରାଳେ ୧୫୬
ସରକାରୀ ସଂସ୍ଥା ଓ ଜନତାଙ୍କ ଶ୍ରଦ୍ଧା ୧୬୦
ଗେରସ୍ତ ଅଯୋଗ୍ୟ ପଣେ... ୧୬୪
ଋଣଂ କୃତ୍ୱା ଘୃତମ୍ ପିବେତ୍ ୧୬୮
ମୃତ୍ୟୁର ମୋହ ୧୭୨
ସ୍ୱର୍ଗ ଓ ନରକର ଅନୁଚିନ୍ତା ୧୭୬
ସିନ୍ଦୁରା ଫାଟିବାର ବେଳ ୧୮୦
ନିଃସ୍ୱ ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ୧୮୪
ଶବ ସାଧନା ଓ ସ୍ମୃତି ଶ୍ରଦ୍ଧାଞ୍ଜଳି ୧୮୮
ମୂର୍ଚ୍ଛନା ଫାଟିବାର ଯନ୍ତ୍ରଣା ୧୯୨
ପୁରୁଷଙ୍କ ନ୍ୟାୟ ଦାବି ୧୯୬
'ମି ଠୁ' ମେଧ ଯଜ୍ଞ ୨୦୦
କବି ହେବାର ବାସନା ୨୦୪
ଶାବରୀମାଳା ପାଇଁ ରେଡି ଟୁ ୱେଟ୍ ୨୦୮
ଶୋଷିତ ବାର୍ଦ୍ଧକ୍ୟ ୨୧୧
ପୁନଶ୍ଚ କନ୍ୟାଶ୍ରମରେ କଳଙ୍କ ୨୧୫
ମୋହଗ୍ରସ୍ତ ସୃଜନଶୀଳତା ୨୧୮
ଚଣ୍ଡିକ୍ଲିଅର୍, ଆଦିଲ୍ ଓ ଅଶ୍ୱତ୍ଥାମା ୨୨୨
ମାଦକୀୟ ସୁଖ ଓ ଆଧ୍ୟାତ୍ମିକ ସୁଖ ୨୨୬
ଅଧ୍ୟାପନା, ଅଧ୍ୟୟନ ଓ ବାୟୋମେଟ୍ରିକ୍ ୨୨୯

# ମୋହଗ୍ରସ୍ତ ସୃଜନଶୀଳତା

ଶବ୍ଦରେ କୋଣାର୍କ ଗଢୁଥିବା ଶିଳ୍ପୀମାନଙ୍କୁ ସାରସ୍ୱତ ଜଗତର ବ୍ରହ୍ମା ବା ପ୍ରଜାପତି ବୋଲି କୁହାଯାଇଛି। ଅପାର କାବ୍ୟ ସଂସାରରେ କବିରେବ ପ୍ରଜାପତି। ଶତପଥ ବ୍ରାହ୍ମଣରେ ଶବ୍ଦକୁ ବ୍ରହ୍ମର ମାନ୍ୟତା ଦିଆଯାଇଛି। ବାଇବେଲ୍‌ରେ ସୁଦ୍ଧା ଶବ୍ଦକୁ କୁହାଯାଇଛି ଈଶ୍ୱର। ଏହି ଶବ୍ଦ ବ୍ରହ୍ମକୁ ନେଇ ସାଧନା କରୁଥିବା ଶବ୍ଦଶିଳ୍ପୀମାନଙ୍କୁ ଈଶ୍ୱରଙ୍କ ସମକକ୍ଷ ହେବାପରି କିଛି ମାନ୍ୟତା ଦେବାରେ କୌଣସି ଅଯଥାର୍ଥତା ନାହିଁ। ଏକାଗ୍ରତା, ନିଷ୍ଠା ଓ ବିଶ୍ୱସ୍ତତାର ସହ ଏହି ଶବ୍ଦମାନଙ୍କୁ ନେଇ ଅହରହ ଶିଳ୍ପମନସ୍କ ହୋଇ ରହୁଥିବା ଏହି କ୍ଷୁନକୁନି ଈଶ୍ୱରମାନେ ବେଳେବେଳେ ପଥ ହୁଡନ୍ତି। ନିଜର ଜ୍ଞାନଗାରିମା ଓ ବିଭୁଦ ପ୍ରତିଭାକୁ ନିଲାମ କରିଦିଅନ୍ତି ଅର୍ଥ ବା ପୁରସ୍କାର ମୋହରେ। କ୍ଷମତାଶାଳୀ ଲୋକଙ୍କର ସ୍ତୁତିଗାନ କରନ୍ତି। ଅହଂଚେତନାକୁ ଭୂଲୁଣ୍ଠିତ କରନ୍ତି। ବିଭୁଦତ୍ତ ପ୍ରତିଭାର ସେ ଅମର୍ଯ୍ୟାଦା କରନ୍ତି।

ଏମିତି କଥାଟିଏ। ସଖୀ ପରିଚାରିକାଙ୍କ ଗହଣରେ ରାଜଜେମା ଯାଇଥିଲେ ବନ ବିହାରରେ। ସଦା ଚଳଚଞ୍ଚଳ ଖୁସି ମିଜାଜ୍‌ର ଜେମାଙ୍କ କାନରେ ପଡିଲା ହୃଦୟରେ କୋମଳ ବେଦନା ସୃଷ୍ଟି କରୁଥିବା ଏକଟଣା ବଂଶୀ ସ୍ୱନଟିଏ। ଆନମନା ହୋଇଗଲେ ଜେମା। ବଂଶୀର ବିରହସ୍ୱନ ତାଙ୍କ ନିଃସଙ୍ଗ ହୃଦୟରେ ସୃଷ୍ଟି କଲା ଅସହ୍ୟ ଯନ୍ତ୍ରଣା। ନିଜ ଚମ୍ପା କଢ଼ି ଆଙ୍ଗୁଠିରୁ ମୁଦ୍ରିକାଟି ବାହାର କରି ସଖୀକୁ ଦେଇ କହିଲେ - ଯାଆ ଏଇଟା ଦେଇ ବଂଶୀ ବାଦକକୁ ବଂଶୀବାଦନ ବନ୍ଦ କରିବାକୁ କହିବୁ। ଆଦେଶ ପାଳନ କଲା ସଖୀ। କିନ୍ତୁ ଫେରିଆସି ଜେମାଙ୍କ ହାତକୁ ମୁଦ୍ରିକାଟି ଫେରସ୍ତ ଦେଇ ବଂଶୀବାଦକର ଯେଉଁ ସର୍ତ୍ତ କଥା କହିଲା, ସେଥିରେ ହାତେ ଲମ୍ବ ଜିଭ କାମୁଡିଲେ ଜେମା। ଏ ମା ! କମ୍ ତ ସାହସ ନୁହେଁ ଟୋକାଟାର। ଚାହିଁଥିଲେ ବାପାଙ୍କୁ କହି ତା ମୁଣ୍ଡକାଟ କରିବାକୁ ମୁହୂର୍ତ୍ତେ ଲାଗିନଥା'ନ୍ତା ତାଙ୍କୁ। କିନ୍ତୁ ସେ ବେଦରଦୀ ନଥିଲେ। ଦୁଇ ହାତରୁ ଦୁଇଟା ସ୍ୱର୍ଣ୍ଣ କଙ୍କଣ ବାହହାର କରି ସେ ସଖୀ ହାତକୁ ଦେଇ କହିଲେ - ଏ ଦୁଇଟା ତାକୁ ଦେବୁ ଓ ବୁଝେଇ କହିବୁ, ସେ ବନ୍ଦ କରିଦବ ବଂଶୀ ବଜାଇବା। ଏଥର ବି ଫେରିଆସି ସଖୀ ସେଇ ସର୍ତ୍ତ ଦୋହରାଇଲା।

ତାର ସେଇ ସର୍ତ୍ତ। ସେଇ ଜିଦ୍। ରାଜାଝିଅ ତାକୁ ବାହାହେବା ପାଇଁ ପ୍ରତିଶ୍ରୁତି ଦେଲେ ସେ ବନ୍ଦ କରିଦେବ ତା ବଂଶୀବାଦନ। ଲାଜରେ ସଢ଼ିଗଲା ରାଜାଝିଅ। ଛି, ଛି, ଏ କି ଅଲାଜୁକ କଥା। ଏଥର ବେକର ମୁକ୍ତାମାଳଟି ସଖୀ ହାତରେ ଗୁଞ୍ଜିଦେଇ କହିଲେ ଯାଇ ଦେଖ୍ ତ, ଲୋକଟା ବୁଝୁଛି କି ନାହିଁ। ପୁଣି ଫେରିଲା ସଖୀ ନିରାଶରେ। ଏଥରକ ମୁଣ୍ଡର ସୁନା ମୁକୁଟଟି ବାହାର କରି ସଖୀ ହାତରେ ଦେଇ କହିଲେ ଏଇଥର ଶେଷ ଚେଷ୍ଟା କରି ଦେଖ କ'ଣ କହୁଛି ଲୋକଟା। ତା'ପରେ ଯାହା କରିବା। ସଖୀ ହାତରେ ସୁନା ମୁକୁଟିକୁ ଦେଖି ବଂଶୀ ବାଦକ ଲୋଭାତୁର ହୋଇ ଚାହିଁଲା। ଅଷ୍ଟ ଅଳଙ୍କାର ଖଚିତ ବହୁ ମୂଲ୍ୟବାନ୍ ମୁକୁଟ। ଏତେ ପାଖରୁ ସେ କେବେ ଏମତି ଜିନିଷ ଦେଖି ନଥିଲା। ଲୋଭ ସମ୍ବରଣ କରିପାରିଲା ନାହିଁ। ମୁଣ୍ଡ ନୁଆଁଇ ସଖୀ ହାତରୁ ମୁକୁଟଟି ଗ୍ରହଣକଲା ଓ କେବଳ ଏଇଠି ନୁହେଁ, ଯଦି ରାଜାଝିଅ କହିବେ ସେ ଆଉ କେବେ ବି କୋଉଠି ବଂଶୀବାଦନ କରିବ ନାହିଁ ବୋଲି ପ୍ରତିଶ୍ରୁତି ଦେଇ ଚାଲିଗଲା। ଗଡ଼ଟିଏ ଜିତିଲା ପରି ସଖୀ ଫେରିଆସି ସବୁ କଥା ଜେମାକୁ କହିଲା। ଖୁସି ହୋଇ ପାରିଲେ ନାହିଁ ଜେମା। ଗୋଟିଏ ଅବରୁଦ୍ଧ ବେଦନାରେ ସ୍ୱଗୋତୋକ୍ତି କଲେ - ହତଭାଗ୍ୟ ତୁ କ'ଣ କଲୁ! ସୁନା ମୁକୁଟର ମୋହ ତୁଟେଇ ପାରିଥିଲେ ତୁ ମୋ ହୃଦୟରେ ରାଜ ରାଜେଶ୍ୱର ହୋଇପାରିଥା'ନ୍ତୁ। କାହାଣୀଟି କେଉଁ ଲୋକ କଥାକାର ମୁହଁରୁ ବାହାରିଥିଲା ଜଣାନାହିଁ, କିନ୍ତୁ କାହାଣୀଟିର ଆବେଦନ ମୋହଗ୍ରସ୍ତ ସୃଜନଶୀଳ ସାହିତ୍ୟିକମାନଙ୍କ ପାଇଁ ଅତ୍ୟନ୍ତ ଉପାଦେୟ।

ଏଇ ସୁନାମୁକୁଟର ମୋହ ସୃଜନଶୀଳ ପ୍ରତିଭାଙ୍କ ପାଇଁ ସବୁଠାରୁ ବଳି ବଡ ଶତ୍ରୁ। ଅବଶ୍ୟ ପ୍ରତିଭାଧରମାନଙ୍କର ସାମାଜିକ ସ୍ୱୀକୃତି କାମନା କରିବାରେ କିଛି ଅଯଥାର୍ଥତା ନାହିଁ। ସମ୍ମାନ ସମ୍ବର୍ଦ୍ଧନା ପୁରସ୍କାର ଆଦି ତା'ପାଇଁ ପ୍ରେରଣାପଦ, ଉତ୍ସାହ ବର୍ଦ୍ଧକ। କିନ୍ତୁ ଲକ୍ଷ୍ୟସ୍ଥଳ ନୁହେଁ। ତା ଯାତ୍ରାପଥରେ ଆଗକୁ ମାଡିଯିବାପାଇଁ ଏସବୁ ପ୍ରଚୋଦନା ମାତ୍ର। ଶୀର୍ଷତମ ବିନ୍ଦୁରେ ପହଞ୍ଚିବାପାଇଁ ଆବଶ୍ୟକ ଅସୀମ ଧୈର୍ଯ୍ୟ, ଗଭୀର ଅଧ୍ୟବସାୟ। ପ୍ରକୃତରେ ଲେଖାଟି ପାଇଁ ସାରସ୍ୱତ ସାଧକଟି ନିଷ୍ଠାର ସହ ଯେଉଁ ପରିଶ୍ରମ କରିଥାଏ ତାହା କେବେ ବ୍ୟର୍ଥ ଯିବନାହିଁ। ଆମ ପୂର୍ବଜମାନେ ଲେଖାଟିଏ ଲେଖିସାରି କାଳ ହସ୍ତରେ ଅର୍ପଣ କରି ଦେଉଥିଲେ। ବିପୁଳା ଚ ପୃଥ୍ୱୀରେ ନିରବଧିକାଳ ପର୍ଯ୍ୟନ୍ତ ପ୍ରତୀକ୍ଷା କରୁଥିଲେ। ଦିନେ ନା ଦିନେ କେହି ନା କେହି ଲେଖକର କୃତୀକୁ ସମ୍ମାନ ଦେବ। ଶ୍ରମ ସେତେବେଳେ ସାର୍ଥକ ହୋଇଯିବ। ଏହି ଆଶାରେ କାଳାତିପାତ କରୁଥିଲେ।

ଆମର ସେମାନଙ୍କ ପରି ଧୈର୍ଯ୍ୟଶୀଳତା ନାହିଁ। ସବୁଠାରୁ କମ୍ ସାମର୍ଥ୍ୟ ବିନିୟମ କରି ସର୍ବାଧିକ ସାଦର ସ୍ୱୀକୃତି ପାଇବାର କାମନାରେ ଆମେ ମୋହଗ୍ରସ୍ତ। ଯୁଗୀୟ ପ୍ରବୃତ୍ତି ଉପଭୋକ୍ତା ମାନସିକତା ଆମ ସୃଜନୀ କଳାକୁ ବି ଆକ୍ରାନ୍ତ କରିସାରିଲାଣି। ଆମ ସୃଷ୍ଟିକୁ ଆମେ ଉତ୍ପାଦିତ ବସ୍ତୁ ରୂପେ ଗ୍ରହଣ କରିସାରିଲୁଣି। ତାର ବିଜ୍ଞାପନ ପାଇଁ ଆମେ ସମ୍ମାନ ସ୍ୱୀକୃତି ଅଥବା ପୁରସ୍କାର ଉପଢ଼ୌକନର ପୃଷ୍ଠା ଖୋଜୁଛୁ। ଥରେ ଏହି ମୋହରମାନ ବାଜିଗଲେ ବହିଟିକୁ କେହି ପଢ଼ନ୍ତୁ ବା ନପଢ଼ନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ। ବହିଟିକୁ ପଢ଼ି କେହି ଭ୍ରୂକୁଞ୍ଚିତ କରୁଛି ଅଥବା ପ୍ରଶଂସା କରୁଛି ସେଥିପ୍ରତି ମଧ୍ୟ ଆମର ଖାତିର ନଥାଏ। ଏତିକିରେ ଆମର ଚରମପ୍ରାପ୍ତି ହେଲାପରି ଆମେ ଅନୁଭବ କରୁ। ଆମର ଏ ମିଛ ମୋହକୁ ପରିପୁଷ୍ଟ କରିବାପାଇଁ ସଂସ୍ଥାମାନଙ୍କର ବି ଅଭାବ ନାହିଁ। ପୁରୁଷ୍କୃତ ବା ସମ୍ବର୍ଦ୍ଧିତ ବ୍ୟକ୍ତିଙ୍କ ଅର୍ଥରେ ଏ ସଂସ୍ଥା ଚାଲେ। ମାଛ ତେଲରେ ମାଛ ଭାଜି ଏମାନେ ବେଶ୍ ଦି'ପଇସା ଅର୍ଜନ କରନ୍ତି। ଗୋଟିଏ ମଞ୍ଚରେ ଅର୍ଦ୍ଧଶତକ ପର୍ଯ୍ୟନ୍ତ ସମ୍ବର୍ଦ୍ଧିତ ପ୍ରତିଭା ଥା'ନ୍ତି। ସେମାନଙ୍କଠାରୁ ମୋଟା ଅଙ୍କର ଅର୍ଥ ନେଇ ଲଲିପପ୍ ପରି ସେମାନଙ୍କ ହାତରେ ଧରେଇ ଦିଅନ୍ତି ମାନପତ୍ର ଓ ଫୁଲ ତୋଡା। ଆମର ସମ୍ମାନରଙ୍କ ସାହିତ୍ୟିକମାନେ ଏହାକୁ ସର୍ବଶ୍ରେଷ୍ଠ ପ୍ରାପ୍ତି ବୋଲି ଅନୁଭବ କରନ୍ତି। ଏହି ଭଳି ପ୍ରହସନ ଭିତରେ କ୍ରମାଗତ ତାର ପ୍ରତିଭା ଯେ ଅବକ୍ଷୟମୁଖୀ ହେଉଥାଏ ସେଥିପ୍ରତି ସେ ସଂପୂର୍ଣ୍ଣ ଉଦାସୀନ ଥାଏ।

କଳାକୁ ମୂଲ୍ୟାଙ୍କନ କରିବାପାଇଁ ଠିକା ରୂପେ ନେଇଥିବା ଅନୁଷ୍ଠାନମାନେ କଳା ଓ କଳାକାରଙ୍କୁ ପୁରସ୍କୃତ କରନ୍ତି କି ତିରଷ୍କୃତ କରନ୍ତି, ସମ୍ମାନିତ କରନ୍ତି କି ଅସମ୍ମାନିତ କରନ୍ତି, ତାହା ଦାତା ଓ ଗ୍ରହୀତା ଭଲ ଭାବରେ ଜାଣିଥା'ନ୍ତି। ତଥାପି ଏ ପ୍ରହସନ ଚାଲିଛି, ଚାଲୁଥିବ। ଅର୍ଥପାଇଁ ବ୍ୟବସାୟିକ ସଂସ୍ଥାମାନେ ଯେକୌଣସି ସ୍ତରକୁ ଯିବା ସ୍ୱାଭାବିକ। କିନ୍ତୁ ସାମାନ୍ୟତମ ସ୍ୱାଭିମାନ ନଥିବା ଯେଉଁ କଳାକାରମାନେ ନିଜକୁ ଏମାନଙ୍କ ପାଖରେ ବିକ୍ରି କରିଦେଉଛନ୍ତି ଶସ୍ତା ଲୋକପ୍ରିୟତା ପାଇଁ ମୋହଗ୍ରସ୍ତ ହେଉଛନ୍ତି, ସେମାନେ ହିଁ ଉଦ୍‌ବେଗର କାରଣ। ସତ୍ ସାହିତ୍ୟିକର ସ୍ୱାଭିମାନ ତାକୁ ଉଚ୍ଚତମ ପ୍ରଦେଶରେ ଉପନୀତ କରିଥାଏ। ତାର ସୃଷ୍ଟିବି ସେମିତି କାଳଜୟୀ ଓ ଯୁଗଜୟୀ। ସମ୍ମାନ ସମ୍ବର୍ଦ୍ଧନା ଓ ଉପଢ଼ୌକନ ଓ ପୁରସ୍କାର ମୋହରେ ସୃଷ୍ଟି ହେଉଥିବା ସାହିତ୍ୟ ଓ ସାହିତ୍ୟିକ କାଳସ୍ରୋତରେ ବିଲୀନ ହୋଇଯାଆନ୍ତି। ସତ୍ ସାହିତ୍ୟିକ କାଳର କପାଳରେ ଚିରକାଳ ଉର୍ଜ୍ଜସ୍ୱଳ। କଳାର ମୂଲ୍ୟ ଅମୂଲ। ଚିହ୍ନରା ଗ୍ରାହକ ତାର ଉପଯୁକ୍ତ ମୂଲ୍ୟ ଦେଇପାରେ। ଗୁଣ ଗ୍ରାହୀର ମୂଲ୍ୟାୟନରେ ସୃଷ୍ଟି ସାର୍ଥକ ହୋଇଥାଏ। କିମ୍ବଦନ୍ତୀ ଅଛି,

ସଙ୍ଗୀତଜ୍ଞ ତାନ୍‌ସେନ୍‌ସିଂଙ୍କୁ ଓଡ଼ିଶାର ଜଣେ ସ୍ୱର୍ଣ୍ଣକାର ରୂପା ତାରକସିର ସରସ୍ୱତୀ ମୂର୍ତ୍ତିଟିଏ ଉପହାର ଦେଇଥିଲେ। ମୂର୍ତ୍ତିଟି ଏତେ ସୁନ୍ଦର କାରୁକାର୍ଯ୍ୟ ସଂପନ୍ନ ହୋଇଥିଲା ଯେ ତାଙ୍କୁ କି ପ୍ରତିଉପହାର ଦେବେ ସେ ଚିନ୍ତା କରିପାରିଲେ ନାହିଁ। କଳାକାର ହିଁ ଜାଣେ ପ୍ରକୃତ କଳାର ମହତ୍ତ୍ୱ। ସଙ୍ଗୀତଜ୍ଞ ତାନ୍‌ସେନ୍ ସିଂ ତାଙ୍କୁ ଛାତ ଉପରକୁ ଡାକି ନେଇଥିଲେ ଓ ଗାନ କରିଥିଲେ ମେଘ ମହ୍ଲାର ସଂଗୀତ। ସଙ୍ଗେ ସଙ୍ଗେ ଆକାଶରେ ଘନେଇ ଆସିଥିଲା କଳାହାଣ୍ଡିଆ ମେଘ ଓ ଝରି ପଡିଥିଲା ବିନ୍ଦୁ ବିନ୍ଦୁ ବର୍ଷା। କୃତ୍ୟ କୃତ୍ୟ ହୋଇଯାଇଥିଲେ ସ୍ୱର୍ଣ୍ଣକାର ଜଣକ।

ପାଠକୀୟ ସ୍ୱୀକୃତି ରୂପେ ଦୂର ଦୂରାନ୍ତରୁ ପାଠକମାନଙ୍କ ପାଖରୁ ଆସୁଥିବା ପୋଷ୍ଟକାର୍ଡ ଖଣ୍ଡେ, ଏସ୍.ଏମ୍.ଏସ୍. କିମ୍ବା ଫୋନ୍ କଲ୍‌ଟିଏ ଲେଖକ ପାଇଁ ଯେତେ ମହତ୍ତ୍ୱ ରଖେ ତାହା ବଡବଡ ପୁରସ୍କାରରେ ନଥାଏ। ସେଇଥିପାଇଁ ତ ପ୍ରାଚୀନ କବିମାନେ କହିଛନ୍ତି- "ଲେଖକର ଆୟୁଘେନି ପାଠକ ବଞ୍ଚିରହୁ। ସେମାନେ ହିଁ ବଞ୍ଚେଇ ରଖନ୍ତି ସ୍ରଷ୍ଟାକୁ ଓ ସୃଷ୍ଟିକୁ। ବ୍ୟବସାୟୀଟିଏ ତା'ର ଗ୍ରାହକମାନଙ୍କୁ କହେ ଗ୍ରାହକ ଈଶ୍ୱର। ଜଣେ ସାରସ୍ୱତ ସ୍ରଷ୍ଟା ପାଇଁ ପାଠକମାନେ ହେଉଛନ୍ତି ଈଶ୍ୱର। ପାଠକ ଈଶ୍ୱର। ଯିଏ ପାଠକର ହୃଦୟ ଜୟ କରିପାରିଛି, ତା ପାଖରେ ସବୁ ପୁରସ୍କାର ତୁଚ୍ଛ। ସବୁ ସମ୍ବର୍ଦ୍ଧନା ପ୍ରହସନ। ବିଶେଷତଃ ଆମ ରାଜ୍ୟର ବଡ ବଡ ପୁରସ୍କାର ପାଉଥିବା ସ୍ରଷ୍ଟାମାନଙ୍କୁ ପୁରସ୍କାର ପାଇବା ପରେ ଯେଉଁପରି ତିରସ୍କୃତ କରାଯାଏ ସେଥିରେ ନିମ୍ନତମ ସ୍ୱାଭିମାନ ଥିବା ସ୍ରଷ୍ଟାଟି ଏ ପ୍ରକ୍ରିୟାରୁ ବିରତ ରହିବାକୁ ଚାହିଁବ।

ତଥାପି ଆମର ମୋହ ତୁଟେ ନାହିଁ।



# ଭୋକ ବିଳାସ

ଅମୀରମାନଙ୍କ ପାଇଁ କ୍ଷୁଧା ଏକ ବିଳାସ, ବିଭିନ୍ନ ଉପାୟରେ ସେମାନେ କ୍ଷୁଧାକୁ ଆବାହନ କରିଥାନ୍ତି, କେତେବେଳେ ବ୍ୟାୟାମ କରି ତ ପୁଣି କେତେବେଳେ କ୍ଷୁଧା ବର୍ଦ୍ଧକ ଖାଦ୍ୟ (ଆପିଟାଇଜର୍) ଖାଇ। ଡାକ୍ତରଙ୍କ ପାଖକୁ ବି ଭୋକ ନ ହେବାର ଅଭିଯୋଗ ନେଇ କ୍ଷୁଧା ବିଳାସୀ ଆସେ। ଡାକ୍ତର ସେଥିପାଇଁ ଔଷଧ ମଧ୍ୟ ଦିଅନ୍ତି। କିନ୍ତୁ ଅଭାବି ମଣିଷ ପାଇଁ କ୍ଷୁଧାଠାରୁ ବଡ ଶତ୍ରୁ ଆଉ ନାହିଁ। ସେମାନଙ୍କ ପାଇଁ କ୍ଷୁଧା ଏକ ଆତଙ୍କ, ଯେତେ ସତର୍କ ହେଲେ ବି କ୍ଷୁଧା ସେମାନଙ୍କ ପିଛା ଛାଡ଼େ ନାହିଁ। ସେମାନଙ୍କ ଜୀବନକୁ ବିପର୍ଯ୍ୟସ୍ତ କରି ଦେଇଥାଏ। ବୁଭୁକ୍ଷିତଂ କିଂ ନ କରୋତି ପାପଂ ପରି ଭୋକର ଦାଉରୁ ସେମାନେ ହିତାହିତ ଜ୍ଞାନ ଶୂନ୍ୟ ହୋଇ ଗୁଡାଏ ଅଘଟଣ ବି କରିପକାନ୍ତି। କିନ୍ତୁ ସବୁଠାରୁ ଦୁଃଖଦାୟକ ହେଲା କ୍ଷୁଧାହୀନ ମଣିଷମାନେ ଭୋକିଲା ମଣିଷର ଖାଦ୍ୟପାଇଁ ଆତୁର ପଣକୁ ଉପଭୋଗ କରିବା। ଏହି ବିକୃତ ମାନସିକତା ଥାଏ ଅନେକ ତଥାକଥିତ ଧନୀକଙ୍କର। ବର୍ମିସାଇଡି ଥିଲେ ଏହିମାନଙ୍କ ଭିତରୁ ଜଣେ। ଯେଉଁମାନଙ୍କୁ ଭୋକିଲା ମଣିଷର ଭୋକ ରୋଚକ ଲାଗେ। ସେଇ ଭୋକ ସହ ଖେଳିବାରେ ସେମାନେ ବେଶ୍ ଆନନ୍ଦ ପାଆନ୍ତି।

ବର୍ମିସାଇଡି ଆରବ୍ୟ ରଜନୀ କାହାଣୀର ଏକ ଚରିତ୍ର। ବହୁଧନ ସଂପତ୍ତିର ଅଧିକାରୀ। ଜୀବନର ମଜା ନେବାପାଇଁ ତାଙ୍କର ଅଜବ ବିକୃତି ସବୁ ଦେଖାଦିଏ। ଥରେ ଦୁଇବେଳା ଦୁଇଥର ପେଟପୁରା ଖାଇବାକୁ ପାଉନଥିବା ଦରିଦ୍ର ଶାକାବାକ୍‌କୁ ତାଙ୍କଠାରୁ କିଛି ଖାଦ୍ୟ ଗ୍ରହଣ କରିବାରୁ ଅନୁରୋଧ କଲେ। ଜୀବନରେ କେବେ ପରିତୃପ୍ତ ଭୋଜନ କରିନଥିବା ଶାକାବାକ୍‌ର କିଛି ଆପତ୍ତି ନଥିଲା। ବରଂ ଏହା ତା'ର ପରମ ସୌଭାଗ୍ୟ ବୋଲି ଗ୍ରହଣ କରି ବର୍ମିସାଇଡିଙ୍କ ପ୍ରତିଶ୍ରୁତି ଅନୁସାରେ ପୂର୍ବଦିନ ରାତିରୁ ହିଁ ନିଜ ପାକସ୍ଥଳୀକୁ ଯଥାସମ୍ଭବ ଶୂନ୍ୟରଖିଲା। ଅମୀର ଘରର ଭୂରିଭୋଜନ, ମନେ ମନେ ଗୁଡାଏ ସ୍ୱପ୍ନ ଦେଖି ପକାଇଲା। ତା'ପରଦିନ ଯଥା ସମୟରେ ଶାକାବାକ୍ ପହଞ୍ଚିଗଲା ଅମୀରଙ୍କ ବାସଗୃହରେ। ଅମୀର ବର୍ମିସାଇଡି ଶାକାବାକ୍‌କୁ ଭବ୍ୟ ସମ୍ବର୍ଦ୍ଧନା ଦେଇ ପାଛୋଟି ନେଲେ ଭୋଜନାଳୟକୁ। ସୁସଜ୍ଜିତ କକ୍ଷ, ବହୁମୂଲ୍ୟ ଆସନ। ଦୁର୍ମୂଲ୍ୟ

ଆସବାବ ପତ୍ର । ଅତି ସଂକୁଚିତ ହୋଇ ବସିଲା ପେଟ ବିକଳିଆ ଶାକାବାକ୍ । ଏଥର ଭୋଜନ ପର୍ବ । ପରିଚାରକମାନେ ସ୍ଵର୍ଣ୍ଣ ଓ ରୌପ୍ୟର ବଡ ବଡ ଭୋଜନ ପାତ୍ର ଶାକାବାକ୍ ସମ୍ମୁଖରେ ସଜେଇ ରଖିଲେ । ପାନପାତ୍ର ବି ରହିଲା । ଉତ୍‌ଫୁଲ୍ଲିତ ହୋଇ ଶାକାବାକ୍ ଜୀବନରେ ଆଉ କେବେ ଏମିତି ଦୁର୍ଲ୍ଲଭ ମୁହୂର୍ତ୍ତ ତାକୁ ମିଳିବ କି ନା ତେଣୁ ମନଭରି ଅନୁଭବ କରିନେଲା ସେ ସ୍ଵପ୍ନିଳ ମୁହୂର୍ତ୍ତକୁ । ଉତ୍ସୁକତାର ସହ ଅପେକ୍ଷା କଲା କେବେ ସେ ଶୂନ୍ୟ ପାତ୍ରମାନଙ୍କରେ ପରଷାଯିବ ସୁସ୍ଵାଦୁ ବ୍ୟଞ୍ଜନ । ବିଳମ୍ବ ଅସହ୍ୟ ହେଉଥିଲା । କ୍ଷୁଧାର ମାତ୍ରା ବି ଏମିତି ବଢ଼ିଯାଇଥିଲା ଯେ ଶରୀରରୁ ପ୍ରାଣଟା ବାହାରି ଯିବାପରି ଲାଗୁଥିଲା । ସେ ଯେତିକି ଧୈର୍ଯ୍ୟ ହରା ହେଉଥିଲା, ଖାଦ୍ୟ ପରଷା ସେତିକି ବିଳମ୍ବିତ ହେଉଥିଲା । ଶେଷରେ ତାକୁ ଆଶ୍ଚର୍ଯ୍ୟ ଚକିତ କରିଦେଇ ବର୍ମିସାଇଡି ସ୍ଵାଭାବିକ ଢ଼ଙ୍ଗରେ କହିଲେ ଖାଅ-ଖାଅ, ବସିଲ କାହିଁକି ? ଖାଇବାରେ ଗୋଟାଏ ଲାଜ କ'ଣ ? ପଲଉ ଖାଅ, ଡାଲି ଖାଅ, ମାଂସ ଖାଅ, ଖିରୀ ଖାଅ, ପୁରୀ ଖାଅ, ଖଟା ଖାଅ, ଯାହା ଇଚ୍ଛା ଖାଅ, ସଂକୋଚ କରନାହିଁ । ଖାଅ, ଖାଅ, ମନଭରି ଖାଅ । ତମରି ପାଇଁ ଆଜି ଏ ସବୁ ଜିନିଷ ତିଆରି ହୋଇଚି । ଅସହାୟ ଦୃଷ୍ଟିରେ ଶାକାବାକ୍ ଚାହିଁଲା ବର୍ମିସାଇଡିଙ୍କୁ । ସେ ଆହୁରି ଉତ୍ସାହିତ ହୋଇ କହିଲେ - ହଁ ଖାଅ । ଏସବୁ ଖାଦ୍ୟ ପଦାର୍ଥ କେବଳ ତମରି ପାଇଁ । କ'ଣ ଭାବିଲା କେଜାଣି ଶାକାବାକ୍, ସେ ଆରମ୍ଭ କରିଦେଲା ତା ଖାଇବା । ପଲଉ ଖାଇଲା, ଡାଲି ଖାଇଲା, ଖିରୀ, ପୁରୀ, ମାଂସ ସବୁ ଖାଦ୍ୟ ଖାଇବାର ଅଭିନୟ କଲା । ତାହାପୁଣି ଥାଳି ଚାଟି ଚାଟି । ବେଶ୍ ଆମୋଦ ଅନୁଭବ କରୁଥିଲେ ବର୍ମିସାଇଡି । ଖାଇସାରି ଲମ୍ବା ଏଉଡିଟାଏ ମାରିବାକୁ ବି ଭୁଲିଲା ନାହିଁ ଶାକାବାକ୍ ।

ଶାକାବାକ୍‌ର ଭୋଜନ ସରିବାପରେ ବର୍ମିସାଇଡି ଦୁଇ ହାତରେ ତାଳିଟାଏ ମାରିଲେ । ପୂର୍ବରୁ ତାଲିମପ୍ରାପ୍ତ ଭୃତ୍ୟ ଏକ ବିରାଟ ଅଥଚ ଶୂନ୍ୟପାତ୍ର ଆଣି ପହଞ୍ଚାଇ ଦେଲା । ବର୍ମିସାଇଡି ଆଦେଶ ଦେଲେ, ପିଅ, ପିଅ, ଖୁବ୍ ପିଅ । ଏସବୁତକ ତମରି । ତମରି ପାଇଁ ଏସବୁ ବ୍ୟବସ୍ଥା ହୋଇଛି । ଶାକାବାକ୍ ପିଇଲା । ଖୁବ୍ ପିଇଲା, ଭୃତ୍ୟ ପୁଣି ଗୋଟାଏ ଶୂନ୍ୟପାତ୍ରରୁ ଶାକାବାକ୍‌ର ପାତ୍ରକୁ ଅଜାଡିଲା । ଅର୍ଥାତ୍ ଅଜାଡିବାର ଅଭିନୟ କଲା । ଆହୁରି ପିଇଲା । ଏମିତି ଅଭିନବ ପାନ ଭୋଜନ ପରେ ଗୃହକୁ ଫେରିବାର ପାଳି । ଭୋଜନରୁ ଉଠି ଠିଆ ହେଲାବେଳକୁ ଶାକାବାକ୍ ପାଦର ଭାରସାମ୍ୟ ରଖିପାରୁନି । ମଦ୍ୟନିଶାରେ ତା ଆଖିପତା ଉଠୁନି ଉପରକୁ । ସେଇ ଟଳମଳ ପାଦରେ ସେ ଆଗକୁ ବଢ଼ିଲା । ସେମିତି ନିଶାଗ୍ରସ୍ତ କଣ୍ଠରେ ସେ କହିଲା ମଦନିଶାରେ ମଣିଷ କ'ଣ କରିନପାରେ । ଏହାପରେ ବର୍ମିସାଇଡିଙ୍କୁ ସେ ଏମିତି ଦୁଇ ଧକ୍କା ଦେଲା ଯେ ସେ

ତାଙ୍କ ବସିବା ଜାଗାରୁ ତଳକୁ ଗଡ଼ି ପଡିଲେ। ଉପସ୍ଥିତ ପରିଚାରକମାନେ ଆସିଲେ ଶାକାବାକ୍‌କୁ କାବୁ କରିବାପାଇଁ। ବୋଧହୁଏ ବର୍ମିସାଇଡ୍ ପାଖରେ ତଥାପି ଟିକେ ମଣିଷ ପଣିଆ କେଉଁଠି କେମିତି ଲୁଚିକି ରହିଯାଇଥିଲା। ତାହା ଜାଗ୍ରତ ହେଲା। ସେ ଶାକାବାକ୍‌ର ପ୍ରତିକ୍ରିୟା ଓ ଉପସ୍ଥିତି ବୁଦ୍ଧିକୁ ସମ୍ମାନ ଦେଲେ। ତାକୁ ସତସତିକା ଭୁରିଭୋଜନଟିଏ ଦେଇ ବିଦାୟ କରିଥିଲେ।

ଆରବ୍ୟ ରଜନୀ କାହାଣୀ ମାଳା ମଧ୍ୟରୁ ଏହା ଏକ ସାଧାରଣ କାହାଣୀଟିଏ କିନ୍ତୁ ଏଥିରେ ଯେଉଁ ବୃହତ୍ତର ସତ୍ୟଟି ରହିଛି, ତାହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ। ଦୁଃଖି ଅଭାବୀ ମଣିଷର ଦୁଃଖ ଓ ଦୁର୍ଭୋଗକୁ ନେଇ ବିଳାସ କରିବା ଏକ ମାନସିକ ବିକୃତି। ଯୁଗେ ଯୁଗେ ଏମିତି ମଣିଷମାନେ ଗରିବୀକୁ ଉପହାସ କରିଆସିଛନ୍ତି। ଋଣଗ୍ରସ୍ତ ଚାଷୀର ଆତ୍ମହତ୍ୟା ପ୍ରେମଜନିତ ଆତ୍ମହତ୍ୟା ଅଥବା ଅନାହାର ଜନିତ ମୃତ୍ୟୁ ଅତ୍ୟାହାର ମୃତ୍ୟୁ ବୋଲି ସାବ୍ୟସ୍ତ କରିବାର ଅପଚେଷ୍ଟା ମଧ୍ୟ ଏହି ଧରଣର ବିଳାସ। ଏହାକୁ ବିଳାସ ନୁହେଁ ବରଂ ମାନସିକ ବିକୃତି କୁହାଯାଇପାରେ।

ଅନ୍ୟର ପୀଡାକୁ ଅନୁଭବ କରିପାରୁନଥିବା ମଣିଷ ପଶୁ କିମ୍ବା ଦାନବ ଶ୍ରେଣୀ ଭୁକ୍ତ। କିନ୍ତୁ ଯେଉଁମାନେ ଅନ୍ୟର ପୀଡ଼ାକୁ ଉପହାସ କରନ୍ତି, ସେମାନେ ପଶୁ ଓ ଦାନବଠୁଁ ବି ହୀନ। ମିଛ ପ୍ରତିଶ୍ରୁତି ଦେଇ କ୍ଷୁଧାର୍ତ୍ତ ମଣିଷର କ୍ଷୁଧାକୁ ତୀବ୍ରତର କରୁଥିବା ଲୋକଙ୍କର ଅଭାବ ନାହିଁ ଆଜିର ସମାଜରେ। ଆମ ଗଣତନ୍ତ୍ରର ଏହା ଦୁର୍ବଳତମ ବିନ୍ଦୁ। ବ୍ୟବସ୍ଥାର ବିଫଳତା ଏଇଠି ରହିଛି। ଅଭିନୟରେ ରାଜନେତାମାନେ ଅଭିନେତାଠୁଁ ବି ବଳିଗଲେଣି। ପୁଣି ଅଭିନେତାମାନେ ଏହାକୁ ରଙ୍ଗମଞ୍ଚରେ ପରିଣତ କରିଦେବା କିଛି ଅସ୍ୱାଭାବିକ ନୁହେଁ। କିନ୍ତୁ ଏହା ଆଉ ବେଶୀଦିନ ନୁହେଁ। ଶାଶୁର ପାଳିକୁ ବୋହୂର ପାଳି ଭଳି, ଏବେ ଶାକାବାକ୍‌ମାନଙ୍କର ଦିନ ଆସୁଛି। ଜନତା ନିଷ୍କ୍ରିୟ ହୋଇ ଭାଗ୍ୟ ଓ ଭଗବାନଙ୍କ ଉପରେ ନିଜକୁ ଛାଡ଼ିଦେଲେ ସାମାଜିକ ପରିବର୍ତ୍ତନ ହେବନାହିଁ। ଜନତା ଜାଗିଲେ ବ୍ୟବସ୍ଥାରେ ସୁଧାର ଆସେ। କ୍ଷୁଧାର୍ତ୍ତର କ୍ଷୁଧାସହ ବିଳାସ କରୁଥିବା ମଣିଷମାନଙ୍କୁ ଧକ୍କାଦେବାର ଅଧିକାର ଶାକାବାକ୍ ମାନଙ୍କର ରହିଛି। ଏହି ଧକ୍କା ହିଁ ଶକ୍ତିଶାଳୀ ନିର୍ଭୀକ ଓ ସଚେତନ ଗଣଅସ୍ତିତ୍ୱର ପ୍ରମାଣ। ଏକ ବଳିଷ୍ଠ ଓ ସଫଳ ଗଣତନ୍ତ୍ରର ପରିଚାୟକ।

ଏବେ ଶାକାବାକ୍‌ମାନେ ଜାଗିଲେଣି । କ୍ଷୁଧା ବିଳାସୀମାନେ ଏ ବିକୃତ ବିଳାସକୁ ଦୂରୀଭୂତ ନକଲେ ବହୁତ ବଡ କୈଫିୟତ୍ ଦେବାକୁ ପଡିବ।



# ଅନ୍ଧବିଶ୍ୱାସ ଓ ବିଶ୍ୱାସଘାତକତା

ଅରଣ୍ୟ ଅଧିବାସୀ ବ୍ୟକ୍ତିଗତ ଦୁଃଖ ଦୈନ୍ୟ ଓ ସାମାଜିକ ଦୁର୍ବିପାକ ଦୂର କରିବାପାଇଁ ଡୁମା ଦେବତାଙ୍କ ପାଖରେ ପୂଜା ଉପାସନା କରେ। କାଠ ପଥର ଗଛ ଆଦି ଏ ଦେବତାମାନଙ୍କର ପ୍ରତୀକ ହୋଇଥାଏ। ଏମାନଙ୍କ ପାଖରେ ମଦ ଦିଆଯାଏ। ପାରା, କୁକୁଡ଼ା, ଛେଳି ଓ ମଇଁଷି ଆଦି ବଳି ଦିଆଯାଏ। ବାଦ୍ୟର ତାଳେ ତାଳେ ଏମାନେ ନୃତ୍ୟ କରନ୍ତି। ଗାନ କରନ୍ତି। ଡୁମା ଦେବତାଙ୍କୁ ସନ୍ତୁଷ୍ଟ କରିବା ଆଦିବାସୀ ସମାଜର ପ୍ରାଥମିକ କର୍ତ୍ତବ୍ୟ ହୋଇଥାଏ। ଏଥିପାଇଁ ସେମାନଙ୍କର ଅଧିକାଂଶ ସାମର୍ଥ୍ୟ ବିନିଯୋଗ ହୋଇଥାଏ। ଏସବୁ ଦାୟିତ୍ୱ ବହନ କରିଥାନ୍ତି ଦିଶାରୀ, ଶିରା, ବେଜୁଣୀ ଓ ଗୁରୁମାଇମାନେ। ସେମାନେ ବୃତ୍ତିଗତ ଭାବେ ଏକାର୍ଯ୍ୟ ସଂପାଦନ କରିଥାନ୍ତି। କିନ୍ତୁ ଆମେ ଏ ପ୍ରଥାକୁ କହୁ କୁସଂସ୍କାର, ଅନ୍ଧବିଶ୍ୱାସ। ଏହି ଅନ୍ଧବିଶ୍ୱାସ ମୂଳରେ ଯେଉଁ ମଣିଷ ପଣିଆ ଟିକକ ଅଛି ଆମ ଦୃଷ୍ଟିରେ ତାହା ପଡେ ନାହିଁ। ଆମ ଶିକ୍ଷା ଦୀକ୍ଷାର ଅନ୍ଧ ଅହମିକା ସେମାନଙ୍କୁ ଆମ ଠାରୁ ନ୍ୟୁନତମ ବୋଲି ବିଚାର କରେ। ସେମାନଙ୍କୁ ଅନ୍ଧବିଶ୍ୱାସରୁ ମୁକ୍ତ କରିବା ପାଇଁ ଆମେ ତତ୍ପର ହୋଇପଡୁ। ସେମାନଙ୍କ ପାଇଁ ସଚେତନତା କାର୍ଯ୍ୟକ୍ରମ ହୁଏ। ରାଜକୋଷରୁ ଅଜସ୍ର ଅର୍ଥ ବ୍ୟୟ ବରାଦ ହୁଏ। ବେସରକାରୀ ଅନୁଷ୍ଠାନମାନ ଦେଶ ଓ ବିଦେଶରୁ ପାଣ୍ଠି ଆଣି ଆଦିବାସୀଙ୍କୁ ସଚେତନ କରିବାପାଇଁ ଚେଷ୍ଟା କରିଥାନ୍ତି। ଏସବୁ ପ୍ରଚେଷ୍ଟା କେତେ ଫଳପ୍ରଦ ହୁଏ କେତେ ବିଫଳ ହୁଏ ତାହା ଭିନ୍ନ ପ୍ରସଙ୍ଗ, କିନ୍ତୁ ଏହି ଅନ୍ଧବିଶ୍ୱାସ ମୂଳରେ ସମାଜର ଦୁଃଖ ଦୁର୍ଦ୍ଦଶା ଦୂର କରିବାର ଦାୟିତ୍ୱ ବହନ କରିଥିବା ଦିଶାରୀମାନଙ୍କର ନିଷ୍କପଟତା ହିଁ ବଡ କଥା। ସେମାନେ କପଟାଚାର କରନ୍ତି ନାହିଁ।

ବ୍ୟକ୍ତିର ଓ ସମାଜର ରୋଗ ବ୍ୟାଧି ଯନ୍ତ୍ରଣା ଦୁର୍ବିପାକ ଦୂର କରିବାପାଇଁ ଉତ୍ସର୍ଗୀକୃତ ଜୀବନ ବିତାଉଥିବା ଏ ମଣିଷମାନେ ଅନ୍ଧବିଶ୍ୱାସୀ ହୋଇପାରନ୍ତି, କିନ୍ତୁ ବିଶ୍ୱାସଘାତକ ନୁହଁନ୍ତି। ନିଜକୁ ଭଗବାନ ବୋଲି ଘୋଷଣା କରନ୍ତି ନାହିଁ। ସମାଜ କଲ୍ୟାଣ ନିମନ୍ତେ ସେମାନେ ନିଜକୁ ଯନ୍ତ୍ରଣା ଦେଇଥାନ୍ତି। ବ୍ୟକ୍ତିର ଦୁଃଖ ଦୂର କରିବାପାଇଁ ଦେବତାଙ୍କ ପାଖରେ ପ୍ରାର୍ଥନା କରନ୍ତି। କେବଳ ପ୍ରତ୍ୟକ୍ଷଦର୍ଶୀଟିଏ ହିଁ

ଜାଣିପାରିବ କେତେ ଆକୁତି କେତେ ଆର୍ତ୍ତି କେତେ ଆତ୍ମୀୟତା ଓ କେତେ ଅନ୍ତରଙ୍ଗତା ଥାଏ ସେ ପ୍ରାର୍ଥନାରେ। ଏହାକୁ ଆମେ କୁସଂସ୍କାର କହିପାରୁ, କିନ୍ତୁ ଅନ୍ୟର ଦୁଃଖରେ ଦୁଃଖୀ ହୋଇ ଅଦୃଶ୍ୟ ଶକ୍ତି ପାଖରେ ଅଳି କରୁଥିବା ମାନସିକତା ଭିତରେ ଆଦୌ କୁ-ଅଭିସନ୍ଧି ନଥାଏ। ଦେବତା ଓ ମଣିଷମାନଙ୍କ ମଧ୍ୟରେ ମଧ୍ୟସ୍ଥତା କରୁଥିବା ଏଇ ମଣିଷମାନଙ୍କର ଦୃଢ଼ ବିଶ୍ୱାସ ଥାଏ, ମଣିଷର ଦୁଃଖରେ ଦେବତାମାନେ ଦୁଃଖି ହୋଇଯାଆନ୍ତି। ସେମାନେ ନିଶ୍ଚୟ ମଣିଷ ଦେହକୁ ଅବତରଣ କରିବେ। ସେମାନଙ୍କ ଦୁଃଖ ଦୂର କରିବାରେ ସହାୟକ ହେବେ। ସେଥିପାଇଁ ସେମାନେ ନିଜକୁ ପ୍ରସ୍ତୁତ କରି ରଖିଥା'ନ୍ତି। ଏହି ଭାବନା ସେମାନଙ୍କ ଚେତନାସ୍ତରକୁ ଆନ୍ଦୋଳିତ କରେ। ମାନସିକ ସ୍ତରରେ ସେମାନେ ନିଜଭିତରେ ଦେବତାଙ୍କ ସ୍ଥିତିକୁ ଗ୍ରହଣ କରିନିଅନ୍ତି। ଫଳରେ ସେମାନଙ୍କ କାର୍ଯ୍ୟକଳାପରେ ନାନା ବିକୃତି ପ୍ରତିଫଳିତ ହୁଏ। ବାଲିଯାତ୍ରାରେ ଗୋଷ୍ଠୀର କଲ୍ୟାଣ ପାଇଁ ନୀତିନିଷ୍ଠାରେ ପୂଜାପାଠ କରୁଥିବା ଗୁରୁମାଇ ହୁଅନ୍ତୁ ଅବା ବ୍ୟକ୍ତିର ରୋଗ ବ୍ୟାଧି ସମସ୍ୟା ସଂକଟ ଦୂର କରିବାପାଇଁ ମନ୍ତ୍ର ତନ୍ତ୍ର ପୂଜା ଉପାସନା କରୁଥିବା ଦିଶାରୀ, ଶିରା, ବେଜୁଣୀ ହୁଅନ୍ତୁ, ଏମାନେ ଛଳନା କରନ୍ତି ନାହିଁ। ଅଭିନୟ କରନ୍ତି ନାହିଁ। ସେମାନେ ଯାହା କରନ୍ତି ଉତ୍ସର୍ଗୀକୃତ ଚେତନା ନେଇ କରନ୍ତି। ସେମାନେ ଜାଣନ୍ତି ନାହିଁ ଯେ ରୋଗ ବ୍ୟାଧି ଦୁଃଖ ଦୁର୍ଦ୍ଦଶା ଦୂରୀଭୂତ କରିବାର ଏହା ଭୁଲ ମାର୍ଗ। ସମସ୍ୟା ସମାଧାନର ସୂତ୍ର ଅନ୍ୟଠାରେ ଅଛି, ସେଥିପାଇଁ ଉଦ୍ୟମ ହେବାର ଆବଶ୍ୟକତା ରହିଛି। ଏମାନଙ୍କର ନିଜ ନୀତି ନିଷ୍ଠାରେ ଅତୁଟ ବିଶ୍ୱାସ ଥାଏ। ଈଶ୍ୱରଙ୍କ ଉପରେ ଆସ୍ଥା ଥାଏ, କାରଣ ଏମାନେ ଭଣ୍ଡ ନୁହଁନ୍ତି ନିରୀହ। ବିଶ୍ୱାସଘାତକ ନୁହଁନ୍ତି ବରଂ ଅନ୍ଧବିଶ୍ୱାସୀ। କପଟାଚାରୀ ନୁହଁନ୍ତି ମାତ୍ର କୁସଂସ୍କାରୀ।

କିନ୍ତୁ ଆମ ତଥାକଥିତ ସଭ୍ୟ ସମାଜରେ ଆମେ ବିଶ୍ୱବିଦ୍ୟାଳୟର ଡିଗ୍ରୀଧାରୀମାନେ ଯାହାକୁ ଈଶ୍ୱରଙ୍କ ଏଜେଣ୍ଟର ମାନ୍ୟତା ଦେଉ, ଆମର ବ୍ୟକ୍ତିଗତ ଦୁଃଖ ଦୁର୍ବିପାକ (ସାମୁହିକ ଆଦୌ ନୁହେଁ) ଦୂର କରିବାପାଇଁ ପରିବାରର ଉତ୍ତରୋତ୍ତର ଉନ୍ନତି ପାଇଁ, କ୍ଷମତା ପାଇଁ, ଆମ ଶତ୍ରୁର ଅମଙ୍ଗଳପାଇଁ, ଯାହା ଉପରେ ଭରସା କରୁ ସେମାନେ ଆମ ଭାବନା ସହ ଖେଳ ଖେଳିଥାନ୍ତି, ଆମର ଅସହାୟତାର ସୁଯୋଗ ନେଇ ସେମାନେ ଆମକୁ ଶୋଷଣ କରି ଚାଲିଥା'ନ୍ତି। ସେମାନେ ଭଲ ଭାବରେ ଜାଣିଥା'ନ୍ତି ଯେ ସେମାନେ ମିଥ୍ୟାଚାର କରୁଛନ୍ତି। ପାଦରୁ ମହୁ ଝରାଇବା ମିଥ୍ୟା, ପାପୁଲିରୁ ବିଭୂତି ଝରାଇବା ପ୍ରହସନ, ଭବିଷ୍ୟତ ବାଣୀ ପ୍ରତାରଣା, ଉପଚାର ସବୁ ଅଭିନୟ। ଏସବୁ ମୂଳରେ ଥାଏ ସେମାନଙ୍କର ଅର୍ଥ ଲାଳସା। ଜମି ଆତ୍ମସାତ୍ କରିବାର

କ୍ଷୁଧା । ଏସବୁକୁ ବଳି ପଡେ ନାରୀ ଦେହ ଉପଭୋଗର କମନା ବିଭିନ୍ନ କୁଟକପଟର ଆଶ୍ରୟ ଏମାନେ ନେଇ ମହିଳା ଭକ୍ତମାନଙ୍କୁ ପ୍ରଭାବିତ କରନ୍ତି । ନିଜକୁ କୃଷ୍ଣ ବୋଲି ଘୋଷଣା କରି ନାରୀମାନଙ୍କୁ ଗୋପୀ ବୋଲି ଧାରଣା ସୃଷ୍ଟି କରନ୍ତି । ଚକ୍ରାନ୍ତ କରି ସେମାନଙ୍କୁ ଉପଭୋଗ କରନ୍ତି ।

ଆଦିବାସୀ ସମାଜର ବାଲିଯାତ୍ରା ଏକ ପ୍ରମୁଖ ସାମୁହିକ ପର୍ବ । ଗୋଷ୍ଠୀର ମଙ୍ଗଳପାଇଁ ମାସ ମାସ ବ୍ୟାପୀ ଏ ପର୍ବ ପାଳିତ ହୁଏ । ପୂଜାରୀ ଓ ଗୁରୁମାଇ ଏ ଯାତ୍ରାର ମୁଖ୍ୟ ଦାୟିତ୍ୱ ନେଇଥା'ନ୍ତି । ଗାଁରେ ପର୍ବ ଚାଲିଥିବା ପର୍ଯ୍ୟନ୍ତ ଗୁରୁମାଇ ସହ ପୂଜାରୀର ଆଧାତ୍ମିକ ସ୍ତରରେ ବିବାହ ହୋଇଥାଏ । ସେମାନେ ସ୍ୱାମୀ ସ୍ତ୍ରୀ ଭାବରେ ଆଚରଣ କରିଥା'ନ୍ତି । କିନ୍ତୁ ସେଠାରେ ଦେହଭୋଗ କାମନା ନଥାଏ । ବ୍ୟଭିଚାର କିମ୍ବା ଭ୍ରଷ୍ଟାଚାର ନଥାଏ । ବାଲିଯାତ୍ରା ସରିଗଲା ପରେ ସେମାନେ ପୁଣି ଯେ ଯାହାର ସଂସାରକୁ ଫେରି ଯାଆନ୍ତି ଓ ସ୍ୱାଭାବିକ ଜୀବନ ବିତାନ୍ତି ।

ଆମ ସମାଜରେ କିନ୍ତୁ ତଥା କଥିତ ଭଣ୍ଡବାବାମାନେ କାମିନୀ କାଞ୍ଚନ ମୋହରୁ ମୁକ୍ତ ହୋଇପାରନ୍ତି ନାହିଁ । ଆମକୁ ପ୍ରତାରିତ କରିବା ସଙ୍ଗେ ସଙ୍ଗେ ଈଶ୍ୱରଙ୍କୁ ବି ପ୍ରତାରିତ କରିଥା'ନ୍ତି । ବିଳାସ ବ୍ୟସନର ଚରମ ସୀମାରେ ଉପବିଷ୍ଟ ହୋଇ ରାଜାଧିରାଜଙ୍କ ପରି ଜୀବନ ବଞ୍ଚନ୍ତି । ଆମେ ମଧ ରାତାରାତି ଯଶ ଧନ ପ୍ରତିପତ୍ତି ଲାଭ ଲାଳସାରେ ସେମାନଙ୍କ ଶରଣାପନ୍ନ ହେଉ । ଆମର ବୁଦ୍ଧି ବିଚାର ବିବେଚନା ସବୁ ସେଇମାନଙ୍କ ପାଦତଳେ ଅଜାଡି ଦେଉ । ଏବେ ଚିନ୍ତା କରିବାର ସମୟ ଆସିଛି । ଅନ୍ଧବିଶ୍ୱାସୀ ଅରଣ୍ୟ ଅଧିବାସୀଙ୍କ ଅପେକ୍ଷା ଆମେ ବିଶ୍ୱାସ ଘାତକତାର ଶିକାର ହେଉଥିବା ଶିକ୍ଷିତ ସଭ୍ୟ ବୋଲାଉଥିବା ମଣିଷ କେତେ ସଭ୍ୟ ।



# ପୁସ୍ତକ ପ୍ରଦର୍ଶନ - ଜ୍ଞାନ, ଅଜ୍ଞାନ ଓ ଅପଜ୍ଞାନ

ପୁସ୍ତକ ପ୍ରଦର୍ଶନୀ ମାନବ ସଭ୍ୟତାର ଏକ ଅଭିଜାତ ଆୟୋଜନ, ଗୋଟାଏ ସଂସ୍କୃତି ପରିପକ୍ୱ ହେଲେ, ଉଚ୍ଚତମ ଶିଖରରେ ପହଞ୍ଚିଲେ ସେଥିରୁ ସୃଷ୍ଟି ହୁଏ ସାରସ୍ୱତ ସମ୍ଭାର। ସାରସ୍ୱତ ସମ୍ଭାରର ଚରମତମ ଉପାଦାନ ହେଲା ସାହିତ୍ୟ। ପ୍ରାଚୀନ ଯୁଗରେ ନୃତ୍ୟ, ଗୀତ, ଚିତ୍ର ଓ ଭାସ୍କର୍ଯ୍ୟ ଆଦି ଯେପରି ଜନସମୁଦାୟ ସମ୍ମୁଖରେ ପ୍ରଦର୍ଶିତ ହୋଇପାରୁଥିଲା, ସେହି ତୁଳନାରେ ପୁସ୍ତକ ଜନତାଙ୍କ ନିକଟରେ ପହଞ୍ଚି ପାରୁନଥିଲା। ଆମ ଦେଶରେ ଯେ ସାହିତ୍ୟିକମାନଙ୍କର ଅଭାବ ଥିଲା, ପୁସ୍ତକମାନଙ୍କର ଅଭାବ ଥିଲା, ତା ନୁହେଁ, ବରଂ ସାହିତ୍ୟ କ୍ଷେତ୍ରରେ ଭାରତ ତ ବିଶ୍ୱର ପଥିକୃତ ଶିଳ୍ପୀ। ମାନବ ସଭ୍ୟତାର ଆଦିକାବ୍ୟ ରାମାୟଣ ଓ ମହାଭାରତ ବିଶ୍ୱର ବୃହତ୍ତମ କାବ୍ୟ। ବିଶ୍ୱର ବିସ୍ମୟ ଆମ ଶ୍ରୁତି ଶାସ୍ତ୍ର ବେଦକୁ ମଧ୍ୟ ଭାଗ ଭାଗ କରି ପୋଥିରୂପ ଦେଇଥିଲେ ବ୍ୟାସ। ଅଷ୍ଟାଦଶ ପୁରାଣ, ଅଜସ୍ର ଉପପୁରାଣ ପୋଥିରେ ସମୃଦ୍ଧ ଥିଲା ଆମ ସାହିତ୍ୟ ଭଣ୍ଡାର। ପୋଥି ନକଲ ଆମ ସଂସ୍କୃତିରେ ଏକ ପୁଣ୍ୟକାର୍ଯ୍ୟ ରୂପେ ଗଣ୍ୟ କରାଯାଉଥିଲା। ସମସ୍ତଙ୍କର ସର୍ଜନାତ୍ମକ ସାହିତ୍ୟ ସୃଷ୍ଟିକରିବାର ସାମର୍ଥ୍ୟ ନଥାଇ ପାରେ, କିନ୍ତୁ ଯେ କେହି ସୃଜନଶୀଳ ସ୍ରଷ୍ଟାଙ୍କର ସୃଷ୍ଟିକୁ ନକଲ କରି ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିପାରୁଥିଲା। ସେ ସମୟରେ ଏହି ପୋଥି ନକଲକାରୀଙ୍କ ଭୂମିକା ଆଜିକାଲିକାର ପ୍ରକାଶମାନଙ୍କଠାରୁ କାହିଁ କେତେ ଉଚ୍ଚମାନର ଥିଲା। ସଂପୂର୍ଣ୍ଣ ନିଃସ୍ୱାର୍ଥପର ଚେତନାରେ ସେମାନେ ସାରସ୍ୱତ ସେବା କରୁଥିଲେ। ଲେଖକ ମାନଙ୍କଠାରୁ ପଇସା ନେଇ ବହି ଛପାଇବାର ଅଣପରଂପରା ନଥିଲା। ମୂଳ ସ୍ରଷ୍ଟା ଅର୍ଥଦେଇ ନିଜ ଲେଖାକୁ ଅନ୍ୟ କାହାକୁ ପ୍ରଚ୍ଚର ପ୍ରସାର ପାଇଁ ଅନୁରୋଧ କରୁନଥିଲେ, କିମ୍ୱା ପ୍ରତାରିତ ହେଉନଥିଲେ। ସେ ସବୁ ଆପେ ଆପେ ହୋଇଯାଉ୍ଥଲା। ପୋଥି ନକଲ ଧାର୍ମିକ ଅନୁଷ୍ଠାନ ମାନଙ୍କର ଏକ ଅଙ୍ଗଥିଲା। ପ୍ରତ୍ୟେକ ମଠ ମନ୍ଦିରରେ ଏହି ପୋଥି ପାଣ୍ଡୁଲିପି ପାଇଁ ସ୍ୱତନ୍ତ୍ର କୋଠରୀ ଥିଲା। ପୋଥି ପାଣ୍ଡୁଲିପିକୁ ବି ଭାରତୀୟମାନେ ଦେବତା ଜ୍ଞାନରେ ପୂଜା କରୁଥିଲେ।

ପୋଥିର ବେଶ୍ ଆଦର ଥିଲା। କିନ୍ତୁ ଆମର ଦୁର୍ଭାଗ୍ୟ ବୈଦେଶିକ ଆକ୍ରମଣ ଆମର ଏ ଉନ୍ନତ ସାଂସ୍କୃତିକ ସମ୍ବଳକୁ ଧ୍ୱଂସ କରିବାକୁ ଲାଗିଲା। ଚତୁରତାର ସହ ପ୍ରଥମେ ସେମାନେ ଆମ ଏହି ସାଂସ୍କୃତିକ ସମ୍ବଳକୁ ଧ୍ୱଂସ କରି ଆମକୁ ଦୁର୍ବଳ କରିଦେଲେ। ଆମ ମଠ ମନ୍ଦିର ଧ୍ୱଂସ କରିବା ସଙ୍ଗେ ସଙ୍ଗେ ସେଥିରେ ଯେତେ ପୋଥି ପାଣ୍ଡୁଲିପି ଥିଲା ସେଥିରେ ଅଗ୍ନି ସଂଯୋଗ କରିବାକୁ ଲାଗିଲେ। ସେଗୁଡିକୁ ବଞ୍ଚେଇ ରଖିବା ପାଇଁ ବହୁ ସମ୍ଭ୍ରାନ୍ତ ପରିବାର ମନ୍ଦିରମାନଙ୍କରୁ ପାଣ୍ଡୁଲିପିମାନ ଆଣି ନିଜ ଗୃହରେ ଗୋପନ କରି ରଖିଲେ। ଚନ୍ଦନ ସିନ୍ଦୁର ଦେଇ ନିଜ ଇଷ୍ଟ ଦେବୀଙ୍କ ପାଖରେ ରଖି ପୂଜା କଲେ। ଗାଦୀମହାତ୍ମ୍ୟର ମାନ୍ୟତା ଦେଲେ। ଏବେ ସୁଦ୍ଧା ଅକ୍ଷରକୁ ଆମେ ବ୍ରହ୍ମବୋଲି କହୁ। ଅକ୍ଷର ଥିବା କାଗଜ ଖଣ୍ଡେ ଗୋଡରେ ବାଜି ଗଲେ ଆମେ ତାକୁ ମୁଣ୍ଡରେ ମାରୁ। ଏଇ ଆମର ସଂସ୍କାର। ଆମ ପରମ୍ପରା ଆମ ପୋଥି ପ୍ରୀତିର ନିଦର୍ଶନ।

ପୋଥିକୁ ଗୋପନକରି ରଖିବାର ସେହି ପରଂପରା ଏବେ ମଧ୍ୟ ଅନେକ ଜାଗାରେ ଅକ୍ଷୁଣ୍ଣ ରହିଛି। ଅମୂଲ୍ୟରତ୍ନ ପରି ଏସବୁ ସେମାନେ ସାଇତି ରଖନ୍ତି। ଏପରିକି ପାଠଶାଠ ପଢ଼ିନଥିବା ଲୋକ, ତାଳପତ୍ର ଖୋଦେଇ ଅକ୍ଷରକୁ ଚିହ୍ନିପାରୁ ନଥିବା ଲୋକଙ୍କ ଘରେ ମଧ୍ୟ ପୋଥି ପାଣ୍ଡୁଲିପି ଦେବତାମାନ୍ୟ ପାଇଥା'ନ୍ତି। ପୁରୁଷ ପୁରୁଷ ଧରି ସାଇତା ହୋଇ ରହିଥାଆନ୍ତି। ସେମାନଙ୍କ ପାଖରୁ ଏଗୁଡିକ ସଂଗ୍ରହ କରି ସଂଗ୍ରାହଳୟରେ ରଖିବା କାଠିକରପାଠ ହୋଇଥାଏ।

ତେବେ ଏହି ପୁସ୍ତକର ଆକ୍ରମଣକାରୀ ଓ ସେମାନଙ୍କ କବଳରୁ ପୁସ୍ତକକୁ ଉଦ୍ଧାର କରିବାର ବ୍ୟାକୁଳତା କେବଳ ଆମ ଦେଶର କଥା ନୁହେଁ, ସମଗ୍ର ବିଶ୍ୱର। ଚାଇନାର ବୃହତ୍ ପ୍ରାଚୀର ନିର୍ମାଣ କାଳର କଥା। ସେତେବେଳେ ଚାଇନାର ରାଜା ଥିଲେ ସି-ହ୍ୱାଂ-ତି। ଦିନେ ତାଙ୍କ ମନ୍ତ୍ରୀ ତାଙ୍କୁ କହିଲେ ପୁସ୍ତକ ସକଳ ଅନର୍ଥର ମୂଳ। ପ୍ରଜାମାନେ ଖାଇପିଇ ମଉଜ ମସ୍ତି କରନ୍ତୁ। ପୁସ୍ତକ ପଢ଼ିଲେ ସେମାନେ ଚିନ୍ତା କରିବେ। ଚିନ୍ତା କରିବା ଅଭ୍ୟାସ ହେଲେ ରାଜାଙ୍କ ବିରୁଦ୍ଧରେ ଚିନ୍ତା କରିବେ। ଦେଶରେ ବିଦ୍ରୋହ ହେବ। ତେଣୁ ଏଗୁଡିକୁ ନଷ୍ଟ କରିଦେବା ଉଚିତ୍। ରାଜାଙ୍କୁ ବିଜ୍ଞ ମନ୍ତ୍ରୀଙ୍କ ଉପଦେଶ ଯଥାର୍ଥ ମନେ ହେଲା। ପୋଥି ପୁସ୍ତକ ଧ୍ୱଂସ ଅଭିଯାନ ଆରମ୍ଭ ହୋଇଗଲା। ସେତେବେଳେ ପୁସ୍ତକ ଏମିତି କାଗଜରେ ହେଉନଥିଲା। କାଠ ଓ ଧାତୁରେ ଖୋଦେଇ ହୋଇ ଲେଖା ହେଉଥିଲା। ସେଗୁଡିକୁ ବ୍ୟାଜ୍ୟାପ୍ତି କରି ନିର୍ମାଣାଧୀନ ପ୍ରାଚୀରରେ ନିକ୍ଷେପ କରାଗଲା। ଅନେକ କବି ଲେଖକ ସାହିତ୍ୟିକ ଶିକ୍ଷାବିତ୍ ଏହାର ବିରୋଧ କଲେ। ଫଳରେ ସେମାନଙ୍କୁ ବି ଏହି ପ୍ରାଚୀରରେ ଜୀବନ୍ତ ସମାଧି ଦିଆଗଲା। ଏହି

ହେତୁ ଗ୍ରେଇନାର ବୃହତ୍ ପ୍ରାଚୀରକୁ ବିଶ୍ୱର ବୁଦ୍ଧିଜୀବୀମାନଙ୍କର ବୃହତ୍ କବର ବୋଲି ମଧ୍ୟ କୁହାଯାଏ। ଆଲେକ୍‌ଜାଣ୍ଡ୍ରିଆରେ ମଧ୍ୟ ଠିକ୍ ସେଇ ଘଟଣା ଘଟିଥିଲା। ରାଜାଙ୍କ ମୁଣ୍ଡରେ ଅଜବ୍ ବୁଦ୍ଧି ଜୁଟିଲା, ଧର୍ମରେ ଯାହା ଅଛି, ତାହିହିଁ ଯଦି ପୁସ୍ତକ ମାନଙ୍କରେ ରହିଛି ତେବେ ପୁସ୍ତକମାନଙ୍କର କି ଆବଶ୍ୟକତା ଅଛି ? ପୁସ୍ତକରେ ଯାହା ଅଛି ତାହା ଯଦି ଆମ ଧର୍ମରେ ନାହିଁ ତେବେ ଏ ପୁସ୍ତକମାନ ରହି କି ଲାଭ ? ଏଗୁଡିକୁ ପୋଡ଼ି ଦିଆଯାଉ। ତେଣୁ ଅନେକ ପୁସ୍ତକ ଏ ସମୟରେ ପୋଡ଼ି ଦିଆଯାଇଥିଲା।

କିନ୍ତୁ ସୌଭାଗ୍ୟ ବଶତଃ ଆମ ଦେଶରେ କୌଣସି ରାଜା ଏପରି ଅପରିଣାମଦର୍ଶୀ କାର୍ଯ୍ୟ କରିନାହାଁନ୍ତି। ବରଂ ସେମାନେ ଏହାର ସୁରକ୍ଷା ପାଇଁ ତତ୍ପର ହୋଇଛନ୍ତି। ଭାରତର ପ୍ରଥମ ଲୋକ କଥା ସଂଗ୍ରାହକ ଗୁଣାଢ଼୍ୟ ସମଗ୍ର ଭାରତବର୍ଷ ପରିଭ୍ରମଣ କରି ଛଅ ଲକ୍ଷ ଲୋକ ସଂଗ୍ରହ କରିଥିଲେ। କିନ୍ତୁ ସେଥିପାଇଁ ରାଜପ୍ରୋତ୍ସାହନ ନ ମିଳିବାରୁ ଅଭିମାନରେ ସେ ସେଗୁଡିକୁ ଗୋଟି ଗୋଟି କରି ପୋଡିବାକୁ ଆରମ୍ଭ କରିଥିଲେ। ରାଜା ଖବର ପାଇ ନିଜେ ଗୁଣାଢ଼୍ୟଙ୍କ ପାଖକୁ ଯାଇ ସେଗୁଡିକୁ ଉଦ୍ଧାର କରିଥିଲେ। କିନ୍ତୁ ସେତେବେଳକୁ ଗୁଡାଏ ଶ୍ଳୋକ ନଷ୍ଟ ହୋଇସାରିଥିଲା। ଅବଶିଷ୍ଟ ଯାହା ରହିଥିଲା ତାହା ଆମର ବର୍ଣ୍ଣାଢ଼୍ୟ ପୁସ୍ତକ କଥାସରିତ୍ ସାଗର।

ବହିର ବିକଳ୍ପ ନାହିଁ। ଯେତେ ପ୍ରତିବନ୍ଧକର ଶିକାର ହେଲେ ବି ପୁସ୍ତକ ତା'ର ଅଭିଯାତ୍ରା ଅବ୍ୟାହତ ରଖିଛି। ଗୋଟିଏ ସଭ୍ୟତା ଓ ସଂସ୍କୃତିର ଉଦାତ୍ତ ଉଚ୍ଚାରଣ ହେଲା ପୁସ୍ତକ। ଏବେ ଏହି ପୁସ୍ତକ ସମ୍ମୁଖରେ ଅନ୍ୟ ଏକ ଅଗ୍ନି ପରୀକ୍ଷା ଉପସ୍ଥିତ। ଆଜିର ବିଦ୍ୟୁତ୍ ଯାନ୍ତ୍ରିକ ଯୁଗରେ ବହି ପୁସ୍ତକ ଛାପିବା କିମ୍ବା ପ୍ରଦର୍ଶନ କରିବାର ଆବଶ୍ୟକତା ନାହିଁ ବୋଲି ଅନେକ ଯୁକ୍ତି କରନ୍ତି। ସମଗ୍ର ବିଶ୍ୱରେ ପ୍ରତିଦିନ ଯେତିକି ବହି ଛପା ହେଉଛି, ଯେତିକି ସମ୍ବାଦପତ୍ର ବାହାରୁଛି, ସେଥିପାଇଁ ପ୍ରକୃତିର ଅଜସ୍ର କ୍ଷତି ସାଧନ ହେଉଛି। ଲକ୍ଷ ଲକ୍ଷ ଗଛ କଟା ହେଉଛି। କାଗଜ ପ୍ରସ୍ତୁତି ପ୍ରକ୍ରିୟା ବେଳେ ପରିବେଶ ପ୍ରଦୁଷିତ ହେଉଛି। ତେଣୁ ଏସବୁ ବନ୍ଦ କରାଯାଉ।

ସାହିତ୍ୟ ସୃଷ୍ଟି ପାଇଁ ବିଦ୍ୟୁତ୍ ଯାନ୍ତ୍ରିକ ପଦ୍ଧତିର ସାହାରା ନେବା ପାଇଁ ଅନେକ ବୁଦ୍ଧିଜୀବୀ ପରାମର୍ଶ ଦେଉଛନ୍ତି। ଏଥିପାଇଁ ପ୍ରକ୍ରିୟା ମଧ୍ୟ ଆରମ୍ଭ ହୋଇଗଲାଣି। ସେମାନଙ୍କ ଯୁକ୍ତି ମଧ୍ୟ ଅପ୍ରାସଙ୍ଗିକ ନୁହେଁ। ଏହାକୁ ଅସ୍ୱୀକାର କରିହୁଏ ନାହିଁ। କିନ୍ତୁ ପୁସ୍ତକଟିଏ ହାତରେ ଧରିଲେ କିମ୍ବା ଚକ୍ଷୁ ସମ୍ମୁଖରେ ମେଲି ଧରିଲେ ଯେଉଁ ଦିବ୍ୟ ପ୍ରେରଣା ଟିଏ ମିଳେ ବୋଧହୁଏ ଅନ୍ୟ କୌଣସି ଯାନ୍ତ୍ରିକ ମାଧ୍ୟମରୁ ମିଳିବ ନାହିଁ। ମହାତ୍ମାଗାନ୍ଧୀ ଅହରହ ପାଖରେ ଶ୍ରୀମତ୍ ଭଗବତ୍ ଗୀତା ରଖୁଥିଲେ। ଅବଦୁଲ କାଲାମଙ୍କ

ହାତରେ ସର୍ବଦା ଗୀତା ରହୁଥିଲା । ଆଲେକ୍‌ଜାଣ୍ଡାରଙ୍କ ମୁଣ୍ଡ ତଳେ ଦୁଇଟା ଜିନିଷ ରଖି ଶୋଉଥିଲେ । ଗୋଟିଏ ହେଲା ଛୁରୀ ଓ ଅନ୍ୟଟି ହେଲା ହୋମର୍‌ଙ୍କ ବିରଚିତ ଇଲିଆଡ୍ ପୁସ୍ତକ । ପ୍ରତ୍ୟେକ ମଣିଷର ବୌଦ୍ଧିକ ବିକାଶର ମାଧ୍ୟମ ହେଉଛି ପୁସ୍ତକ । ଆମର ରୁଢ଼ି ରହିଛି ନ ପଢ଼ି କେହି ପଣ୍ଡିତ ହୁଅନ୍ତି ନାହିଁ । ଜ୍ଞାନ ଆହରଣ ପାଇଁ ପୁସ୍ତକର ଆବଶ୍ୟକତା ଏକାନ୍ତ ଅପରିହାର୍ଯ୍ୟ । ସତ୍ ସାହିତ୍ୟ ମାନବ ସମାଜକୁ ଯଥାର୍ଥ ଦିଗ୍‌ଦର୍ଶନ ଦିଏ । ମାନବର ବଞ୍ଚିବାର ମାର୍ଗକୁ ଆହୁରି ଉନ୍ନତ କରେ । ମାନବୀୟ ଚେତନାକୁ ଉର୍ଦ୍ଧ୍ୱଗାମୀ କରେ । ଏଥିପାଇଁ ଯଦି ପ୍ରକୃତିର କିଛି ଅଂଶ ଆମକୁ ହରାଇବାକୁ ପଡେ ତେବେ ଅନୁଶୋଚନାର ଆବଶ୍ୟକ ନାହିଁ । କାରଣ ସକଳ ସୃଷ୍ଟିରେ ମଣିଷକୁ ଶ୍ରେଷ୍ଠ ସୃଷ୍ଟିର ମାନ୍ୟତା ମିଳିଛି । ସବୁରି ମୂଳରେ ମଣିଷ ଓ ଉର୍ଦ୍ଧ୍ୱରେ ମଣିଷ । ମଣିଷ ପଣର ଜୟଗାନ ଈଶ୍ୱରଙ୍କ ସୃଷ୍ଟିର ମୂଳଲକ୍ଷ୍ୟ । ମାନବୀୟ ଚେତନାର ଉତ୍ତରଣ ପାଇଁ ଯଦି ପ୍ରକୃତିର ସାମାନ୍ୟ କ୍ଷତିହୁଏ, ଦୋଷାବହ ନୁହେଁ ।

କିନ୍ତୁ ଦୁର୍ଭାଗ୍ୟର କଥା, ସଭ୍ୟତା ଯେତେ ଆଗଉଛି, ବିଜ୍ଞାନ ଯେତେ ଉତ୍କର୍ଷ ସାଧନ କରୁଛି, ମଣିଷପଣର ସେତେ ଅବନତି ହେବାରେ ଲାଗିଛି । ଏଇ ମଣିଷ ପଣର ଉତ୍‌ଥାନ ପାଇଁ ବ୍ୟାସ ବାଲ୍ମିକୀଙ୍କ ପାଖରୁ ଆରମ୍ଭ କରି ଏକାଳର ବହୁ ବୁଦ୍ଧିଜୀବୀ ଅଜସ୍ର ଶାସ୍ତ୍ର ସଂହିତା ସୃଷ୍ଟି କରିଚାଲିଛନ୍ତି । ସେ ସବୁର ମୂଳଲକ୍ଷ୍ୟ ମଣିଷକୁ ଉନ୍ନତ କରିବା । ଦେବୋପମ କରିବା । କିନ୍ତୁ ବେଳେବେଳେ ଭୁଲ ହୋଇଯାଏ । କେତେଜଣ ଅଜ୍ଞାନ ସ୍ରଷ୍ଟାଙ୍କ ଅପରିଣାମ ଦର୍ଶିତା ପାଇଁ ପୁସ୍ତକ ଅପଜ୍ଞାନର କେନ୍ଦ୍ର ହୋଇପଡେ । ମଣିଷ ସେସବୁକୁ ଆହରଣ କରି ମଣିଷକୁ ନର୍କ ପଥର ଯାତ୍ରୀ କରିଦିଏ । ପରମାଣୁ ବୋମାରେ ହୀରୋସୀମା ଓ ନାଗାସାକି ସହର ଧ୍ୱଂସ ହେବାପରେ ପରମାଣୁର ଉଦ୍‌ଭାବକ ଆଇନ୍‌ଷ୍ଟାଇନ୍ ଅବସୋସ କରି କହିଥିଲେ, ମୁଁ ଯଦି ଜାଣିଥା'ନ୍ତି ମୋ ସୃଷ୍ଟ ଜ୍ଞାନର ଏପରି ଅପବ୍ୟବହାର ଅଜ୍ଞାନମାନେ କରିବେ, ମୁଁ ଘଣ୍ଟା ମରାମତି ଦୋକାନଟିଏ କରି ବସିଥାନ୍ତି । ଏସବୁତ ଜ୍ଞାନର ଅପବ୍ୟବହାର କଥା । ଅନେକ ସମୟରେ ସତକୁ ସତ ପୁସ୍ତକଗୁଡିକ ଅପଜ୍ଞାନର ବାହକ ହୋଇଯାଏ । ସେତେବେଳେ ମନେ ହୁଏ ପୁସ୍ତକ ପ୍ରକାଶ ପାଇଁ ପ୍ରକୃତିକୁ ଧ୍ୱଂସ କରି କେତେ ଭୁଲ୍ ନ କରୁଛୁ ସତେ !

ଏହିପରି ପୁସ୍ତକର ପ୍ରଦର୍ଶନୀ ତ ଆହୁରି ମାରାତ୍ମକ ।



# ଅପ୍ରାପ୍ତବୟସ୍କଙ୍କ ଅପରାଧ

ବାଳଖିଲ୍ୟତା ହେତୁ ହୋଇଥିବା ଅପରାଧ କ୍ଷମଣୀୟ। ଏଥିପାଇଁ ଆମ ପ୍ରାଚୀନ ଶାସ୍ତ୍ରସଂହିତାରେ ଅନୁଶାସନ ରହିଛି। ଏହି ନିୟମର ପ୍ରଣେତା ଥିଲେ ମାଣ୍ଡବ୍ୟ ଋଷି। ଏହି ଋଷି ଦିନେ ତପସ୍ୟାରତ ଥିବା ସମୟରେ ଦଳେ ଚୋର ରାଜକୋଷରୁ ଧନରତ୍ନ ଚୋରିକରି ଆଣି ରାଜପୁରୁଷଙ୍କ ଭୟରେ ତାଙ୍କ ଆଶ୍ରମରେ ଫିଙ୍ଗିଦେଇ ଚାଲି ଯାଇଥିଲେ। ରାଜପୁରୁଷମାନେ ସେହି ଦ୍ରବ୍ୟକୁ ଋଷିଙ୍କ ଆଶ୍ରମରେ ଦେଖି ତାଙ୍କୁ ଚୋର ବୋଲି ଧରିନେଇଥିଲେ। ଏ ସଂପର୍କରେ ତାଙ୍କୁ ଯେତେ ପଚାରିଲେ ସୁଦ୍ଧା ମୌନ ସ୍ୱଭାବର ଋଷି ଏହାର ଜବାବ ଦେଇନଥିଲେ। ଫଳରେ ସେମାନଙ୍କ ସନ୍ଦେହ ସତ୍ୟ ବୋଲି ଭାବି ସେମାନେ ତାଙ୍କୁ ରାଜାଙ୍କ ପାଖରେ ହାଜର କରାଇଥିଲେ। ରାଜା ଶୂଳୀ ଆଦେଶ ଦେଲେ। ମାଣ୍ଡବ୍ୟଙ୍କର ତପଶ୍ଚର୍ଯ୍ୟା ଓ ବ୍ରହ୍ମତେଜ ହେତୁ ବହୁକାଳ ପର୍ଯ୍ୟନ୍ତ ତାଙ୍କର ମୃତ୍ୟୁ ହେଲାନାହିଁ। ରାଜା ଏଥିରେ ଆଶ୍ଚର୍ଯ୍ୟ ହୋଇ ଏହାର କାରଣ ଜିଜ୍ଞାସା କରିଥିଲେ। ଋଷି ନିଜକୁ ନିର୍ଦ୍ଦୋଷ ସାବ୍ୟସ୍ତ କରିଥିଲେ। ରାଜା ଏଥିରେ ବ୍ୟଥିତ ହୋଇ କ୍ଷମାଭିକ୍ଷା କରିଥିଲେ। ତାଙ୍କୁ ଶୂଳୀରୁ ମୁକ୍ତ କରିବାପାଇଁ ଆଦେଶ ଦେଇଥିଲେ। କିନ୍ତୁ ସେ ଶୂଳୀରୁ ବାହାରି ପାରିନଥିଲେ। ଫଳରେ ରାଜାଦେଶରେ ଶୂଳୀକୁ କାଟିବାପାଇଁ ପଡିଥିଲା। ଶୂଳୀର ଅଗ୍ରଭାଗ ଧାରଣ କରି ସେ ତୀର୍ଥାଟନରେ ଚାଲିଯାଇଥିଲେ। ତାଙ୍କର ମୃତ୍ୟୁ ଅନ୍ତେ ଯମଦେବତାଙ୍କୁ ବିନା ଦୋଷରେ ତାଙ୍କ ପ୍ରତି ଏହିପ୍ରକାର ଦଣ୍ଡ ବିଧାନ କାହିଁକି କରାଗଲା ବୋଲି ଜିଜ୍ଞାସା କରନ୍ତେ, ଯମରାଜ କହିଥିଲେ ଯେ ମାଣ୍ଡବ୍ୟ ଶୈଶବରେ ଗୋଟିଏ କଙ୍କିର ଲାଞ୍ଜ ଛିଣ୍ଡେଇ ସେଥିରେ କାଠିଟିଏ ଗେଞ୍ଜି ଦେଇଥିଲେ, କଙ୍କିଟି ଛଟପଟ ହୋଇ ପ୍ରାଣ ଛାଡିଥିଲା। ସେହି ଅପରାଧରେ ଋଷିଙ୍କି ଶୂଳୀବିଦ୍ଧ ହେବାପାଇଁ ପଡିଥିଲା। ଏଥିରେ ମାଣ୍ଡବ୍ୟ କ୍ରୋଧାନ୍ୱିତ ହୋଇ ପଡିଥିଲେ, ବାଳଖିଲ୍ୟତାକୁ କ୍ଷମା ନ ଦେଇ ତାଙ୍କୁ ଏପରି କଠୋର ଦଣ୍ଡ ଦେଇଥିବାରୁ ସେ ଯମଙ୍କୁ ମାନବଯୋନୀରେ ଜନ୍ମ ହେବାର ଅଭିଶାପ ଦେଇଥିଲେ। ଯମ ଜନ୍ମ ହୋଇଥିଲେ ବିଦୂର ରୂପରେ। ତା'ପର ଠାରୁ କ୍ରୀଡ଼ା କୌତୁକ ଜନିତ ବାଳ ଅପରାଧକୁ ଧର୍ତ୍ତବ୍ୟ ଅପରାଧ ରୂପେ ଗ୍ରହଣ ନକରିବାକୁ ସଂହିତା ପ୍ରଣୟନ ହୋଇଥିଲା।

ମହାବୀର ହନୁମାନ ଶୈଶବରେ ତପସ୍ୟାରତ ମୁନିଋଷିଙ୍କ ସହ ବାଲ୍ୟଚପଳତା କରୁଥିଲେ। ସେମାନେ ଅତିଷ୍ଠ ହୋଇ ତାଙ୍କୁ ଶକ୍ତିହୀନ ହୋଇଯିବାର ଅଭିଶାପ ଦେଇଥିଲେ। ସେତେବେଳେ ହନୁମାନଙ୍କର ସାଂପ୍ରତିକ ପରିଭାଷାରେ ଜୁଭେନାଇଲ୍ ବୟସ। ହନୁମାନଙ୍କର ମାଆ ଋଷିମାନଙ୍କ ପାଖରେ ଅନୁନୟ ବିନୟ କରିବାରୁ ସେମାନେ ଦଣ୍ଡ କୋହଳ କରିଥିଲେ। ହନୁମାନ ଶକ୍ତିହୀନ ହେବା ପରିବର୍ତ୍ତେ ଶକ୍ତି ବିସ୍ମୃତ ହୋଇଥିଲେ। ଅନ୍ୟ କେହି ତାଙ୍କୁ ତାଙ୍କ ଶକ୍ତି ସଂପର୍କରେ ସଚେତନ କରିଦେଲେ ସେ ପୂର୍ବଶକ୍ତି ପ୍ରାପ୍ତ ହେଉଥିଲେ।

କିନ୍ତୁ ଶାମ୍ବ ସମେତ ଯଦୁବଂଶୀୟ ଉଦ୍ଧତ ଯୁବକଙ୍କୁ କ୍ଷମା ଦେଇନଥିଲେ ଦୁର୍ବାସା। ସେମାନଙ୍କ ଅପରାଧ ମଧ୍ୟ ବାଳଖିଲ୍ୟତା ନଥିଲା। ପୁରୁଷ ପିଲାଟିଏ ନାରୀ ବେଶ ହୋଇ ଗର୍ଭରେ ଲୌହ ମୂଷଳ ରଖି ଗର୍ଭବତୀ ହେବାର ଅଭିନୟ ଓ ଜଣେ ପ୍ରାଜ୍ଞ ଋଷିଙ୍କୁ ଗର୍ଭସ୍ଥ ସନ୍ତାନଟି ପୁଅ କି ଝିଅ ବୋଲି ପ୍ରଶ୍ନ କରିବା ବାଲ୍ୟଚପଳତା ନୁହେଁ। ସେମାନଙ୍କର ଏ ଅପରିଣାମଦର୍ଶୀ କାର୍ଯ୍ୟକଳାପ ଯଦୁବଂଶ ଧ୍ୱଂସର ମୂଳ କାରଣ ହୋଇଥିଲା।

ସାଂପ୍ରତିକ ଯୁଗରେ ବାଳ ଅପରାଧ ସମାଜରେ ନାଗ ଚଟୁନ୍ଦ୍ରା ଧରିବା ସମସ୍ୟା ସୃଷ୍ଟି କରିଛି। ସବୁଠାରୁ ଉଦ୍‌ବେଗଜନକ ପ୍ରସଙ୍ଗ ହେଲା ଆଇନ୍‌ରେ ଯେଉଁ ଅପରାଧୀମାନଙ୍କୁ ସ୍ୱତନ୍ତ୍ର ଯତ୍ନ ଓ ସୁରକ୍ଷା ଦେବାର ବ୍ୟବସ୍ଥା ରହିଛି ସେମାନେ ସେତେବେଳକୁ ନିଜର ଯତ୍ନ ଓ ସୁରକ୍ଷା ନିଜେ ବହନ କରିବା ଅବସ୍ଥାକୁ ଆସି ସାରିଥାନ୍ତି। ଆମ ଦେଶ ଗ୍ରୀଷ୍ମ ପ୍ରଧାନ ଦେଶ। ବିଶ୍ୱର ଅନ୍ୟାନ୍ୟ ଶୀତ ପ୍ରଧାନ ଦେଶରେ ଯେଉଁ ବୟସକୁ ଅପ୍ରାପ୍ତ ବୟସ୍କ ବୋଲି କୁହାଯାଏ। ଆମ ଦେଶରେ ସେହି ବୟସରେ ଜଣେ ବହୁ ଦୁଃସାଧ୍ୟ କାର୍ଯ୍ୟ ସଂପନ୍ନ କରିବାର ଦୃଷ୍ଟାନ୍ତ ରହିଛି। ଅଭିମନ୍ୟୁ ବାରବର୍ଷରେ ସପ୍ତରଥୀଙ୍କୁ ନିଜ ବଳ ବିକ୍ରମରେ ନାକେଦମ୍ କରିଦେଇଥିଲେ ଓ ବିବାହ କରି ପିତା ହେବାକୁ ଯାଉଥିଲେ। ବାରଶହ ବଢ଼େଇ ଯାହା କରିପାରିନଥିଲେ, ବାରବର୍ଷର ଧର୍ମପଦ ତାହା କରି ଦେଖାଇଥିଲା। ବାଜିରାଉତ ବାରବର୍ଷରେ ସହିଦ୍ ହେବା ତ ଏବେକାର କଥା। ପୁଣି ବାରବର୍ଷ ବୟସରେ ଗୋପଲୀଳା ସଂପନ୍ନ କରିଥିବା ଶ୍ରୀକୃଷ୍ଣ ତ ସେହି ବୟସରେ ଥିଲେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ଯୋଦ୍ଧା ଓ ପରମ ପ୍ରେମିକ।

ଏବେ କ୍ରମବର୍ଦ୍ଧିଷ୍ଣୁ ବାଳ ଅପରାଧର ତର୍ଜମା କଲେ ଜଣାଯାଏ, ଚୋରୀ ଡକାୟତି, ହତ୍ୟା, ଅପହରଣ, ଧର୍ଷଣ ଆଦି ଅପରାଧ ମଧ୍ୟରେ ବାଳ ଅପରାଧୀମାନେ ବହୁ ସଂଖ୍ୟାରେ ଧର୍ଷଣ ଜନିତ ହତ୍ୟା ଅପରାଧରେ ଜଡ଼ିତ। ଏ ପରିପ୍ରେକ୍ଷୀରେ

ଏମାନଙ୍କ ଅପରାଧ ଯେ ବାଲ୍ୟଚପଳତା, ତାହା ଆଦୌ ନୁହେଁ। ଏମାନଙ୍କୁ ଦଣ୍ଡମୁକ୍ତ କରିଦେବା ମଧ୍ୟ ଅତ୍ୟନ୍ତ ବିପଦଜନକ। ଯେତେବଡ ଅପରାଧ କଲେ ସୁଦ୍ଧା ଏମାନଙ୍କ ଦଣ୍ଡ ମାତ୍ର ତିନିବର୍ଷ। ତାହା ପୁଣି ସୁଧାର ଗୃହରେ, କୌଣସି ପରିସ୍ଥିତିରେ ବାଳ ଅପରାଧୀଙ୍କୁ ଫାଶୀ ଦିଆଯାଇ ପାରିବନାହିଁ। ସେମାନଙ୍କ ଅପରାଧ ଯେତେ ଜଘନ୍ୟ, ସୁଧାର ଗୃହରୁ ମୁକୁଳି ଯେ ସେମାନେ ସ୍ୱାଭାବିକ ଜୀବନ ଯାପନ କରିବେ, ବିଶ୍ୱାସ କରି ହୁଏନାହିଁ। ଆମ ଦୁର୍ଭାଗ୍ୟକୁ ଆଇନ ବିଶେଷଜ୍ଞମାନେ ବିରଳରୁ ବିରଳତମ ବୋଲି କହୁଥିବା 'ନିର୍ଭୟା' ଗଣ ଦୁଷ୍କର୍ମକାରୀମାନେ ଅଠର ବର୍ଷରୁ କମ୍ ଥିଲେ, ସେମାନଙ୍କ ସୌଭାଗ୍ୟ ଯେ ଆଇନ୍‌ର ଅସହାୟ ପଞ୍ଝା ସେମାନଙ୍କୁ ଧରିପାରିଲା ନାହିଁ। ଚୋର ଚାଲିଗଲାପରେ ବୁଦ୍ଧି ଆସେ ପରି ଏବେ ଆମ ଦେଶରେ ବାଳଅପରାଧୀଙ୍କ ବୟସ ସୀମା ଷୋହଳକୁ ଖସିଆସିଛି। ଏହା ଏକ ଐତିହାସିକ ସିଦ୍ଧାନ୍ତ। ଅତ୍ୟନ୍ତ ସ୍ୱାଗତ ଯୋଗ୍ୟ ପଦକ୍ଷେପ।

ତେବେ ଭାରତ ପରି ଏକ ବିକାଶଶୀଳ ରାଷ୍ଟ୍ରରେ ଅନେକ ଜଟିଳ ଓ ସ୍ପର୍ଶକାତର ପ୍ରସଙ୍ଗ ମଧ୍ୟରୁ ବାଳ ଅପରାଧ ଗୋଟିଏ। ଆମ ଦେଶରେ ଅପରାଧ ଘଟାଇଥିବା ବ୍ୟକ୍ତିର ପାରିପାର୍ଶ୍ୱିକ ସ୍ଥିତି ଉପରେ ଯେତିକି ପ୍ରାଧାନ୍ୟ ଦିଆଯାଇଥାଏ, ଅପରାଧର ଜଘନ୍ୟତା ଉପରେ ସେତିକି ନୁହେଁ। ଏ ପ୍ରସଙ୍ଗର ଯୁକ୍ତି ହେଲା, ବହୁ ସଂଖ୍ୟକ ବାଳ ଅପରାଧୀ ଫୁଟ୍‌ପାଥ୍ ଅଥବା ବସ୍ତିବାସିନ୍ଦା। ଶୈଶବରୁ ସେମାନେ ପରିବାର ଓ ପରିବାର ବାହାରେ ଅନେକ ପ୍ରକାରର ଯୌନ ଶୋଷଣ, ହିଂସ୍ର ଆଚରଣ ଓ ନିଶାଗ୍ରସ୍ତଙ୍କ ଅମାନୁଷିକ ଅତ୍ୟାଚାରର ଶିକାର ହୋଇଥାନ୍ତି। ବହୁ ଦୁର୍ଦ୍ଦାନ୍ତ ଅପରାଧୀଙ୍କ ସଂସ୍ପର୍ଶରେ ଆସିଥିବାରୁ ପ୍ରତିକ୍ରିୟାଶୀଳ ହୋଇ ସେମାନେ ଏପରି ଅପରାଧ କରିବାପାଇଁ ପଶ୍ଚାତ୍ ପଦ ହୁଅନ୍ତି ନାହିଁ। କେବଳ ଦିଲ୍ଲୀ ସହରର ଫୁଟ୍‌ପାଥ୍‌ରେ ଅଶୀହଜାର କିଶୋର ଏମିତି ଦୟନୀୟ ଜୀବନ ବଞ୍ଚିଥା'ନ୍ତି। ଆମ ରାଜ୍ୟ ରାଜଧାନୀରେ ବି ଏମାନଙ୍କ ସଂଖ୍ୟା କମ୍ ନୁହେଁ। ଏମାନଙ୍କୁ କୁଖ୍ୟାତ ଅପରାଧୀଙ୍କ ସହ ରଖାଗଲେ ଭବିଷ୍ୟତରେ ସୁଧୁରିବା ପରିବର୍ତ୍ତେ ଆହୁରି ଦୁର୍ଦ୍ଦାନ୍ତ ହୋଇ ଉଠିବେ। ଏସବୁ ସତ୍ତ୍ୱେ ଆମ ସମାଜରୁ କ୍ରମବର୍ଦ୍ଧିଷ୍ଣୁ ବାଳ ଅପରାଧ ନିୟନ୍ତ୍ରଣ ପାଇଁ ଏ ଯୁକ୍ତି ଯଥାର୍ଥ ମନେ ହୁଏ ନାହିଁ।

ବାଳ ଅପରାଧୀ ଯେ କେବଳ ଝୁମ୍ପୁଡି ବାସିନ୍ଦା ତାହା ମଧ୍ୟ ଠିକ୍ ନୁହେଁ। ମଧ୍ୟବିତ୍ତ ଓ ଆଭିଜାତ୍ୟସଂପନ୍ନ ଘରର ପିଲାମାନେ ମଧ୍ୟ ଚୋରୀ, ଡକାୟତି, ହତ୍ୟା ଓ ଧର୍ଷଣ ଆଦି ମାମଲାରେ ଜଡ଼ିତ ହେବାର ବହୁ ଦୃଷ୍ଟାନ୍ତ ରହିଛି। ଅର୍ଥ ଓ କ୍ଷମତା ବଳରେ ଏସବୁକୁ ଚପାଇ ଦିଆଯାଉଛି। ଡ୍ରଗ୍ସ ସେବନକାରୀ ବହୁ କିଶୋର ଉଚ୍ଚବର୍ଗର

ଧନୀକ ଦୁଲାଳମାନଙ୍କୁ ଅଭିଭାବକମାନେ ସମୟ ଦେଇପାରନ୍ତି ନାହିଁ। କେବଳ ଅର୍ଥ ହିଁ ଦିଅନ୍ତି। ସେହି ଅର୍ଥ ସକଳ ଅନର୍ଥର ମୂଳ ହୋଇଥାଏ। ପିତାମାତାଙ୍କ ବିବାହ ବିଚ୍ଛେଦ ଅଥବା ବିଶୃଙ୍ଖଳିତ ଜୀବନ ପଦ୍ଧତି ହେତୁ ବହୁ ଆଭିଜାତ୍ୟସଂପନ୍ନ ଘରର ସନ୍ତାନ ଅସାମାଜିକ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିଥାନ୍ତି ଓ ବିଭିନ୍ନ ପ୍ରକାର ଅପରାଧରେ ଜଡିତ ହୋଇପଡିଥାନ୍ତି। ପିତାମାତା ଉଭୟ କର୍ମଜୀବୀ ହୋଇଥିଲେ, ସନ୍ତାନସନ୍ତତି ନିଃସଙ୍ଗ ହୋଇପଡନ୍ତି। ସନ୍ତାନମାନଙ୍କ ପ୍ରତି ପିତାମାତାଙ୍କର ଅହେତୁକ ଉଚ୍ଚ ଅଭିଳାଷ ହେତୁ ଅନେକ ସମୟରେ ସେମାନେ ଋପଗ୍ରସ୍ତ ରୁହନ୍ତି। ଘରଛାଡ଼ି ଚାଲି ଯିବାର ନିଷ୍ପତ୍ତି ନିଅନ୍ତି। ଏମାନେ ଅତି ସହଜରେ ଅସାମାଜିକ ଲୋକଙ୍କର ହାତ ବାରିସି ହୋଇପଡନ୍ତି ଓ ଧର୍ତ୍ତବ୍ୟ ଅପରାଧ ଘଟାଇଥାନ୍ତି।

ବାଳ ଅପରାଧୀ ଆଭିଜାତ୍ୟସଂପନ୍ନ ପରିବାରର ହେଉ ଅଥବା ଝୁମ୍ପୁଡି ବାସିନ୍ଦା ଯେଉଁ ଅପରାଧ ବାଳ ସୁଲଭ, ବଞ୍ଚିବାର ସଂଘର୍ଷ ହେତୁ ଘଟିଥାଏ, ସେମାନଙ୍କ ପାଇଁ ସ୍ୱତନ୍ତ୍ର ବିଋରାଳୟ କିମ୍ବା ସଂସ୍କାରମୂଳକ କାରାଗୃହର ଆବଶ୍ୟକତା ଅଛି। କିନ୍ତୁ ଯେଉଁ ଅପରାଧ ବୟସ୍କମାନଙ୍କ କ୍ଷେତ୍ରରେ ସୁଦ୍ଧା ବିରଳରୁ ବିରଳତମ, ସେହି ଅପରାଧ କିଶୋରମାନଙ୍କ ଦ୍ୱାରା ସଂଘଟିତ ହେଲେ ସେମାନଙ୍କ ପ୍ରତି କି ଦଣ୍ଡ ବିଧାନ ହେବ ତାହା ନିଶ୍ଚୟ ମୁଣ୍ଡବ୍ୟଥାର କାରଣ। ତତ୍ ସଙ୍ଗେ ସଙ୍ଗେ ସମାଜରୁ ଏହି କଳଙ୍କିତ ସମସ୍ୟା ଗୁଡିକୁ କିପରି ଦୂରୀଭୂତ କରାଯିବ ତାହା ମଧ୍ୟ ଉଦ୍‌ବେଗଜନକ ପ୍ରସଙ୍ଗ। ଏଥିପାଇଁ ଆହୁରି ଅନେକ ତର୍କବିତର୍କ ଆଲୋଚନା ଅନୁଶୀଳନର ଆବଶ୍ୟକତା ଅନୁଭବ ହୁଏ।



# ଘଟଣା, ଅଘଟଣ ଓ ଦୁର୍ଘଟଣା

ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯେଉଁ ଲମ୍ବା ରାସ୍ତା ଆମେ ଅତିକ୍ରମ କରୁ, ତାହା ହେଉଛି ଜୀବନ। ଜୀବନର ଏ ଯାତ୍ରା ପଥ ସର୍ବଦା ପୁଷ୍ପିତ ପିଚ୍ଛିଳ ନୁହେଁ। ଗୁଡାଏ ଘଟଣା, ଅଘଟଣ ଓ ଦୁର୍ଘଟଣାର ସମ୍ମିଳିତ ସିମ୍ଫୋନୀରେ ମନୋରଞ୍ଜକ ରହସ୍ୟ ରୋମାଞ୍ଚରେ ଏହା ଆନନ୍ଦ ପ୍ରଦାୟକ ତ ପୁଣି କେତେବେଳେ ବିଭୀଷିକାମୟ ଓ ଭୀତିପ୍ରଦ। ଘଟଣା ଗୁଡିକ ଯେମିତି ଆମର ସମୃଦ୍ଧ ଓ ପ୍ରଗତି ସୂଚକ ଅଘଟଣ ଓ ଦୁର୍ଘଟଣା ସେମିତି ଆମର ଦୁର୍ଗତି ଓ ଦୁର୍ଭୋଗର ପରିଚାୟକ। ଏହା ଆମ ପୌରୁଷକୁ ଆହ୍ୱାନ କରେ। ଆମ ସାମର୍ଥ୍ୟକୁ ଅଙ୍ଗୁଳି ନିର୍ଦ୍ଦେଶ କରେ। ଘଟଣା ଓ ଅଘଟଣ ଗୁଡିକ ଆମ ସଜ୍ଞାନ ଚିତ୍ତରେ ସଂଘଟିତ ହେଉଥାଏ। ଘଟଣା ଗୁଡିକର ଯଥାର୍ଥ ଉପଯୋଗ କରିନପାରିଲେ ତାହା ଅଘଟଣ ହୋଇଯାଏ। ଯାହା ଘଟେ ତାହା ଘଟଣା। ତାହା ଆମ ପ୍ରତି ମଙ୍ଗଳ ଦାୟକ ନହୋଇ ଅମଙ୍ଗଳ କାରକ ହେଲେ ଆମେ କହୁ ଅଘଟଣ ବା ଦୁର୍ଘଟଣା। ଘଟଣା ଗୁଡିକ ପ୍ରତି ଯୋଜନବଦ୍ଧ ହୋଇ ଆମେ ପ୍ରସ୍ତୁତ ଥିବାବେଳେ ଏଥିପ୍ରତି ଦାୟିତ୍ୱହୀନତା, ପ୍ରଚ୍ଛନ୍ନ ଅଭିସନ୍ଧି ଓ ଅପ୍ରସ୍ତୁତି ଅଘଟଣର ହେତୁ ହୁଏ। ଯୋଜନାର ସୁଚାରୁ ସଂପାଦନା ଅଘଟଣକୁ ଏଡାଇ ଦେଇଥାଏ। ଘଟଣା ଅଘଟଣ ଉର୍ଦ୍ଧ୍ୱରେ ରହିଛି ଦୁର୍ଘଟଣା। ଯେତେ ସତର୍କତା ଅବଲମ୍ବନ କଲେ ମଧ୍ୟ କେତେବେଳେ କେଉଁ ରୂପରେ ସେ ଆସିବ ତାହା କଳ୍ପନାତୀତ। ତା'ର ପୂର୍ବାନୁମାନ ମଣିଷର ସାମର୍ଥ୍ୟର ବାହାରେ।

ରାତି ପାହିଲେ ରାମ ରାଜା ହୋଇଥା'ନ୍ତେ। ଏହି ଘଟଣା ଅଘଟଣ ହୋଇଗଲା, ଯେତେବେଳେ ତାଙ୍କୁ ବନବାସ ଯିବାପାଇଁ ହେଲା, ସଙ୍ଗରେ ଗଲେ ଅନୁଗତ ଭାଇ ଓ ପ୍ରାଣପ୍ରିୟା ପତ୍ନୀ ସୀତା। ପତ୍ରକୁଡିଆ କରି ରହିଲେ ବଣରେ। ସେଇଠି ଘଟିଲା ଦୁର୍ଘଟଣା। ରାବଣ ସୀତାଙ୍କୁ ଅପହରଣ କରିନେଇଗଲା। ପରେ ପରେ ଏହି ଦୁର୍ଘଟଣାକୁ ସମ୍ବନ୍ଧିତ କରି ଗୁଡାଏ ଘଟଣା ଓ ଅଘଟଣ ଘଟିଗଲା। ଘଟଣା ଓ ଅଘଟଣ ପୂର୍ବ ପ୍ରସ୍ତୁତି ଅଥବା ଯୋଜନାବଦ୍ଧ ଭାବରେ ହୋଇଥାଏ। କିନ୍ତୁ ସଂପୂର୍ଣ୍ଣ ଆକସ୍ମିକ ଓ ଅପ୍ରତ୍ୟାଶିତ ଭାବରେ ଆସେ ଦୁର୍ଘଟଣା। ଅପ୍ରସ୍ତୁତ ମଣିଷକୁ ସର୍ବସ୍ୱାନ୍ତ କରି ଚାଲିଯାଏ। ନଈ ବଢ଼ି ଓ

ଘରପୋଡି। ଦୁଇଟି ଯାକ ମଣିଷକୁ ଆକ୍ରାନ୍ତ କରନ୍ତି। କିନ୍ତୁ ନଈ ବଢ଼ି ଦୁର୍ଘଟଣା ନୁହେଁ। ଏହା ମୂଳରେ ବିଧିବଦ୍ଧ କାରଣଟିଏ ରହିଛି। ଏଥିପାଇଁ ପୂର୍ବାନୁମାନ ମଧ ହୋଇପାରେ। କିନ୍ତୁ ଘରପୋଡ଼ି ସଂପୂର୍ଣ୍ଣ ଅପ୍ରତ୍ୟାଶିତ ଓ ଆକସ୍ମିକ। ଏହା ଆସେ ମଣିଷକୁ ଛାରଖାର କରି ଚାଲିଯାଏ।

ମହାଭାରତର ଜତୁଗୃହ ଦହନ ଦୁର୍ଘଟଣା ନଥିଲା। ଏହାଥିଲା ଦୁର୍ଯ୍ୟୋଧନ ଓ ଶକୁନିଙ୍କର ସୁପରିକଳ୍ପିତ ଅଭିସନ୍ଧି। ପାଣ୍ଡବମାନଙ୍କୁ ନିଧନ କରିବା ଉଦ୍ଦେଶ୍ୟରେ ଏହା ସଂଘଟିତ ହୋଇଥିଲା। କିନ୍ତୁ ଅଭିମନ୍ୟୁ ବଧ ଥିଲା ସଂପୂର୍ଣ୍ଣ ଘୁର୍ଘଟଣା। ଏପରି ଅପ୍ରତ୍ୟାଶିତ ଭାବରେ ଘଟଣାଟି ଘଟିଗଲା ଯେ କେହି ତାକୁ ରକ୍ଷା କରିପାରିଲେ ନାହିଁ। ପୁରାଣ ଇତିହାସରେ ଏମିତି ଅନେକ ପ୍ରସଙ୍ଗ ରହିଛି। ଦୁର୍ଘଟଣା ଆମକୁ ଅଶେଷ କ୍ଷତିଗ୍ରସ୍ତ କରିଥାଏ ସତ, କିନ୍ତୁ ଏଇ ଅଭିଜ୍ଞତା ଲବ୍ଧଜ୍ଞାନ ପରବର୍ତ୍ତୀ ପର୍ଯ୍ୟାୟରେ ଆମର ଅଶେଷ କଲ୍ୟାଣ ସାଧନ କରିଥାଏ। ଘଟଣା ହେଉ କି ଦୁର୍ଘଟଣା, ମାନବୀୟ ବିବର୍ତ୍ତନରେ କୌଣସିଟି ବ୍ୟର୍ଥ ଯାଏନାହିଁ।

ଜାଗତିକ ସୃଷ୍ଟି ତତ୍ତ୍ୱ ମୂଳରେ ବୈଜ୍ଞାନିକମାନେ ଭିନ୍ନ ଭିନ୍ନ ତଥ୍ୟ ଓ ମତ ପୋଷଣ କରନ୍ତି। ସେଗୁଡିକ ମଧ୍ୟରୁ ଏକ ବହୁ ଜନ ସମର୍ଥିତ ତଥ୍ୟଟି ହେଲା ସୂର୍ଯ୍ୟଙ୍କ ସହ ଆଉ ଏକ ବଡ ନକ୍ଷତ୍ରର ଧକ୍କା ହେବା ଫଳରେ ଉଭୟଙ୍କ ଦେହରୁ କିଛି ଅଂଶ ଖଣ୍ଡ ବିଖଣ୍ଡିତ ହୋଇ ଛିଟିକି ପଡିଥିଲା। ଯାହାକୁ ସାଂପ୍ରତିକ ପରିଭାଷାରେ ଦୁର୍ଘଟଣା ବା ଏକ୍ସିଡେଣ୍ଟ କୁହାଯାଇପାରେ। ସେହି ଜ୍ୱଳନ୍ତ ଟୁକୁଡା କାଳକ୍ରମେ ଶୀତଳ ହେଲା ଓ ସେଇଥିରୁ ସୃଷ୍ଟି ହେଲା ପୃଥିବୀ ଓ ଅନ୍ୟାନ୍ୟ ଗ୍ରହ। କ୍ରମେ ସେଥିରେ ଜୀବସତ୍ତା ସମ୍ଭବ ହେଲା। ଏ ଦୁର୍ଘଟଣାଟି ଘଟିନଥିଲେ ପୃଥିବୀ ବୋଲି ବସ୍ତୁଟିଏ ନଥାନ୍ତା କି ଜୀବଜଗତ ସମ୍ଭବ ହୋଇନଥାନ୍ତା।

ଅତୀତରେ ଜୀବନଯାପନ ପଦ୍ଧତି ଥିଲା ସରଳ ଓ ଏକମୁଖୀ। ଅଳ୍ପରେ ସନ୍ତୁଷ୍ଟ ଥିଲେ ସେମାନେ। ଯନ୍ତ୍ର ଯେହେତୁ କମ୍ ଥିଲା, ଯାନ୍ତ୍ରିକ ତ୍ରୁଟି ବି ନଥିଲା। ଏବେ ସେ ପରିସ୍ଥିତି ଆଉ ନାହିଁ। ଏବେ ଆମେ ପ୍ରତିଟିମୁହୂର୍ତ୍ତ ଯନ୍ତ୍ର ସହ ବିତାଉଛୁ। ଦୁର୍ଘଟଣା ଆମ ସହଚର ହୋଇପଡିଛି। ଟାଇଟାନିକ ଜଳ ଜାହାଜ ଦୁର୍ଘଟଣା ହେଉ କି ଅନ୍ତରୀକ୍ଷ ଯାନରେ କଳ୍ପନା ଚାୱାଲା ସମେତ ଅନ୍ୟ ସହ ଅନ୍ତରୀକ୍ଷଯାତ୍ରୀ ହୁଅନ୍ତୁ, ଏ ଦୁର୍ଘଟଣାରୁ ଉଦ୍ଧୁରି ଆସିବାର ସାଧ କାହାରି ନଥିଲା। ପାଦେ ପାଦେ ସେମାନେ ମୃତ୍ୟୁର କରାଳ ଗହ୍ୱର ଭିତରକୁ ପେଶି ହୋଇଗଲାବେଳକୁ ଆମେ ଅସହାୟ ପୃଥିବୀବାସୀ କେବଳ ନିରବ ଦର୍ଶକ ସାଜିବା ଛଡ଼ା ଅନ୍ୟ ଉପାୟ ନଥିଲା।

ଗତ ଦୁଇ ଦଶନ୍ଧି ଧରି ଆମେ ଦେଖି ଆସୁଛୁ ଓଡ଼ିଶା ଉପରଦେଇ ଗୁଡ଼ାଏ

ଅଘଟଣ ଓ ଦୁର୍ଘଟଣା ଓଡ଼ିଶାର ଜନଜୀବନକୁ ବ୍ୟତିବ୍ୟସ୍ତ କରି ରଖିଛି। ଏଗୁଡ଼ିକୁ ନେଇ ଗଣମାଧ୍ୟମମାନେ ଆବଶ୍ୟକତାଠୁ ଅଧିକ ସକ୍ରିୟ ଓ ତତ୍ପର ଅଛନ୍ତି। ରାଜନୈତିକ ନେତାମାନେ ଏଗୁଡ଼ିକୁ ନେଇ ଯେପରି ହଟଚମଟ କରୁଛନ୍ତି ଏଥିରେ ପୀଡ଼ିତଙ୍କ ସହ ଜନସାଧାରଣ ମଧ୍ୟ କମ୍ ଆକ୍ରାନ୍ତ ହେଉ ନାହାଁନ୍ତି। ହରତାଳ, ଧର୍ମଘଟ, ରାସ୍ତାରୋକ ସହ ଗଣମାଧ୍ୟମମାନେ ଯେପରି ରୋଚକ ଢ଼ଙ୍ଗରେ ଏହାକୁ ଉପସ୍ଥାପିତ କରୁଛନ୍ତି, ତାହା କୌଣସି ନାଟକ ଉପନ୍ୟାସ ଠାରୁ ବଳି କମ୍ ରୋମାଞ୍ଚକର ନୁହେଁ। ଘଣ୍ଟା ଘଣ୍ଟା ସମୟ ନଷ୍ଟ କରି ଦିନଦିନ ଧରି ଜନସାଧାରଣ ଏହାକୁ ଉପଭୋଗ କରୁଛନ୍ତି, ଗୋଟାକ ପରେ ଗୋଟାଏ ଘଟଣା ଲାଗିରହୁଛି। ବେଳେବେଳେ ସୋରିଷ ଆକୃତି ଘଟଣାକୁ ପାହାଡ଼ରେ ପରିଣତ କରିବାର ଦୃଷ୍ଟାନ୍ତ ବି କମ୍ ନାହିଁ। ନିକଟରେ ଘଟିଯାଇଥିବା ପାରଳା ରାଜପ୍ରସାଦର ପ୍ରସଙ୍ଗ, ଦାନମାଝୀ, ନଗଡ଼ାର ଅପପୁଷ୍ଟି ଜନିତ ଶିଶୁମୃତ୍ୟୁ, ମାଲକାନଗିରିରେ ଜାପାନୀ ଏନସେଫାଲାଇଟସ୍ ଜନିତ ଶିଶୁ ମଡ଼କ, ଡେଙ୍ଗୁ ଜନିତ ଶିଶୁ ମୃତ୍ୟୁ ଆଦି ଅଘଟଣାକୁ ନିୟନ୍ତ୍ରଣକୁ ଆଣି ହେବ। ଲୋକଚରିତ୍ରର ବିପରୀତ ଦିଗ ସହ ଦାରିଦ୍ର୍ୟ, ଅଜ୍ଞାନତା, ସଚେତନତାର ଅଭାବ ଅନେକ ଅଘଟଣର ମୂଳ ହେତୁ। ଏ ଅଘଟଣକୁ ଆମେ ନିୟନ୍ତ୍ରଣ କରିପାରିବା। ଜନକଲ୍ୟାଣ ପାଇଁ ପ୍ରଣୟନ ହେଉଥିବା ଯୋଜନା ଗୁଡ଼ିକର ସୁରୁରୁ ସଂପାଦନ ଓ ମାନବିକ ଗୁଣାବଳୀର ସକାରାତ୍ମକ ପ୍ରୟୋଗ ଦ୍ୱାରା ଅନେକ ଅଘଟଣକୁ ରୋକି ହେବ।

ମାତ୍ର ଦୁର୍ଘଟଣା ହିଁ ଦୁର୍ଘଟଣା। ଏହାକୁ ରୋକିବା ବ୍ୟକ୍ତି ସାମର୍ଥ୍ୟର ବାହାରେ। ସେହି ହେତୁ ଦୁର୍ଘଟଣା ଆମକୁ ଭାଗ୍ୟବାଦୀ ଅଥବା ଈଶ୍ୱରବିଶ୍ୱାସୀ କରିଦିଏ। ଅନେକ ଦୁର୍ଘଟଣାର ହେତୁ ମନୁଷ୍ୟ ଥିବାବେଳେ, କେତେକ ଦୁର୍ଘଟଣା ପ୍ରାକୃତିକ। ପ୍ରାକୃତିକ ଦୁର୍ଘଟଣାକୁ ଆମେ କହୁ ବିପର୍ଯ୍ୟୟ। ମହାବାତ୍ୟା, ସୁନାମୀ, ଭୂମିକମ୍ପ, ବଜ୍ରପାତ ଆଦିକୁ ଆମେ ନିୟନ୍ତ୍ରଣ କରିପାରିବା ନାହିଁ। କେବଳ ପୀଡ଼ିତମାନଙ୍କୁ ଉଦ୍ଧାର ଓ ସହାୟତା କରିବା ବ୍ୟତିତ ଆମ କର୍ତ୍ତୃତ୍ୱର କିଛି ନଥାଏ। ଏୟାରକ୍ରାସ୍, ରେଳ ଦୁର୍ଘଟଣା, ନୌକା ବୁଡ଼ି, ବସ୍ ଦୁର୍ଘଟଣା, ଅଗ୍ନିହାତ ଆଦି ମଣିଷ ସୃଷ୍ଟ ଉପାଦାନମାନଙ୍କରେ ଘଟିଥାଏ। ଏଗୁଡ଼ିକୁ ଆମେ ଦୁର୍ଘଟଣା ହିଁ କହୁ।

ବିବେକାନନ୍ଦ କହୁଥିଲେ ପୃଥିବୀରେ ଆବଶ୍ୟକତା ଠାରୁ ଅଧିକ ଜନସଂଖ୍ୟା ହୋଇଗଲେ ତା'ର ସନ୍ତୁଳନ ରକ୍ଷା ନିମନ୍ତେ ପ୍ରାକୃତିକ ଉପାୟରେ ଏହିପରି ମୃତ୍ୟୁ ହୋଇଥାଏ। ଯାହାକୁ ସେ ବିବର୍ତ୍ତନୀ ଆଖ୍ୟା ଦେଇଥିଲେ। ଆମେ ଆଉଟିକେ ସୂକ୍ଷ୍ମାନୁଭୂତିରୁ କହିବା, ମଣିଷର ଅହଂଭାବକୁ ବିଚୂର୍ଣ୍ଣିତ କରିବାପାଇଁ ଦୁର୍ଘଟଣାକୁ ଈଶ୍ୱର

ଏକ ଅସ୍ତ୍ର ରୂପେ ଧାରଣ କରିଥା'ନ୍ତି। ଈଶ୍ୱରଙ୍କ ପ୍ରତି ଭୟଶୂନ୍ୟ ହେଉଥିବା ମଣିଷଙ୍କ ପାଇଁ ଏହା ଏକ ଚେତାବନୀ। ସ୍ୱାଧୀନତା ପୂର୍ବରୁ ପୂର୍ବବଙ୍ଗରେ ଘଟିଥିବା ଅନାବୃଷ୍ଟି ଜନିତ ମରୁଡ଼ି ଓ ଦୁର୍ଭିକ୍ଷରେ ପୋକମାଛି ପରି ମୃତ୍ୟୁ ବରଣ କରୁଥିବା ଲୋକମାନଙ୍କ ଉଦ୍ଦେଶ୍ୟରେ ମହାତ୍ମାଗାନ୍ଧି କହିଥିଲେ, ହିନ୍ଦୁ ମୁସଲମାନଙ୍କ ମଧରେ ଯେଉଁ ଉଗ୍ର ହିଂସାଭାବ ଏମାନେ ପୋଷଣ କରିଥା'ନ୍ତି, ଏ ବିପର୍ଯ୍ୟୟ ତାହାରି ହେତୁ। ଅବଶ୍ୟ ରବୀନ୍ଦ୍ରନାଥ ଠାକୁର ମହାତ୍ମାଗାନ୍ଧିଙ୍କର ଏ ମତକୁ ସମାଲୋଚନା କରିଥିଲେ।

ସ୍ୱାଭାବିକ ଘଟଣା ମଣିଷ ଜୀବନଯାପନ ପଦ୍ଧତି ସ୍ୱଚ୍ଛନ୍ଦ କରେ। କିନ୍ତୁ ଅଘଟଣ ଓ ଦୁର୍ଘଟଣା ମଣିଷକୁ ଦୃଢ଼ କରେ, ଶକ୍ତିଶାଳୀ କରେ, ପରିପକ୍ୱ କରେ। ଗୋଟାଏ ଦୁର୍ଘଟଣା ପରେ ମଣିଷ ନେଉଥିବା ପ୍ରତିଷେଧକ ବ୍ୟବସ୍ଥା ବା ସତର୍କମୂଳକ ପଦକ୍ଷେପ ଅନେକ ବଡ ଦୁର୍ଘଟଣାକୁ ନିୟନ୍ତ୍ରଣକୁ ଆଣିଥାଏ। ମଣିଷକୁ ଆହୁରି ସମର୍ଥ ଓ ବଳଶାଳୀ କରେ।

ନିକଟରେ ଘଟିଯାଇଥିବା ବସ୍ ଦୁର୍ଘଟଣାର ବିଭୀଷିକା ଓ ସମ୍ ହସ୍ପିଟାଲର ଅଗ୍ନିକାଣ୍ଡର ଭୟାବହତାରେ ଆମେ କ୍ଷତିଗ୍ରସ୍ତ ତ ନିଶ୍ଚୟ ହୋଇଛୁ ତଦନୁସାରେ ଆମେ ଶିକ୍ଷା ବି ପାଇଛୁ ଅନେକ। ବସ୍ ଡ୍ରାଇଭରମାନଙ୍କ ବେପରୁଆ ଗାଡି ଚଳନାକୁ ନିୟନ୍ତ୍ରଣ କରାଗଲା, ବଡ଼ ଡାକ୍ତରଖାନା ପାଖରୁ ଆରମ୍ଭ କରି ଗୋଷ୍ଠୀ ସ୍ୱାସ୍ଥ୍ୟକେନ୍ଦ୍ର ପର୍ଯ୍ୟନ୍ତ ପ୍ରତ୍ୟେକ ଠାରେ ଅଗ୍ନିନିର୍ବାପକ ଯନ୍ତ୍ର ବ୍ୟବହାର କଡ଼ାକଡ଼ି କରାଗଲା। ଅଗ୍ନିଶମ ନିରାପତ୍ତା ବାହିନୀକୁ ମଧ ସଜାଗ କରିଦିଆଗଲା। ଏସବୁକୁ ଉଲ୍ଲଙ୍ଘନ କାରୀଙ୍କ ପାଇଁ ଦଣ୍ଡବିଧି ବ୍ୟବସ୍ଥା ମଧ କରାଗଲା। ଆହୁରି ଅନେକ ସଂସ୍କାରମୂଳକ ପଦକ୍ଷେପ ନିଆଗଲା।

ଏହି ଦୁର୍ଘଟଣା ଲବ୍ଧ ଅଭିଜ୍ଞତାକୁ ଉପଯୋଗ କରି ଭବିଷ୍ୟତରେ ଆମେ ଏହାଠାରୁ ବଳି ଆହୁରି ବଡ ଦୁର୍ଘଟଣାକୁ ସାମ୍ନା କରିପାରିବା।

ଦୁର୍ଘଟଣାରେ ପୀଡିତ ହୋଇଥିବା ଦିବଂଗତ ଆତ୍ମାମାନଙ୍କ ପ୍ରତି ଆମର ବିନମ୍ର ଶ୍ରଦ୍ଧାଞ୍ଜଳୀ ଓ ଆହତମାନଙ୍କ ପ୍ରତି ଆମର ଗଭୀର ସମବେଦନା।



# କିଏ ଫୁଲ୍ କିଏ ସୁରଭି ?

ଆନ୍ତର୍ଜାତିକ ମହିଳା ଦିବସ ପରି ଆନ୍ତର୍ଜାତିକ ପୁରୁଷ ଦିବସଟିଏ ପାଳିତ ହୁଏ ନାହିଁ। ହେବାର ଆବଶ୍ୟକତା ମଧ୍ୟ ନାହିଁ। ପ୍ରକୃତି ପୁରୁଷକୁ ଏପରି ସମର୍ଥ କରି ଗଢ଼ିଛି ଯେ ବିନା କାହାର ସହାୟତାରେ ସେ ବଞ୍ଚିବାର ସର୍ବନିମ୍ନ ଆବଶ୍ୟକତା (ଖାଦ୍ୟ, ବସ୍ତ୍ର ଓ ବାସଗୃହ) ପରିପୂରଣ କରିବା ସଂଗେ ସଂଗେ ନିଜର ନିରାପତ୍ତା ବ୍ୟବସ୍ଥା କରିପାରେ। କିନ୍ତୁ ସମାନ ପରିବେଶ ଓ ପରିସ୍ଥିତିରେ ନାରୀଟିଏ ପାରେ ନାହିଁ। ହୁଏତ ଖାଦ୍ୟବସ୍ତ୍ର ଓ ବାସଗୃହର ବ୍ୟବସ୍ଥା ସେ କରିପାରେ, କିନ୍ତୁ ନିରାପତ୍ତା ନୁହେଁ। ପ୍ରତି ମୁହୂର୍ତ୍ତରେ ତା'ର ନିରାପତ୍ତାକୁ ବିପନ୍ନ କରିବା ପାଇଁ ଅପଶକ୍ତିମାନେ ସଜାଗ ହୋଇ ରହିଥାନ୍ତି। ସୀତା ଦ୍ରୌପଦୀଙ୍କଠାରୁ ଆରମ୍ଭ କରି ଆଧୁନିକ ଯୁଗର ଉଚ୍ଚ ଶିକ୍ଷିତା ଓ ଆଭିଜାତ୍ୟ ପରିବାରର ମହିଳା ପର୍ଯ୍ୟନ୍ତ, ଏମାନଙ୍କ ନିକଟରେ ଅସହାୟ। ମୁଷ୍ଟିମେୟ ମହିଳା ଅଛନ୍ତି ଯେଉଁମାନେ ନିଜର ନିରପତ୍ତା ରକ୍ଷା କରିବା ସହ ଅନ୍ୟମାନଙ୍କୁ ମଧ୍ୟ ସୁରକ୍ଷା ଦେବାର ସାମର୍ଥ୍ୟ ରଖିଥାନ୍ତି। ଗଭୀର ଅନୁଧ୍ୟାନ କଲେ ଜଣାଯାଏ ଏହି ମୁଷ୍ଟିମେୟ ମହିଳାମାନଙ୍କ ମଧ୍ୟରେ ନାରୀ ସୁଲଭ ଗୁଣ ଅପେକ୍ଷା ପୁରୁଷ ସୁଲଭ ଗୁଣର ପ୍ରାବଲ୍ୟ ରହିଥାଏ। ଅପରପକ୍ଷରେ ଯେଉଁ ପୁରୁଷ ଆତ୍ମରକ୍ଷଣ କରିପାରେ ନାହିଁ, ସେମାନଙ୍କଠାରେ ପୁରୁଷ ଅପେକ୍ଷା ନାରୀସୁଲଭ ଗୁଣର ଆଧିକ୍ୟ ଅନୁଭୂତ ହୁଏ।

ଏ ପ୍ରସଙ୍ଗରେ ମହାତ୍ମାଗାନ୍ଧି କହିଥିଲେ - ବ୍ୟକ୍ତି ନାରୀ ଓ ପୁରୁଷ ଉଭୟ ଭାବର ସତ୍ତା ବହନ କରିଥାଏ। ନାରୀଟିର ଅନ୍ତଃକରଣରେ ପୁରୁଷ ଭାବଟି ରହିଥାଏ, ସେହିପରି ପୁରୁଷଟିର ଅନ୍ତଃକରଣରେ ନାରୀ ଭାବ। ତାଙ୍କର ନିଜ ଭିତରର ନାରୀଭାବଟି ତାଙ୍କୁ ଅହିଂସା ଆନ୍ଦୋଳନରେ ସଫଳତା ଆଣିଦେଇଥିଲା ବୋଲି ଗାନ୍ଧିଜୀ ବିଶ୍ୱାସ କରୁଥିଲେ। ବୀରତ୍ୱ, ସାହସିକତା, ନିର୍ଭୀକତା, ଅମିତ ଶାରୀରିକ ଶକ୍ତି, ନିଷ୍ପତ୍ତି ନେବାର ଦକ୍ଷତା, ପରିଚାଳନାଗତ କ୍ଷମତା ଆଦି ଗୁଣାବଳୀକୁ ଆମେ ପୁରୁଷ ସୁଲଭ ବୋଲି କହୁଥିବାବେଳେ ଦୟା, କ୍ଷମା, ସେବା, ତ୍ୟାଗ, କୋମଳଭାବ, ସ୍ନେହ, ସହିଷ୍ଣୁତା, ପ୍ରେମ ଓ ଅନୁରକ୍ତି ଆଦିକୁ ନାରୀସୁଲଭ ଗୁଣାବଳୀ ବୋଲି କହୁ। ବ୍ୟକ୍ତିପାଇଁ, ସମାଜ ପାଇଁ ଓ ପରିବାର ପାଇଁ ଏଦୁଇ ପ୍ରକାର ଗୁଣାବଳୀର ସମ୍ୟକ୍ ଉପଯୋଗିତା ରହିଛି।

ନଚେତ୍ ହୁଏତ ସମାଜ ରୁକ୍ଷ, କର୍କଶ, ନିଷ୍ଠୁର ଓ ଯାନ୍ତ୍ରିକ ହୋଇଯିବ ଅଥବା ଏତେ ନରମ ଓ କୋମଳ ହୋଇପଡିବ ଯେ ପ୍ରତି ମୁହୂର୍ତ୍ତରେ ତା'ର ନିରାପତ୍ତା ବିପନ୍ନ ହେଉଥିବ।

ଏସବୁ ଅନୁଧ୍ୟାନ କଲେ ହୃଦ୍‌ବୋଧ ହୁଏ ଯେ ପୁରୁଷମାନଙ୍କ ପାଇଁ ଆନ୍ତର୍ଜାତିକ ମହିଳା ଦିବସ ପରି ପୁରୁଷ ଦିବସଟିଏ ଆବଶ୍ୟକତା ନାହିଁ। କାଁ ଭାଁ ଗୋଟିଏ ଅଧେ ବ୍ୟତିକ୍ରମ ଛାଡ଼ିଦେଲେ ପୃଥିବୀର ପ୍ରତ୍ୟେକ ରାଷ୍ଟ୍ର ପୁରୁଷଦମିତ। କାରଣ ପୁରୁଷ ସମର୍ଥ ଓ ଅମିତ ଶକ୍ତିର ଅଧିକାରୀ। ସେଥିପାଇଁ ସୁରକ୍ଷା ନିମନ୍ତେ ନାରୀପୁରୁଷ ଉପରେ ନିର୍ଭର କରେ। କିନ୍ତୁ ପୁରୁଷଟିଏ ନାରୀ ଉପରେ ନିର୍ଭର କରେ ସେବା, ଯତ୍ନ, ପ୍ରେମ, ମମତା ଓ ପ୍ରୀତି ପାଇଁ।

ବଙ୍ଗୀୟମାନଙ୍କର କାନ୍ତକୋମଳ ପଦାବଳୀଯୁକ୍ତ ବାଉଲ ଭଜନ ଗାନ ଓ ପଞ୍ଜାବୀମାନଙ୍କର ଭାଙ୍ଗଡ଼ା ଗୀତ ନାଚର ପ୍ରଭାବ ସଂପର୍କରେ ବିବେକାନନ୍ଦ କଥାଟିଏ କହିଥିଲେ। ବଙ୍ଗୀୟମାନେ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ଏତେ ନରମ ହୋଇଯାଇଛନ୍ତି ଯେ ସେମାନେ ବାଉଲ ଭଜନ ଛାଡ଼ି ଭାଙ୍ଗଡ଼ା ଗୀତ ନାଚ କରିବା ଉଚିତ୍। ଅପରପକ୍ଷେ ପଞ୍ଜାବୀମାନଙ୍କୁ ଭାଙ୍ଗଡ଼ା ନାଚଗୀତ ଏତେ ଉଦ୍ଦାମ କରି ଦେଇଛି ଯେ ସେମାନଙ୍କୁ ନିୟନ୍ତ୍ରିତ କରିବା ପାଇଁ ବାଉଲ ଭଜନର ଆବଶ୍ୟକତା ରହିଛି। ସେମାନେ ଭାଙ୍ଗଡ଼ା ଛାଡ଼ି ବାଉଲ ଭଜନ ଗାଇବା ଉଚିତ୍। ଆମ ସାମାଜିକ ଜୀବନ ସେମିତି ବାଉଲ ଓ ଭାଙ୍ଗଡ଼ା ପରି। ନାରୀମାନେ ବେଶୀଦିନ ବାଉଲରେ ଆବଦ୍ଧ ରହିଲେ ଓ ପୁରୁଷ ଭାଙ୍ଗଡ଼ା କରି ଚାଲିଲେ ପୁରୁଷ ଏବଂ ନାରୀଙ୍କ ଭିତରେ ବ୍ୟବଧାନ ଲମ୍ବିଯାଉଥିବ। ସେଇ ପରିମାଣରେ ଆମ ସାମାଜିକ ଜୀବନ ଦୁର୍ବିସହ ହେଉଥିବ।

କେବଳ ଆମ ରାଜ୍ୟପାଇଁ ନୁହେଁ, ସମଗ୍ର ଦେଶରେ ନାରୀମାନଙ୍କର ସମ୍ମାନ ଓ ସୁରକ୍ଷା ପାଇଁ ମହିଳା କମିଶନଟିଏ କାର୍ଯ୍ୟରତ। ବିଶେଷତଃ ପୁରୁଷ କର୍ତ୍ତୃକ ଅନ୍ୟାୟ ଅତ୍ୟାଚାରରୁ ମହିଳାଙ୍କୁ ନ୍ୟାୟ ପ୍ରଦାନ କରିବାର ପ୍ରତିଶ୍ରୁତି ମହିଳା କମିଶନ ଦେଇଥାଏ। କୋର୍ଟ ସେମାନଙ୍କୁ ନ୍ୟାୟ ଦିଏ, କିନ୍ତୁ ମହିଳା କମିଶନ ସେମାନଙ୍କ ପାଇଁ ସଂଘର୍ଷ କରେ। ନାରୀ ନିର୍ଯ୍ୟାତନାକୁ ରୋକିବାପାଇଁ ଯେପରି ମହିଳା କମିଶନଟିଏ ଅଛି ପୁରୁଷ ନିର୍ଯାତନା ରୋକିବା ପାଇଁ ପୁରୁଷ କମିଶନଟିଏର ଆବଶ୍ୟକତା ରହିଛି ବୋଲି କିଛି ପୁରୁଷ ଅନୁଭବ କଲେଣି। ତେବେ ପୁରୁଷ କମିଶନଟିଏ କାହାପାଇଁ ଓ କେଉଁ ଉଦ୍ଦେଶ୍ୟରେ? ମହିଳାମାନଙ୍କ ଅତ୍ୟାଚାରରୁ ପୁରୁଷମାନଙ୍କୁ ସୁରକ୍ଷା ଦେବାପାଇଁ?

ଆମ ପିତୃକୈନ୍ଦ୍ରିକ ସମାଜରେ ମହିଳା ପିତୃ ଗୃହ ପରିତ୍ୟାଗ କରି ପତିଗୃହରେ ରହେ। ସିଧା କଥାରେ ଝିଅ ଜନମ ପରଘରକୁ। ଝିଅଟିକୁ ପର ଘରକୁ ଆପଣାର

ବୋଲି ମାନିବାକୁ ହୁଏ। ଶାଶୁ, ଶ୍ୱଶୁର, ନଣନ୍ଦ, ଦିଅର, ସ୍ୱାମୀ, ପୁତୁରା, ଝିଆରୀ ସମସ୍ତଙ୍କ ମନନେଇ ଚଳିବାକୁ ହୁଏ। ପିତୃଗୃହରୁ ସମସ୍ତଙ୍କ ପାଇଁ ଉପହାର ଆଣିବାକୁ ପଡିଥାଏ। ଗୃହର ଯାବତୀୟ କର୍ମ ତାକୁ ତୁଲାଇବାକୁ ପଡ଼େ। ଏଥିରେ ବ୍ୟତିକ୍ରମ ହେଲେ ଆରମ୍ଭରୁ ଶାଶୁଘର ଲୋକେ ବିଗିଡ଼ିଯିବାର ସମ୍ଭାବନା ରହିଛି।

କିନ୍ତୁ ପୁରୁଷଟିଏ ବିବାହପରେ ଶଶୁରଘରେ ସବୁଠାରୁ ମର୍ଯ୍ୟାଦାବନ୍ତ ଅତିଥି। ଶ୍ୱଶୁରଘର ଲୋକଙ୍କ ପକ୍ଷରୁ ଜ୍ୱାଇଁ ଚର୍ଚ୍ଚାରେ, ଏତେ ଟିକେ ବି ଅବହେଳା ହୋଇନଥାଏ। ବରଂ ସୁବିଧା ପାଇଲେ ଜ୍ୱାଇଁଟି ଶଶୁରଘର ଉପରେ ଅଖଣ୍ଡ କ୍ଷମତା ବିସ୍ତାର କରେ। ସମୟ ଅସମୟରେ ବିଭିନ୍ନ ଦାବି କରେ। ଝିଅଟି ଶାଶୁଘରେ କେମିତି ସୁଖରେ ରହିବ, ସେଥିପାଇଁ ବାପାମାଆ ଜ୍ୱାଇଁର ଅତ୍ୟାଚାରକୁ ବାହାରେ ପ୍ରକାଶ କରନ୍ତି ନାହିଁ। ନିର୍ଯ୍ୟାତନା ସୀମା ଅତିକ୍ରମ କଲେ ବି ଝିଅଘର କୋର୍ଟକଚେରୀ ଯାଆନ୍ତି ନାହିଁ। ଥରେ କୋର୍ଟ କଚେରୀ ଗଲେ ଝିଅଟିର ସଂସାର ଉଜୁଡ଼ିଯାଏ। ଏସବୁ ସମସ୍ୟା ପୁରୁଷର ନଥାଏ। ସେ ଶ୍ୱଶୁରାଳୟରେ ନିର୍ଯାତନା ଦେଇଥାଏ, ନିର୍ଯାତନା ପାଏନାହିଁ।

ଶାଶୁଘରେ ବୋହୂଟିର ନିରାପତ୍ତା ବିପନ୍ନ ହୋଇଥାଏ। ଅତ୍ୟଧିକ ମାନସିକ ଚାପ ହେତୁ ନିରୁପାୟ ବୋହୂଟି କେଉଁଠି ଆତ୍ମହତ୍ୟା କରେ ତ କେଉଁଠି ତାକୁ ହତ୍ୟା କରି ଶାଶୁଘର ଲୋକ ଆତ୍ମହତ୍ୟା ଅଥବା ଦୁର୍ଘଟଣାର ରୂପ ଦେଇଥାନ୍ତି। ମଦ୍ୟପ ସ୍ୱାମୀ ହାତରେ ବହୁ ମହିଳାଙ୍କର ପ୍ରାଣଯିବା ସମ୍ବାଦ ବହୁ ସମୟରେ ଗଣମାଧ୍ୟମରେ ପ୍ରକାଶ ପାଏ। କିନ୍ତୁ ନାରୀମାନଙ୍କ ଦ୍ୱାରା ନିର୍ଯ୍ୟାତିତା ହୋଇ ଆତ୍ମହତ୍ୟା କରିଥିବା ସମ୍ବାଦ ଦୃଷ୍ଟିଗୋଚର ହୁଏ ନାହିଁ। ସ୍ତ୍ରୀଟିଏ କିମ୍ବା ତାଙ୍କ ଘରଲୋକେ ଜ୍ୱାଇଁକୁ ହତ୍ୟା କରିବା ସମ୍ବାଦ ବି କ୍ୱଚିତ୍ ମିଳେ। ଯେଉଁ ଗୋଟିଏ ଅଧେ ଖବର ମିଳେ ତାହା ଅନୁସନ୍ଧାନ କଲେ ଜଣାଯାଏ ଯେ, ପୁରୁଷଟି ମଦ୍ୟପ ପରଦାରାସକ୍ତ ଅଥବା ଅତ୍ୟାଚାରୀ ହୋଇଥାଏ। ତା'ଉପଦ୍ରବରେ ଅତିଷ୍ଠ ହୋଇ ନାରୀଟି ଏହିଭଳି ନିଷ୍ପତ୍ତି ନେଇଥାଏ।

ନାରୀ ପୁରୁଷଦ୍ୱାରା ନିର୍ଯ୍ୟାତିତ ହୁଏ ତା'ର ଅସହାୟତା ହେତୁ। ଶାରୀରିକ ଗଠନ ଦୃଷ୍ଟିରୁ କେତେକ ଜଟିଳ ପ୍ରକ୍ରିୟା ହେତୁ ଅନ୍ୟର ସହାୟତା ତା'ପାଇଁ ଅପରିହାର୍ଯ୍ୟ ହୋଇପଡ଼େ। ତା'ଛଡ଼ା ଆମର ସାମାଜିକ ବିଧିବ୍ୟବସ୍ଥା ନାରୀପାଇଁ ଯେଉଁ ଆଚରଣ ବିଧିଲାଗୁ କରିଛି ସେଥିରେ ଶକ୍ତିମୟୀଟିଏ ବି ଶକ୍ତିହୀନ ହୋଇ ବଞ୍ଚିବାକୁ ବାଧ ହୁଏ। ପତିପରମେଶ୍ୱର, ସାତଜନ୍ମ ତାଙ୍କ ପାଇଁ ଅପେକ୍ଷା କରିବାକୁ ହୋଇଥାଏ। ଅଥଚ ପୁରୁଷଟିଏ ଗୋଟିଏ ଜନ୍ମରେ ୭ଜଣ ନାରୀଙ୍କୁ ସମ୍ଭୋଗ କଲେ ମଧ୍ୟ ପାପବୋଧ ତାକୁ ଦଂଶନ କରେ ନାହିଁ।

ବଙ୍ଗଳାରେ ପ୍ରବଚନଟିଏ ଅଛି, 'ଭାଗ୍ୟବାନର ସ୍ତ୍ରୀ ମରେ, ଅଭାଗାର ଗୋରୁ ମରେ'। ସମାଜରେ ନାରୀମାନଙ୍କ ପ୍ରତି ପ୍ରଚଳିତ ବିଧି ବ୍ୟବସ୍ଥାକୁ ସମାଲୋଚନା କରି ଏହି ରୂଢ଼ିଟିର ସୃଷ୍ଟି। ଏହାର ଅର୍ଥ ସ୍ତ୍ରୀଟିଏ ମରିଗଲେ ଲୋକଟିଏ ନୂଆ ପତ୍ନୀ ଗ୍ରହଣ କରେ। ପୁଣି ଯାନିଯୌତୁକ ପାଏ, କିନ୍ତୁ ଗୋରୁଟିଏ ମରିଗଲେ ଅଣ୍ଟାରୁ ପଇସା ଖର୍ଚ୍ଚ କରି ନୂଆ ଗୋରୁଟିଏ କିଣିବାକୁ ପଡେ।

ଆମ ସମାଜରେ ସ୍ୱାମୀ ମୃତ୍ୟୁପରେ ସ୍ତ୍ରୀ ବିଧବା ହୁଏ। ଶାରୀରିକ ଓ ମାନସିକ ସ୍ତରରେ ସେ ବୈରାଗ୍ୟ ଜୀବନଯାପନ କରେ। ସମାଜ ବିବାହ ପ୍ରସଙ୍ଗରେ ସଂପୂର୍ଣ୍ଣ ସ୍ୱାଧୀନତା ପୁରୁଷକୁ ପ୍ରଦାନ କରିଛି। ଏକାଧିକ ପତ୍ନୀ ଗ୍ରହଣ ପାଇଁ ଆଇନ ପ୍ରତିବନ୍ଧକ ସୃଷ୍ଟି କଲେ ସୁଦ୍ଧା ଅଧିକାଂଶ ପୁରୁଷ ଆଇନକୁ ଚକମା ଦେଇ ରକ୍ଷିତା ରୂପେ ବହୁ ନାରୀ ସମ୍ଭୋଗ କରିଥାନ୍ତି। ସାମାଜିକ ନିନ୍ଦା ଅପବାଦ ସେମାନଙ୍କୁ ବେଶୀ ବିଚଳିତ କରେନାହିଁ। କିନ୍ତୁ ନାରୀମାନଙ୍କ କ୍ଷେତ୍ରରେ ଏହାର ବ୍ୟତିକ୍ରମ ପରିଲକ୍ଷିତ ହୁଏ। ପାପପୁଣ୍ୟର ଦ୍ୱାହିଦେଇ ସତୀତ୍ୱ, ପବିତ୍ରତା, ଶୁଦ୍ଧତା ପ୍ରସଙ୍ଗରେ ଆମ ନୀତି ସଂହିତା, ପୁରାଣ ଇତିହାସରେ ଏପରି ସ୍ପର୍ଶକାତର ଦୃଷ୍ଟାନ୍ତ ରଖାଯାଇଛି ଯେ ସେମାନେ ମାନସିକସ୍ତରରେ ସୁଦ୍ଧା ଅନ୍ୟ ପୁରୁଷଙ୍କୁ କାମନା କରିଦେଲେ ପ୍ରାୟଶ୍ଚିତ କରିବାକୁ ପଡ଼େ। ନାରୀର ସତୀତ୍ୱ ହେଉଛି ତା'ର ସାମର୍ଥ୍ୟ, ଶକ୍ତି। ଏହାବଳରେ ସେ ଯମରାଜାକୁ ମଧ ପରାସ୍ତ କରିପାରେ। ଗୋଟିଏ ରାତିକୁ ସାତ ରାତିରେ ପରିଣତ କରିପାରେ। ବହୁପୁରୁଷ ଭୋଗ ଚରମତମ ପାପ। ଏହାଦ୍ୱାରା ନାରୀ ନର୍କଗାମୀ ହୁଏ। ତା' ଅଜାଣତରେ ସୁଦ୍ଧା ତାକୁ ପ୍ରତାରିତ କରି କେହି ତା' ସତୀତ୍ୱ ଲୁଣ୍ଠନ କଲେ ତା' ସ୍ୱାମୀ ସନ୍ତାନଙ୍କର ଅମଙ୍ଗଳ ହୁଏ। ଏହିଭଳି ଅନେକ ଆଖ୍ୟାନ ଉପାଖ୍ୟାନ ଭିତରେ ତାକୁ ଭୟଭୀତ କରି ରଖାଯାଇଥାଏ। ଏହି ଭୟରେ ନାରୀ ଅଜସ୍ର ମାନସିକ ଓ ଶାରୀରିକ ଯନ୍ତ୍ରଣା ସତ୍ତ୍ୱେ ନିରୁପାୟ ହୋଇ ପତିଗୃହରେ ପଡି ରହେ। ଏପରିକି ବିଧବାଟିଏ ସୁଦ୍ଧା ପତିଗୃହକୁ ସ୍ୱର୍ଗବୋଲି ଗ୍ରହଣ କରିନେଇଥାଏ ଓ ଆସନ୍ତା ଜନ୍ମମାନଙ୍କରେ ସେହି ସ୍ୱାମୀଙ୍କୁ ପାଇବା ପାଇଁ ନୀତି ନିଷ୍ଠାରେ ରତ ରହେ। ଶିକ୍ଷା ଦୀକ୍ଷାର ଅଭାବ ଓ ସ୍ୱାବଲମ୍ବନଶୀଳ ହୋଇ ନଥିବାରୁ ଏପ୍ରକାର ସାମାଜିକ ଚାପ ଆଗରେ ନାରୀ ନତମସ୍ତକ ହୋଇଥାଏ। ପୁରୁଷ ପାଖରେ ଏପ୍ରକାର ବାଧାବନ୍ଧନ ନଥାଏ। ମୁକ୍ତ ଜୀବନ ବଞ୍ଚିବା ପାଇଁ ସମାଜ ତାକୁ ଯଥେଷ୍ଟ ଅବସର ଦେଇଛି। କୌଣସି ପ୍ରଥା ପରମ୍ପରା ତା ଜୀବନକୁ କବଳିତ କରିନାହିଁ। ପୁରୁଷ କମିଶନର ଆବଶ୍ୟକତା ରହିଲା କେଉଁଠି ?

ପୁରୁଷଟିକୁ ଆମେ ତେଜଃ ଓଜଃ ଶକ୍ତି ସାମର୍ଥ୍ୟ ଓ ଧୈର୍ଯ୍ୟ ସାହସର ପ୍ରତୀକ

ବୋଲି ସ୍ୱୀକାର କରୁ। ପ୍ରଶାସନିକ ପ୍ରବୀଣତା, ପରିଚାଳନାଗତ ପାରଙ୍ଗମତା, ନିଷ୍ପତ୍ତି ନେବାର ନିପୁଣତା, ଦାୟିତ୍ୱଶୀଳତା ଆଦି କେତେକ ସ୍ୱତନ୍ତ୍ର ଦକ୍ଷତା ପୁରୁଷଠାରେ ରହିଛି ବୋଲି ନୃତତ୍ତ୍ୱବିତ୍‌ମାନେ ବିଶ୍ୱାସ କରନ୍ତି। ଏସବୁ ଗୁଣାବଳୀର ଅଧିକାରୀ ହୋଇ ସୁଦ୍ଧା ସେ ଯଦି ଗୋଟିଏ ନାରୀସହ ବୁଝାମଣାର ଅଭାବ ରଖିବ, ପତ୍ନୀକୁ ଭୟ କରିବ, ପତ୍ନୀ ପାଖରେ ନିଜକୁ ଅସହାୟ ଭାବରେ ସମର୍ପଣ କରିବ, ତାହା ପୁରୁଷ ନିର୍ଯାତନା ନୁହେଁ, ପୁରୁଷର ଦୁର୍ବଳତା। ପ୍ରକୃତିଦତ୍ତ ସାମର୍ଥ୍ୟ, ସାମାଜିକ ପ୍ରଥା, ପରମ୍ପରାସିଦ୍ଧ ସ୍ୱାଧୀନତା ସତ୍ତ୍ୱେ ପୁରୁଷଟି ଯଦି ନାରୀଦ୍ୱାରା ନିର୍ଯାତିତ ହେଉଛି ବୋଲି ଅଭିଯୋଗ କରେ, ନିଜକୁ ଅସୁରକ୍ଷିତ ଅନୁଭବ କରେ, ତେବେ ତା'ର କୌଣସି ଗଠନଗତ ତ୍ରୁଟି ରହିଛି ବୋଲି କୁହାଯାଇପାରେ। ତା'ପାଇଁ ପୁରୁଷ କମିଶନ ନୁହେଁ, ବରଂ କୌଣସି ସ୍ୱତନ୍ତ୍ର କମିଶନର ଆବଶ୍ୟକତା ରହିଛି।

ନାରୀ ଓ ପୁରୁଷ ପରସ୍ପର ଶତ୍ରୁ ନୁହଁନ୍ତି। ଦୁହେଁ ଦୁହିଁଙ୍କର ପରିପୂରକ। ଜଣେ ଫୁଲ ହେଲେ ଅନ୍ୟ ଜଣକ ସୁରଭି। ଜଣେ ଚନ୍ଦ୍ର ହେଲେ ଅନ୍ୟଜଣକ ତା'ର ଚନ୍ଦ୍ରିକା। କିଏ ଫୁଲ, କିଏ ସୁରଭି, କିଏ ଚନ୍ଦ୍ର, କିଏ ଚନ୍ଦ୍ରିକା ଖୋଜି ବସିଲେ ଦ୍ୱନ୍ଦ୍ୱ ଉପୁଜିବ। ଏ ଦ୍ୱନ୍ଦ୍ୱର ସମାଧାନ ପାଇଁ କମଶିନ ଆବଶ୍ୟକ ହେବ। କିନ୍ତୁ ପାରସ୍ପରିକ ଉତ୍ତମ ବୁଝାମଣା ରହିଲେ ପୁରୁଷ କମିଶନ କ'ଣ, ମହିଳା କମିଶନ ମଧ୍ୟ ଆବଶ୍ୟକତା ହେବ ନାହିଁ।



# ଭାଷା ଗୌରବ

ସଂସାରର ସବୁ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଅନାୟାସରେ ପାଦ ତଳକୁ ଆଣି ପାରୁଥିବା ରାବଣର ଦୁଇଟି ଇଚ୍ଛା ଅସମ୍ପୂର୍ଣ୍ଣ ହୋଇ ରହିଯାଇଥିଲା। ଗୋଟିଏ -କ୍ଷାର ସମୁଦ୍ରକୁ କ୍ଷୀର ସମୁଦ୍ରରରେ ପରିଣତ କରିବା, ଅନ୍ୟଟି ସ୍ୱର୍ଗକୁ ଶିଡ଼ି ବାନ୍ଧିବା। ଏସବୁ ତା'ର ଜନହିତକର କାର୍ଯ୍ୟାବଳୀର ଅନ୍ତର୍ଭୁକ୍ତ ଥିଲା। କିନ୍ତୁ ଅବହେଳା ପଣରୁ ହେଉ କି ଦେବତାଙ୍କ ଚକ୍ରାନ୍ତରୁ ହେଉ, ତାହା ସଫଳ ହୋଇପାରି ନଥିଲା। ସ୍ୱର୍ଗ ଦେବତା ମାନଙ୍କର ବାସସ୍ଥଳୀ, ଚିର ବସନ୍ତର ଦେଶ। ସେଠାରେ କୁଆଡ଼େ ଦୁଃଖ ନାହିଁ, ଯନ୍ତ୍ରଣା ନାହିଁ, ମୃତ୍ୟୁ ନାହିଁ। ସେଇଥିପାଇଁ ମର୍ତ୍ତ୍ୟର ଲୋକମାନଙ୍କର ସ୍ୱର୍ଗ ପ୍ରତି ଥାଏ ମୋହ। କିନ୍ତୁ ଦେବତାମାନେ ମର୍ତ୍ତ୍ୟର ଲୋକମାନଙ୍କୁ ଆଦୌ ସହ୍ୟ କରି ପାରନ୍ତି ନାହିଁ। ଜଳବାୟୁ ପରିବର୍ତ୍ତନ ପାଇଁ ଆବଶ୍ୟକ ପଡ଼ିଲେ ସେମାନେ ମର୍ତ୍ତ୍ୟଦେଶକୁ ଚରାଭୂଇଁ କରିଥାନ୍ତି। ଦଣ୍ଡ ଭୋଗ ପାଇଁ ମଧ ଦେବଲୋକର କେହି କେହି ମର୍ତ୍ତ୍ୟରେ ଜନ୍ମଗ୍ରହଣ କରିଥାନ୍ତି। ମଣିଷମାନଙ୍କର ସଫଳତା ପ୍ରତି ତ ଇନ୍ଦ୍ର ସଦାସର୍ବଦା ସତର୍କ ଦୃଷ୍ଟି ରଖିଥାନ୍ତି। କାଳେ କେତେବେଳେ ସେମାନେ ସ୍ୱର୍ଗ ରାଜ୍ୟର କୌଣସି ବସ୍ତୁକୁ ପୃଥିବୀକୁ ଧରି ଆସିବେ। କିନ୍ତୁ ମର୍ତ୍ତ୍ୟ ପ୍ରଦେଶର ସବୁ ଭଲ ଦ୍ରବ୍ୟ ଉପରେ ଦେବତାମାନେ ଅଗ୍ରାଧିକାର ସାବ୍ୟସ୍ତ କରନ୍ତି।

ମର୍ତ୍ତ୍ୟବାସୀ ସେମାନଙ୍କୁ ଡରି ଥରହର ହୋଇ ପୂଜା କରନ୍ତି। ସ୍ୱତଃପ୍ରବୃତ୍ତ ହୋଇ ମଣିଷ ଭଲ ଜିନିଷ ହେଉ କି ଉତ୍ପାଦିତ ଶସ୍ୟ, ପ୍ରଥମେ ଦେବତାମାନଙ୍କୁ ଉତ୍ସର୍ଗ କରିଥାନ୍ତି, ପରେ ନିଜେ ଉପଭୋଗ କରିଥାନ୍ତି। କିନ୍ତୁ ଦେବତାମାନେ ତା'ର ମୂଲ୍ୟ ଦିଅନ୍ତି ନାହିଁ। ଦେବତାମାନଙ୍କ ଦାଦାଗିରିରେ ମନୁଷ୍ୟମାନେ ଶାରୀରିକ ଓ ମାନସିକ ଚାପ ପାଇଥାନ୍ତି। କେତେବେଳେ ବିଭିନ୍ନ ପ୍ରକାର ରୋଗବ୍ୟାଧି ହୋଇ ମଣିଷ ଉପରେ ସେମାନେ ଆଧିପତ୍ୟ ବିସ୍ତାର କରନ୍ତି ତ ଆଉ କେତେବେଳେ ପ୍ରାକୃତିକ ବିପର୍ଯ୍ୟୟ ହୋଇ। ମନୁଷ୍ୟଙ୍କ ପାଇଁ ସ୍ୱର୍ଗଦ୍ୱାର ସର୍ବଦା ଅବରୁଦ୍ଧ ଥାଏ। ଜୀବନ୍ତରେ ତ ଆଦୌ ନୁହେଁ, ମୃତ୍ୟୁ ପରେ ସୁଦ୍ଧା ସ୍ୱର୍ଗକୁ ଯିବାପାଇଁ ଜୀବନକାଳ ଭିତରେ ମଣିଷ କରିଥିବା କାର୍ଯ୍ୟକ୍ରମକୁ ତର୍ଜମା କରାଯାଏ ଓ ତାକୁ ଆଧାର କରି ସ୍ୱର୍ଗକୁ ଯିବାର ଯୋଗ୍ୟତା ତାଲିକା ପ୍ରସ୍ତୁତି କରାଯାଏ। ଯେଉଁ ଭାଗ୍ୟମାନ୍ କେତେଜଣ ଯୋଗ୍ୟ ବିବେଚିତ

ହୁଅନ୍ତି, ସେମାନଙ୍କୁ ସ୍ୱର୍ଗ ପାଇଁ ଭିସା, ପାସ୍‌ପୋର୍ଟ ବା ଅନୁମତି ପତ୍ର ଦିଆଯାଏ। ଅନ୍ୟମାନଙ୍କୁ ନର୍କକୁ ଠେଲି ଦିଆଯାଇଥାଏ। ତଥାପି ପ୍ରତ୍ୟେକ ମଣିଷର ସର୍ବଶେଷ ଓ ସର୍ବଶ୍ରେଷ୍ଠ ଇଚ୍ଛା ସ୍ୱର୍ଗ ପ୍ରାପ୍ତି-ଜୀବଦ୍ଦଶାରେ ହେଉ କି ମୃତ୍ୟୁ ପରେ। ମୃତ୍ୟୁ ପରେ ଏଇଥିପାଇଁ ଯେ ଆବହମାନ କାଳରୁ ଏ ପର୍ଯ୍ୟନ୍ତ ସ୍ୱଦେହରେ ସ୍ୱର୍ଗକୁ ଯିବାପାଇଁ ବହୁ ପ୍ରଚେଷ୍ଟା ମଣିଷ କରିଆସିଛି। କିନ୍ତୁ ଦେବତାମାନଙ୍କର ଚକ୍ରାନ୍ତ ସେସବୁକୁ ପଣ୍ଡ କରି ଦେଇଛି। ଏପରିକି ତପଃ ବଳରେ ସବୁ ଅସାଧ୍ୟକୁ ସାଧ୍ୟ କରି ପାରୁଥିବା ବିଶ୍ୱାମିତ୍ର ମଧ୍ୟ ଦେବତାମାନଙ୍କ ସ୍ୱର୍ଗ ରାଜ୍ୟରେ ଏକଚାଟିଆ ଅଧିକାର ବିରୁଦ୍ଧରେ ବିଦ୍ରୋହ କରି ବିଫଳ ହୋଇଛନ୍ତି। ତାଙ୍କ ପ୍ରତିନିଧି ତ୍ରିଶଙ୍କୁ ଅଧା ସ୍ୱର୍ଗରେ ରହିଯାଇଛନ୍ତି ସିନା ତାଙ୍କର ସ୍ୱର୍ଗ ରାଜ୍ୟରେ ପ୍ରବେଶ ଇଚ୍ଛା ସଫଳ ହୋଇନାହିଁ। ଏସବୁ କବି କଳ୍ପନା ହୋଇପାରେ। କିନ୍ତୁ ଏହି ଆଖ୍ୟାନ ଉପାଖ୍ୟାନ ମଧ୍ୟରେ ଯେଉଁ ସାମାଜିକ ବିବର୍ତ୍ତନର ବାର୍ତ୍ତା ରହିଛି, ତାହା ହିଁ ଗୁରୁତ୍ୱପୂର୍ଣ୍ଣ। ସମାଜରେ ଅପେକ୍ଷାକୃତ ଉନ୍ନତ ଗୋଷ୍ଠୀ ତଳେ ପଡ଼ିଥିବା ଅନୁନ୍ନତ ଗୋଷ୍ଠୀଙ୍କୁ ବିଭିନ୍ନ ଉପାୟରେ ଶୋଷଣ, ଲୁଣ୍ଠନ ଓ ଲାଞ୍ଛିତ, ଅପମାନିତ କରୁଥିବା ବେଳେ ଅନୁନ୍ନତମାନେ ସର୍ବଦା ଉନ୍ନତ ଗୋଷ୍ଠୀର ଜୀବନଯାପନ ପ୍ରଣାଳୀ ପ୍ରତି ଆକର୍ଷିତ ହୁଅନ୍ତି। କିନ୍ତୁ ଉପରବାଲା ଚାହାନ୍ତି ନାହିଁ ଗୋଟିଏ ସନ୍ତୁଳିତ ସମାଜ ହେଉ। ବିଭେଦହୀନ ସାମ୍ୟ ସ୍ୱର ସମାଜରେ ପ୍ରକୀର୍ତ୍ତିତ ହେଉ। ଏସବୁ କେବଳ ଆମ ଭାରତୀୟ ପୁରାଣ ତତ୍ତ୍ୱର କଥା ନୁହେଁ, ସାରା ବିଶ୍ୱରେ ଭିନ୍ନ ବାଗରେ, ଭିନ୍ନ ଢ଼ଙ୍ଗରେ ହେଉ ପଛେ, ଏହି ସତ୍ୟ ଉପଲବ୍ଧି ହୋଇଛି। ଏମିତି କାହାଣୀଟିଏ।

ବେବିଲୋନ୍ ଛୋଟିଆ ସହରଟିଏ। ଥରେ ଏଠିକାର ଅଧିବାସୀଙ୍କ ମୁଣ୍ଡରେ ଅଜବ ଖିଆଲ୍‌ଟାଏ ଜୁଟିଲା। ସେମାନେ ନିଷ୍ପତ୍ତି ନେଲେ ସ୍ୱର୍ଗକୁ ସିଧାସଳଖ ଯିବା ଆସିବା ପାଇଁ ଟାୱାରଟିଏ ନିର୍ମାଣ କରିବେ। ସହରବାସୀ ସ୍ୱେଚ୍ଛା ଶ୍ରମଦାନ କରି ଲକ୍ଷ୍ୟ ହାସଲ ଦିଗରେ ଦିନରାତି ଏକାକାର କରିଦେଲେ। ସେମାନଙ୍କର ଦୃଢ଼ ଇଚ୍ଛାଶକ୍ତି, ନିଷ୍ଠା ଓ କର୍ମ ତତ୍ପରତା ପରିଲକ୍ଷିତ କରି ଦେବତାମାନେ ଆତଙ୍କ ଗଣିଲେ। ସେମାନଙ୍କ ସ୍ୱଚ୍ଛନ୍ଦ ବିହାର ପାଇଁ ବିପଦ ମାଡି ଆସୁଛି। ଏଥିପାଇଁ ପ୍ରତିକାର ଆବଶ୍ୟକ। ଦେବତାମାନେ ସମାଧାନର ସୂତ୍ର ସନ୍ଧାନରେ ଲାଗି ପଡିଲେ। ଶେଷରେ ଦେବତାଙ୍କ ରାଜା ଇନ୍ଦ୍ରଙ୍କ ଉର୍ବର ମସ୍ତିଷ୍କରେ ଦୁଷ୍ଟ ବୁଦ୍ଧିଟିଏ ଜୁଟିଲା। ସେ 'ଭାଷାର ଦେବୀ' ଏଥେନାଙ୍କୁ ଡାକି କହିଲେ – 'ତମେ ଯାଅ ବେବିଲୋନ୍ ଅଧିବାସୀଙ୍କୁ ପ୍ରଥମେ ସେମାନଙ୍କ ମାତୃଭାଷାକୁ ବିସ୍ମୃତ କରେଇ ଦେବ। ସମସ୍ତଙ୍କ କଣ୍ଠରେ ଗୋଟାଏ ଗୋଟାଏ ନୂଆ ଭାଷା ଖଞ୍ଜି ଦେବ, ଯେପରି କେହି କାହାର କଥା ବୁଝିପାରିବେ ନାହିଁ। ସମସ୍ତେ ସେଇ, ଏକା ଭାବ

ବ୍ୟକ୍ତ କରିବାକୁ ଚାହୁଁଥିବେ, କିନ୍ତୁ ଭାଷା ରହିବ ସମସ୍ତଙ୍କର ଅଲଗା ଅଲଗା।' ଆଜ୍ଞା ପ୍ରମାଣେ ଦେବୀ ଏଥେନା ବେବିଲୋନ୍ ଧାଇଁଗଲେ ଓ ଇନ୍ଦ୍ରଙ୍କ ଆଦେଶ ପାଳନ କଲେ।

ତା' ପରଦିନ ସକାଳୁ ବେବିଲୋନ୍ ଅଧିବାସୀ ଟାୱାର ତଳେ ଏକତ୍ରିତ ହେଲେ। ସେଦିନ ଥିଲା ଶେଷ କାର୍ଯ୍ୟ ଦିବସ। ସନ୍ଧ୍ୟା ସୁଦ୍ଧା ଟାୱାରଟି ସ୍ୱର୍ଗର ଉପକଣ୍ଠ ସ୍ପର୍ଶ କରିଥାନ୍ତା। କିନ୍ତୁ ଖଣ୍ଡେ ଇଟା ବି ଟାୱାରରେ ଯୋଡ଼େଇ ହୋଇପାରିଲା ନାହିଁ। ଖାଲି ହୋହଲ୍ଲା, ପାଟିତୁଣ୍ଡ। କେହି କାହା କଥା ଶୁଣିବାକୁ ପ୍ରସ୍ତୁତ ନୁହଁନ୍ତି; ବୁଝିବାକୁ ପ୍ରସ୍ତୁତ ନୁହଁନ୍ତି, କାମ କରିବା ତ ଦୂରର କଥା। ଶେଷକୁ ଏମିତି ଅବସ୍ଥା ହେଲା ଯେ ଥୋକେ ଟାୱାର ଉପରେ ଚଢ଼ିଯାଇ ତାକୁ ଭାଙ୍ଗିବାକୁ ଚେଷ୍ଟା କଲେ ତ ଆଉ ଥୋକେ ଭାଙ୍ଗୁଥିବା ଲୋକଙ୍କ ଉପରେ ଆକ୍ରମଣ କଲେ। ଶ୍ରମଦାନ କରିବାକୁ ଆସିଥିବା ଆଉ କିଛି ଲୋକଙ୍କ ଭିତରେ ଧସ୍ତାଧସ୍ତି। ଏସବୁ ଦେଖି ଅବଶିଷ୍ଟ ଲୋକେ ଯଃ ପଳାୟତି ସଃ ଜୀବତି ନ୍ୟାୟରେ ଯେ ଯାହାର ରାସ୍ତା ଧରିଲେ। ବେବିଲୋନ୍ ଟାୱାର ପୂର୍ଣ୍ଣ ହୋଇପାରିଲା ନାହିଁ।

ଆଖ୍ୟାନଟି କିମ୍ବଦନ୍ତୀ। ଏଥିରେ ସତ୍ୟାସତ୍ୟ କେତେ ଅଛି, ତାହା ଭିନ୍ନ ପ୍ରସଙ୍ଗ। କିନ୍ତୁ ଏଥିରେ ଯେଉଁ ବାର୍ତ୍ତାଟି ରହିଛି, ତାହା ପ୍ରତ୍ୟେକ ସଭ୍ୟ ସମାଜ ପାଇଁ ଗୁରୁତ୍ୱପୂର୍ଣ୍ଣ। ଭାଷା ହିଁ ସମସ୍ତଙ୍କୁ ଏକତାର ସୂତ୍ରରେ ବାନ୍ଧି ରଖେ। ଭାଷା ଆମର ଶକ୍ତି; ଆମର ସାମର୍ଥ୍ୟ। ଆମକୁ ଏକତା ସୂତ୍ରରେ ବାନ୍ଧି ରଖିବାର ସୁଦୃଢ଼ ରଜ୍ଜୁ। ଆମ ବୁଝାମଣାର ଚାବିକାଠି। ମାନ, ଅଭିମାନ ଓ ମାନ ଭଞ୍ଜନର ମାଧ୍ୟମ। ଭାଷା ଅବୁଝା ହେଲେ, ସବୁ ଅବୁଝା ହୋଇଯାଏ। ଆମ ଏକତା ନଷ୍ଟ ହୁଏ। ଭାଷା ଆମକୁ ସାମୁହିକ ଭାବରେ ଉର୍ଦ୍ଧ୍ୱକୁ ଉଠିବାକୁ ସାହାଯ୍ୟ କରେ; ଆତ୍ମପରିଚୟ ସୃଷ୍ଟି କରେ। ଆମକୁ ସ୍ୱାଭିମାନୀ କରେ। ଆମ ମୌଳିକତା ବଜାୟ ରଖେ। ଏ ସତ୍ୟର ଉପଲବ୍ଧି ଆମ ଓଡ଼ିଆଙ୍କ ପାଖରେ ନୂଆ ନୁହେଁ, ବହୁ ପ୍ରାଚୀନ। ଅଢ଼େଇହଜାର ବର୍ଷର ପୁରୁଣା ଆମର ଏ ଭାଷା ଯେତେବେଳେ ପ୍ରାଦେଶିକ ଭାଷାଭାଷୀଙ୍କ ଚକ୍ରାନ୍ତରେ ବିଡ଼ମ୍ବିତ ହେଉଥିଲା, ଆମ ପୂର୍ବସୂରୀମାନେ ତା'ର ସୁରକ୍ଷା ପାଇଁ ଜୀବନକୁ ପଣ କରି ଦେଇଥିଲେ। ମାତ୍ର ତୃତୀୟ ଶ୍ରେଣୀ ପାଠ ପଢ଼ିଥିବା ଫକିର ମୋହନ ସେନାପତି ଓ ଅଣଓଡ଼ିଆ ବିଦେଶୀ ଶାସକ ବୀମ୍ସ୍ ସାହେବଙ୍କ ବଦାନ୍ୟତା ନଥିଲେ ବୋଧହୁଏ ଓଡ଼ିଆ ଭାଷା ଏକ ଉପଭାଷା କିମ୍ୱା ପ୍ରାନ୍ତୀୟ ଭାଷା ପରି ରହିଥାନ୍ତା। ଏପରି ଘଡ଼ିସନ୍ଧି ମୁହୂର୍ତ୍ତରୁ ଏ ଭାଷା ଉତ୍ତୀର୍ଣ୍ଣ ହୋଇ ଆସିଛି। କେବଳ ସେତିକି ନୁହେଁ, ଦକ୍ଷିଣେ ଓଡ଼ିଶାର କୋର୍ଟ କଚେରି ଓ ଦାପ୍ତରିକ୍ ଭାଷାକୁ ତେଲୁଗୁ ଏବଂ ପଶ୍ଚିମ ଓଡ଼ିଶାର କୋର୍ଟ କଚେରି ଓ ଦାପ୍ତରିକ

ଭାଷାକୁ ହିନ୍ଦୀ ଭାଷା କରିବାର ନିଷ୍ପତ୍ତିକୁ ଭଣ୍ଡୁର କରିବା ପାଇଁ ମଧ୍ୟ ତତ୍କାଳୀନ ମନୀଷୀମାନଙ୍କୁ କମ୍ ପରିଶ୍ରମ କରିବାକୁ ପଡିନଥିଲା। ତଥାପି ଏ ଭାଷା ବଞ୍ଚିଛି। ସ୍ୱାଭିମାନର ସହ ବଞ୍ଚିଛି। ଏ ଭାଷାର ଚେର ମୂଳ ଏତେ ଅତଳସ୍ପର୍ଶୀ ଯେ, ତା' ନାଭିନାଡ଼ରେ ଏତେ ଟାଣପଣ ଯେ ସହଜରେ ଏହାକୁ ଛିନ୍ନ କରିହେବ ନାହିଁ। ଇଂରାଜୀ ଭାଷାର ଅକ୍ଟୋପସୀ ଆଲିଙ୍ଗନ ହେଉ କି ପ୍ରତିବେଶୀ ଭାଷାମାନଙ୍କର ମୂଷିକ ଅନୁପ୍ରବେଶ - ଏହାର ମୂଳ ମଞ୍ଜିକୁ ଦୋହଲେଇ ଦେବାର ଶକ୍ତି କାହାର ନାହିଁ। ବରଂ ଏକ ଔଦାରିକ ଚେତନାରେ ଓଡ଼ିଆ ଭାଷା ଇଂରାଜୀ ଭାଷାର ମହାସାଗରର ମହାତରଙ୍ଗରେ ଯେମିତି ଅବଗାହନ କରିଛି, ପ୍ରତିବେଶୀ ରାଜ୍ୟମାନଙ୍କରୁ ଗଡ଼ି ଆସୁଥିବା ପାହାଡ଼ି ଝରଣାକୁ ମଧ୍ୟ ସେମିତି ଉପେକ୍ଷା କରିନାହିଁ। ଏଇଠି ତ ଆମର ବାହାଦୁରୀ; ଆମର ସ୍ପର୍ଦ୍ଧା ! ଏଥିରେ ଆମର କ୍ଷତି ହୋଇଛି କମ୍, ଲାଭ ହୋଇଛି ବେଶୀ। ଆମ ଭାଷା ସମୃଦ୍ଧ ହୋଇଛି। ଆମ ଅଭିଧାନରେ ଶବ୍ଦ ସଂଖ୍ୟା ବଢ଼ିଛି। ଆମ ସଂସ୍କୃତି ପ୍ରାଚୁର୍ଯ୍ୟପୂର୍ଣ୍ଣ ହୋଇଛି।

ମୈତ୍ରୀ ଦେବତା ଶ୍ରୀଜଗନ୍ନାଥଙ୍କ କ୍ଷେତ୍ର ଓଡ଼ିଶା। ଶ୍ରୀଜଗନ୍ନାଥଙ୍କ ବିଶାଳ ଭୂଜ ପରି ଓଡ଼ିଆର ଚେତନା। ସେଠି ଆପେ ଆପେ ସବୁକିଛି ଅର୍ନ୍ତଃଗର୍ଭିତ ହୋଇଯାଏ। ସମସ୍ତେ ହୋଇଯାଆନ୍ତି ଆପଣାର। ଗାଁ ଗହଳର ଚଉପାଢ଼ି ଓ ଜେଜୀମା' ଆଇଙ୍କ ଓଠରେ ଅପଭ୍ରଂଶ ପାର୍ଶି, ପର୍ତ୍ତୁଗୀଜ୍, ଇଂରାଜୀ ଭାଷା ତ ଏବେ ଆମ ଭାଷାର ବିଭବ ପାଲଟି ଯାଇଛି। ତତ୍ସମ ଓ ତଦ୍ଭବର ଗାମ୍ଭୀର୍ଯ୍ୟ ଆମ ଭାଷାକୁ ଯେତିକି ମର୍ଯ୍ୟାଦାବନ୍ତ କରିଛି, ବୈଦେଶିକ ଶବ୍ଦ ନିତି ନୂଆ ନୂଆ ବୈଜ୍ଞାନିକ ତଥ୍ୟ ସମୂହକୁ ଯେପରି ଆମର ବୋଧଗମ୍ୟ କରିଛି, ଦେଶଜ ଓ ପ୍ରାଦେଶିକ ଶବ୍ଦ ମଧ୍ୟ ଆମକୁ ତଦନୁସାରେ ସୌନ୍ଦର୍ଯ୍ୟ ବିମଣ୍ଡିତ କରିଛି। ଏହା ଆମକୁ ସ୍ୱୀକାର କରିବାକୁ ପଡ଼ିବ। ଓଡ଼ିଆ ସହ ଅନ୍ୟ ଭାଷାମାନଙ୍କରେ ବ୍ୟୁତ୍ପତ୍ତି ଲାଭ ନକଲେ ଆମେ ଆମ ଭାଷାକୁ ସମୃଦ୍ଧ କରିବା କେମିତି ? ଏକାଧିକ ଭାଷା ଶିଖିବା ମାତୃଭାଷା ବିକାଶର ବାଧକ ନୁହେଁ। ମାତୃଭାଷାକୁ ଆଦର ସ୍ନେହ ନକରିବା, ନିଜ ଭାଷାକୁ ହୀନ କରି ଦେଖିବା, ନିଜ ଭାଷାର ଐତିହ୍ୟ, ପରମ୍ପରା ସହ ପରିଚିତ ନହେବା ମାତୃଭାଷା ପାଇଁ ଘାତକସିଦ୍ଧ। ଭାବ ପ୍ରକାଶ ପାଇଁ ଆମେ ଇଂରାଜୀ କିମ୍ବା ପ୍ରାଦେଶିକ ଭାଷାର ଆଶ୍ରୟ ନେବା ଦୋଷାବହ ନୁହେଁ। କିନ୍ତୁ ଭାବ ପ୍ରକାଶ ପାଇଁ ଓଡ଼ିଆରେ ପର୍ଯ୍ୟାପ୍ତ ସହଜ, ସୁନ୍ଦର ଓ ବୋଧଗମ୍ୟ ଶବ୍ଦ ଥାଉ ଥାଉ ଆମେ ଇଚ୍ଛାକୃତ ଓ ସ୍ୱେଚ୍ଛାକୃତ ଭାବରେ ଯଦି ବୈଦେଶିକ କିମ୍ବା ପ୍ରାଦେଶିକ ଶବ୍ଦ ବ୍ୟବହାର କରୁ, ସେଠି ଆମ ଭାଷାର ଅପମୃତ୍ୟୁ ହୁଏ। ଅବମାନନା ହୁଏ ଆମ

ଭାଷାର। ଆମ ହୀନମନ୍ୟତା ପ୍ରକାଶ ପାଏ। ଥରେ ଆମ ଭାଷାର ପ୍ରାଚୁର୍ଯ୍ୟ, ମହନୀୟତା, ଆମର ଐତିହ୍ୟ ମହିମା ହୃଦ୍‌ବୋଧ କରିଦେଲେ, ଆମ ଅନ୍ତରରେ ଆମ ଭାଷା ପ୍ରତି ମର୍ଯ୍ୟାଦା, ସମ୍ମାନବୋଧ ଆପେ ଆପେ ସୃଷ୍ଟି ହୋଇଯିବ। ଭାଷା ପ୍ରତି ଆମ ଦାୟିତ୍ୱବୋଧ ବଢ଼ିଯିବ। ଆମ କର୍ତ୍ତବ୍ୟ ଆପେ ଆପେ ନିରୂପିତ ହୋଇଯିବ।

ଥରେ ଆମ ଭାଷା, ଆମ ମାଟି, ଆମ ସଂସ୍କୃତି ପ୍ରତି ମମତ୍ୱ ଜାଗ୍ରତ ହେଲେ, ଆମେ କେଉଁ ଭାଷାରେ କଥା ହେଉଛେ, ତାହା ବଡ଼କଥା ହୋଇ ରହେନାହିଁ। ଆମ କାର୍ଯ୍ୟକଳାପରେ, ଆମ ଚିନ୍ତା ଚେତନାରେ ଆମ ମାଟି ପ୍ରତି, ଆମ ଭାଷା ପ୍ରତି ଆମର କେତେ ପ୍ରତିବଦ୍ଧତା ରହିଛି, ତାହା ହୋଇଯାଏ ବଡ଼କଥା। ପ୍ରସଙ୍ଗକ୍ରମେ ଏଠି ଉଲ୍ଲେଖଯୋଗ୍ୟ ଯେ ଓଡ଼ିଶାକୁ ନବନିର୍ମାଣ କରିଥିବା, ଓଡ଼ିଶାବାସୀଙ୍କ ସ୍ୱାର୍ଥ ପାଇଁ ଅହରହ ଚିନ୍ତା କରୁଥିବା, ଓଡ଼ିଆମାନଙ୍କ ଉନ୍ନତି କଳ୍ପେ ନିଜେ ସର୍ବସ୍ୱାନ୍ତ ହୋଇଥିବା ଉତ୍କଳଗୌରବ ମଧୁସୂଦନ ସର୍ବଦା ବଙ୍ଗଳାରେ କଥାବାର୍ତ୍ତା କରୁଥିଲେ। କିନ୍ତୁ କେହି ଓଡ଼ିଆ ଯଦି ତାଙ୍କୁ ବଙ୍ଗଳାରେ ଉତ୍ତର ଦେଉଥିଲା, ସେ ଉତ୍‌କ୍ଷିପ୍ତ ହୋଇ ଯାଉଥିଲେ।

ଅତ୍ୟନ୍ତ ଆନନ୍ଦର କଥା, ଅନେକ ସଂଘର୍ଷ, ସଂଘାତ ପରେ ଏବେ ଓଡ଼ିଆ ଭାଷା ପୁଣି ଏକ ନିର୍ଣ୍ଣାୟକ ମୋଡ଼ ନେଇଛି। ଯେଉଁମାନଙ୍କର ଅହରହ ସଂଗ୍ରାମ ଫଳରେ ଏହା ସମ୍ଭବ ହେଲା, ସେମାନେ ସମସ୍ତେ ଆମର ଶ୍ରଦ୍ଧାସ୍ପଦ। ରାଜ୍ୟ ସରକାର ଆମ ଭାଷାର ବିକାଶ ଓ ବିସ୍ତାର ପାଇଁ ଯେଉଁ ଗଠନମୂଳକ ପଦକ୍ଷେପ ନେଇଛନ୍ତି, ତାହା ଆମ ସମସ୍ତଙ୍କ ପାଇଁ ସ୍ୱାଗତଯୋଗ୍ୟ। ଏହାର ସଫଳତା ପ୍ରକୃତରେ ଜନସମାଜଙ୍କ ଆଗ୍ରହ ଉପରେ ନିର୍ଭର କରେ। ଯେତେଦିନ ପର୍ଯ୍ୟନ୍ତ ଆମ ଭିତରୁ ଇଂରାଜୀ ଭାଷା ପ୍ରତି ଅହେତୁକ ମୋହ ଦୂରୀଭୂତ ନ ହୋଇଛି, ଓଡ଼ିଆ ଭାଷା ପ୍ରତି ଆନ୍ତରିକ ମମତ୍ୱବୋଧ ଜାଗ୍ରତ ନ ହୋଇଛି, ସେ ପର୍ଯ୍ୟନ୍ତ ସରକାରୀ ଆଇନ୍ କାନୁନ୍‌ମାନ ବ୍ୟର୍ଥତାରେ ପରିଣତ ହେଉଥିବ।



# ସାହିତ୍ୟ ସତ୍ୟ ପାଇଁ ନା ହିତ ପାଇଁ ?

ଭାରତୀୟ ବାଙ୍ମୟରେ ରହିଛି 'ସତ୍ୟମ୍ ବ୍ରୂୟାତ୍ ପ୍ରିୟମ୍ ବ୍ରୂୟାତ୍ ମା ବ୍ରୂୟାତ୍ ସତ୍ୟମପ୍ରିୟମ୍ ।' ଅପ୍ରିୟ ସତ୍ୟ କଥନକୁ ବାରଣ କରାଯାଇଛି । ସତ୍ୟ କଥନଟି ଯଦି ଅପରର ଅନିଷ୍ଟ ସାଧନ କରେ, ତେବେ ତାହା ମିଥ୍ୟାଠାରୁ ବଳି ଜଘନ୍ୟ । କିନ୍ତୁ ପଦେ ଅସତ୍ୟ କହିବା ଦ୍ୱାରା ଯଦି ଅନ୍ୟ କାହା ଜୀବନରୁ ସଙ୍କଟ କଟିଗଲା, ତେବେ ଏହି ପ୍ରିୟ ଅସତ୍ୟଟି ସତ୍ୟଠାରୁ ବଳି ମହନୀୟ, କାରଣ ଏ ଅସତ୍ୟଟି ଅପରର ହିତ ସାଧନ ଉଦ୍ଦେଶ୍ୟରେ ପ୍ରୟୋଗ କରାଗଲା । ସେଥିପାଇଁ କୁହାଯାଇଛି - 'ସତ୍ୟସ୍ୟ ବଚନଂ ଶ୍ରେୟଃ ସତ୍ୟାଦପି ହିତମ୍ ବଦେତ୍ ।' କିନ୍ତୁ ଆତ୍ମସ୍ୱାର୍ଥ ପାଇଁ ସତ୍ୟଭ୍ରଷ୍ଟ ହେଉଥିବା ବ୍ୟକ୍ତି ଭୀରୁ, କାପୁରୁଷ ପଦବାଚ୍ୟ । ସମୟ ତାହା ଅନୁମୋଦନ କରେନାହିଁ । ଦୁନିଆର ଏ ବୃହତ୍ତର ସତ୍ୟ କେବଳ ଆଜିକାଲିକାର କଥା ନୁହେଁ । ସାମାଜିକ ବିବର୍ତ୍ତନରେ କାହିଁ କେତେ ଯୁଗରୁ ଏସବୁ ଭାରତୀୟ ଜୀବନ ଦର୍ଶନ ସହ ଏକାତ୍ମ ହୋଇଛି ।

ରାମଚନ୍ଦ୍ର ଥିଲେ ସତ୍ୟସନ୍ଧ ପୁରୁଷ । ସେ ପିତୃସତ୍ୟ ପାଳି ସ୍ତ୍ରୀ ଓ ଭାଇ ସହ ବନବାସ ବରଣ କରିଥିଲେ । ଏବକାର ମଣିଷ ନିଜେ ଦେଇଥିବା ପ୍ରତିଶ୍ରୁତିକୁ ପାଳନ କରିବାପାଇଁ ପ୍ରଯତ୍ନ କରୁନାହିଁ । ବରଂ ନିଜେ କରିଥିବା ସତ୍ୟ ଯଦି କିଛି ସମସ୍ୟା ସୃଷ୍ଟି କରିବାର ଆଶଙ୍କା ଥାଏ, ସତ୍ୟବଦ୍ଧ ବ୍ୟକ୍ତି ବିଭିନ୍ନ ଆଳ ଦେଖାଇ ସେଥିରୁ ମୁକ୍ତ ହେବା ପାଇଁ ମାର୍ଗ ଖୋଜୁଛି । ଅଥଚ ରାମଚନ୍ଦ୍ର ପିତାଙ୍କ ସତ୍ୟ ପାଳନ ପାଇଁ କେତେବଡ଼ କାର୍ଯ୍ୟ ନକଲେ ସତରେ ! ସେଥିପାଇଁ ପିତାଙ୍କ ମୃତ୍ୟୁ ହେଲା । ସୀତା ଚୋରି ହେଲେ । ଲଙ୍କାପୁରୀ ଧ୍ୱଂସ ହେଲା । ଚଉଦବର୍ଷ କାଳ ତିନିଟା ମଣିଷ ଗୃହତ୍ୟାଗୀ ହେଲେ । ଚଉଦବର୍ଷ କାଳ ବିଦୁଷୀ ଉର୍ମିଳାଙ୍କୁ ତପସ୍ୱାରିଣୀ ପରି ଜୀବନ କାଟିବାକୁ ହେଲା । କୌଶଲ୍ୟା ଓ ସୁମିତ୍ରା ଦୀର୍ଘ କାଳ ଧରି ପୁତ୍ର ବିଚ୍ଛେଦ ଯନ୍ତ୍ରଣା ସହିଲେ । ରାମଚନ୍ଦ୍ର ହୁଅନ୍ତୁ କି ଦଶରଥ, ସତ୍ୟ ସହ ଯଦି ଏତେ ଟିକେ ସାଲିସ୍ କରିପାରିଥାନ୍ତେ, ଅଯୋଧ୍ୟାପୁର ଚଉଦବର୍ଷ କାଳ ଏମିତି ଦୁର୍ଭୋଗ୍ୟର ଶିକାର ହୋଇନଥାନ୍ତା । ହୁଏତ ଦଶରଥଙ୍କୁ ଇତିହାସ ନିନ୍ଦା କରିଥାନ୍ତା । କିନ୍ତୁ ରାମଚନ୍ଦ୍ର ଯେପରି ସାରା ଜୀବନ ପୀଡ଼ା ଭୋଗିଲେ,

ସେପରି ହୋଇନଥାନ୍ତା। ବଙ୍ଗଳା ଭାଷାରେ ପ୍ରବଚନଟିଏ ଅଛି - 'ରାମେର କ୍ରନ୍ଦନ କୃଷ୍ଣେର ହାସି।' ଜୀବନସାରା ରାମଚନ୍ଦ୍ର କେବଳ କାନ୍ଦିଛନ୍ତି। ଦୁଃଖ,ଯନ୍ତ୍ରଣା ଓ ପୀଡ଼ାକୁ ପାଥେୟ କରି ଶେଷ ପର୍ଯ୍ୟନ୍ତ ସଂଘର୍ଷ କରିଛନ୍ତି ସିନା ସତ୍ୟ ସହ କେବେହେଲେ ସାଲିସ୍ କରିନାହାନ୍ତି। ଆଜିର ଜୀବନବାଦୀ ମଣିଷ ଏ ପ୍ରକାର ଜୀବନ ଦର୍ଶନକୁ ସହଜରେ ସ୍ୱୀକାର କରେନାହିଁ। ଅବଶ୍ୟ ଏଠାରେ କୁହାଯାଇପାରେ, ରାମଚନ୍ଦ୍ରଙ୍କର ବନବାସ ତତ୍କାଳୀନ ସମୟର ଆବଶ୍ୟକତା ଥିଲା। ବଣ ଜଙ୍ଗଲରେ ଉପଦ୍ରବ କରୁଥିବା ରାକ୍ଷସ ରାକ୍ଷସୀମାନଙ୍କର ଦୌରାତ୍ମ୍ୟରେ ଅତିଷ୍ଠ ହେଉଥିବା ମୁନିଋଷିଙ୍କୁ ସୁରକ୍ଷା ଦେବାପାଇଁ ବିଧି ନିର୍ଦ୍ଦେଶରେ ରାମଚନ୍ଦ୍ର ବନବାସ ଗଲେ। ଏସବୁ ତ କବି କଳ୍ପନାର କଥା। କିନ୍ତୁ ବାସ୍ତବ ଦୃଷ୍ଟିରୁ ରାମଚନ୍ଦ୍ରଙ୍କ ବନବାସ ହିଁ ଅଯୋଧ୍ୟା ରାଜବଂଶର ଦୁର୍ଦ୍ଦଶାର କାରଣ ହୋଇଛି। ବନବାସ ନ ଯାଇ ମଧ୍ୟ ରାମଚନ୍ଦ୍ର ରାକ୍ଷସମାନଙ୍କୁ ଦମନ କରିପାରିଥାନ୍ତେ।

ଭୀଷ୍ମ ଓ ଶ୍ରୀକୃଷ୍ଣ ମହାଭାରତର ଦୁଇଜଣ ପ୍ରାଜ୍ଞପୁରୁଷ। ଦୁହେଁ ମହାଜ୍ଞାନୀ, ମହାଯୋଗୀ ଓ ବିବେକବନ୍ତ ବ୍ୟକ୍ତିତ୍ୱ। ସମାଜ କଲ୍ୟାଣ ଦୁଇ ମହାତ୍ମାଙ୍କର ବ୍ରତ ଥିଲା। ବ୍ୟକ୍ତିଗତ ସ୍ୱାର୍ଥରୁ ଦୁହେଁ ବହୁ ଉର୍ଦ୍ଧ୍ୱକୁ ଉଠି ଯାଇଥିଲେ। ଅଥଚ ଜଣେ ସତ୍ୟାଶ୍ରୟୀ ଥିବାବେଳେ ଅନ୍ୟଜଣେ ଥିଲେ ହିତାଶ୍ରୟୀ। ହସ୍ତିନା ରାଜ ସିଂହାସନର ସୁରକ୍ଷା ପାଇଁ ଭୀଷ୍ମ ସତ୍ୟବଦ୍ଧ ଥିଲେ। ସେହି ଭୀଷଣ ସତ୍ୟ ବନ୍ଧନରୁ ମୁକୁଳି ଆସିବା ପାଇଁ ତାଙ୍କ ପାଖକୁ ଅନେକ ସୁଯୋଗ ଆସିଥିଲା। ପରିସ୍ଥିତି ଚାପରେ ସେ ଯଦି ସତ୍ୟ ସହ ଏତେ ଟିକେ ସାଲିସ୍ କରିଥାନ୍ତେ, ତେବେ ଚିତ୍ରବୀର୍ଯ୍ୟ, ବିଚିତ୍ରବୀର୍ଯ୍ୟଙ୍କ ମୃତ୍ୟୁ ପରେ ହସ୍ତିନାର ରାଜଦଣ୍ଡ ଜଣେ ଚକ୍ଷୁହୀନ, ଜଣେ ରୁଗ୍ଣ ଓ ଜଣେ ଦାସୀପୁତ୍ର ପରି ରାଜ ସିଂହାସନ ପାଇଁ ଅଯୋଗ୍ୟ ପ୍ରାର୍ଥୀମାନଙ୍କ ଭରସାରେ ନଥାନ୍ତା। ହୁଏତ କଦାକାର ବ୍ୟାସଦେବଙ୍କ ପରିବର୍ତ୍ତେ ସୌମ୍ୟ ସୁନ୍ଦର ଭୀଷ୍ମଙ୍କ ଔରସରୁ ତେଜସ୍ୱୀ ପୁତ୍ର ଜନ୍ମ ହୋଇ ରାଜ ସିଂହାସନର ସାର୍ଥକ ଦାୟାଦ ହୋଇଥାନ୍ତା। ମହାଭାରତ ଯୁଦ୍ଧଟିଏ ପରି ଭୟାବହ ଯୁଦ୍ଧର ଆବଶ୍ୟକତା ପଡ଼ି ନଥାନ୍ତା, ଯାହାର ସର୍ବଗ୍ରାସୀ ପ୍ରଭାବରୁ ଅଶୀତି ବର୍ଷର ବୃଦ୍ଧଙ୍କଠାରୁ ଗର୍ଭସ୍ଥ ସନ୍ତାନ ପର୍ଯ୍ୟନ୍ତ କେହି ବି ମୁକ୍ତ ହୋଇ ପାରିଲେ ନାହିଁ। କାଶୀ ରାଜକନ୍ୟା ଅମ୍ବା କ୍ଷେତ୍ରରେ ବି ସେଇଆ। ଭୀଷ୍ମଙ୍କର ଅପରିଣାମଦର୍ଶିତା ପାଇଁ ପ୍ରେମିକ ପାଖରୁ ପ୍ରତ୍ୟାଖ୍ୟାତା ହେବା ପରେ ଅମ୍ବାଙ୍କର ଭୀଷ୍ମଙ୍କୁ ବିବାହ କରିବାର ଜିଦ୍ ଅଯୌକ୍ତିକ ନଥିଲା। କିନ୍ତୁ ନିଜେ ସତ୍ୟବଦ୍ଧ ଥିବାରୁ ଅମ୍ବାଙ୍କର ଯୁକ୍ତିସିଦ୍ଧ ଦାବିକୁ ସେ ଅଗ୍ରାହ୍ୟ କରି ନିଜ ଦୁର୍ଭୋଗକୁ ବରଣ କରି ଆଣିଲେ। ପର୍ଶୁରାମଙ୍କଠାରୁ ଅସ୍ତ୍ରବିଦ୍ୟା ଶିକ୍ଷା କରିଥିବା

ମହାନ୍ ଯୋଦ୍ଧା ନିଜର ଯୋଦ୍ଧୃପଣକୁ କାର୍ଯ୍ୟରେ ଲଗାଇ ପାରିଲେ ନାହିଁ। ସତ୍ୟର ବନ୍ଧନରେ ଆବଦ୍ଧ ଥିବାରୁ କୌଣସି ସମାଜ କଲ୍ୟାଣ କର୍ମ ତାଙ୍କ ହାତରେ ହୋଇପାରିଲା ନାହିଁ। ଏପରିକି ତାଙ୍କ ଦୃଷ୍ଟି ସମ୍ମୁଖରେ ହସ୍ତିନାର ରାଜବଧୂକୁ ବିବସ୍ତ୍ର କରାଯାଉଥିବାବେଳେ ସେ ନିରବଦ୍ରଷ୍ଟା ହୋଇ ରହିଲେ। ଅଥଚ ମୁକ୍ତପୁରୁଷ ଶ୍ରୀକୃଷ୍ଣ କୌଣସି ଗୋଟିଏ ସତ୍ୟ ଶୃଙ୍ଖଳରେ ଆବଦ୍ଧ ହୋଇ ସମାଜକୁ ଦୁର୍ଦ୍ଦଶାଗ୍ରସ୍ତ କରିବାକୁ ଚାହିଁ ନାହାନ୍ତି। ସମାଜର ହିତ ପାଇଁ ସତ୍ୟକୁ ପରିତ୍ୟାଗ କରିବାକୁ କୁଣ୍ଠାବୋଧ କରିନାହାନ୍ତି। କୌଶଳରେ ସତ୍ୟକୁ ମିଥ୍ୟା ଓ ମିଥ୍ୟାକୁ ସତ୍ୟରେ ପରିଣତ କରିବାରେ ସେ ବେଶ୍ ଦକ୍ଷ ଥିଲେ। ତାଙ୍କର ସର୍ବଶ୍ରେଷ୍ଠ ଓ ସର୍ବଶେଷ ଉଦ୍ଦେଶ୍ୟ ହେଲା ଜନହିତକର କାର୍ଯ୍ୟ। ମଣିଷଙ୍କ ମଙ୍ଗଳ ହିଁ ତାଙ୍କପାଇଁ ପ୍ରଥମ ଓ ଶେଷକଥା। ନୀତି ନିୟମ, ଆଇନ୍ କାନୁନ୍, ପ୍ରଥା ପରମ୍ପରା, ପ୍ରତିଜ୍ଞା ପ୍ରତିଶ୍ରୁତି ନୁହେଁ। ଆବଶ୍ୟକ ପଡ଼ିଲେ ସେସବୁକୁ ସେ ବୁଲେଇ ବଙ୍କେଇ ନିଜ ଉଦ୍ଦେଶ୍ୟ ସାଧନ କରି ପାରୁଥିଲେ। ସେହି ହେତୁ ସମାଜ ତାଙ୍କୁ ପୂର୍ଣ୍ଣାବତାର ବୋଲି ସ୍ୱୀକାର କଲା। ଯାହାର ଯେ କୌଣସି ସମସ୍ୟା ପଡ଼ିଲା, ଶ୍ରୀକୃଷ୍ଣଙ୍କୁ ଆବାହନ କରି ତା'ର ସମାଧାନ ଲୋଡ଼ିଲା।

ସାଂପ୍ରତିକ ସମାଜରେ ସାହିତ୍ୟ ସତ୍ୟାଶ୍ରୟୀ ହେବ କି ହିତାଶ୍ରୟୀ ହେବ, ଏ ବିତର୍କରେ ବୁଦ୍ଧିଜୀବୀମାନଙ୍କର ଅନେକ ସାମର୍ଥ୍ୟ ବ୍ୟୟ ହୋଇଥାଏ। ଅନେକେ ଯୁକ୍ତି କରନ୍ତି, ସାହିତ୍ୟ ସତ୍ୟାଶ୍ରୟୀ ହେଉ; ସତ୍ୟର ଜୟଗାନ କରୁ। ସତ୍ୟ ଛଡ଼ା ଅନ୍ୟ କିଛି ନକହୁ- 'ସତ କହିବାକୁ କିଆଁ ଡରିବି, ସତ କହି ପଛେ ମଲେ ମରିବି।' ବ୍ୟକ୍ତିଗତ କ୍ଷେତ୍ରରେ ଏ ସତ୍ୟ ଠିକ୍ ଅଛି। କିନ୍ତୁ ଯେତେବେଳେ ସାମୂହିକ ହିତର ପ୍ରଶ୍ନ ଉଠେ, ସେତବେଳେ ଯେଉଁ ସତ୍ୟର ପ୍ରକାଶ ସମାଜରେ ଅଭାବନୀୟ ପରିସ୍ଥିତି ସୃଷ୍ଟିକରେ, ସେ ସତ୍ୟକୁ ଗୋପନ ରଖିବା ସ୍ପୃହଣୀୟ। ଆମ ଘରର ଦାରିଦ୍ର୍ୟ ପ୍ରଦର୍ଶନ ପାଇଁ କନ୍ଥାକୁଟୁଡ଼ି ବାହାରେ ପ୍ରଦର୍ଶନ ଯେମିତି ଅପ୍ରୀତିକର, ସେମିତି ସମାଜର ବାସ୍ତବ ଚିତ୍ର ପ୍ରଦର୍ଶନ କରିବା ଆଳରେ ଅଶ୍ଳୀଳ, ନିଷିଦ୍ଧ ଓ ଅପଉପାଦାନର ହାଟ ମଝିରେ ଉପସ୍ଥାପନ କରିବା ଆଦୌ ବିଜ୍ଞତା ନୁହେଁ।

ସତ୍ ସାହିତ୍ୟ ତାହା; ଯାହା ସମାଜର ହିତ ସାଧନ କରେ। ସାହିତ୍ୟରେ ପ୍ରକାଶିତ ସତ୍ୟ ଅନେକ ସମୟରେ ସମାଜରେ ବିଭିନ୍ନ ପ୍ରକାର ବିଶୃଙ୍ଖଳା ସୃଷ୍ଟି କରେ। ସାଂପ୍ରଦାୟିକ ଦଙ୍ଗା, ହିଂସା, ବାଦ, ବିକୃତି, ଅପସଂସ୍କୃତି, ମାନବୀୟ ପ୍ରବୃତ୍ତିର ବିପରୀତ ଉପାଦାନମାନ ସମାଜକୁ ଭୁଲ୍ ବାର୍ତ୍ତା ଦେଇଥାଏ। ସତ୍ୟର ନିର୍ଭୀକ ପ୍ରକାଶ ଆଳରେ ଆମେ ଯେଉଁ ଅପରିଣାମଦର୍ଶୀ କାର୍ଯ୍ୟ କରୁ, ତାହା ସମାଜର କୌଣସି ହିତସାଧନ କରେନାହିଁ। ସମାଜର ହିତସାଧନ କରୁନଥିବାରୁ ଏହା ଅସତ୍ ସାହିତ୍ୟ ପଦବାଚ୍ୟ।

ସୁସ୍ଥ ସମାଜ ଗଠନ ପାଇଁ କେତେକ ଅସୁସ୍ଥ ଉପାଦାନକୁ ଆମେ ସାହିତ୍ୟଠୁ ଦୂରେଇ ରଖିଲେ କ୍ଷତି କମ୍, ଲାଭ ବେଶୀ। ସାହିତ୍ୟରେ କ'ଣ କୁହାଗଲା, ବଡ଼କଥା ନୁହେଁ। କ'ଣ କୁହାନଗଲେ ସାହିତ୍ୟ ଓ ସମାଜ-ଉଭୟର ହିତ ସାଧନ ହେବ, ଉଭୟ ମର୍ଯ୍ୟାଦାବନ୍ତ ହେବେ, ସୃଷ୍ଟି ସାର୍ବଜନୀନ ଓ କାଳଜୟୀ ହୋଇ ପାରିବ, ତାହା ବଡ଼କଥା। ଏହା ସତ୍ୟର କଣ୍ଠରୋଧ ନୁହେଁ, ବରଂ ଏହି ମୌନତାଦ୍ୱାରା ଗୁଡ଼ାଏ ସାମାଜିକ ସମସ୍ୟା ଆପେ ଆପେ ସମାଧାନ ହୋଇଯାଏ। କିନ୍ତୁ ସତ୍ୟ ପ୍ରକାଶ ନାଁରେ ଅପଉପାଦାନଗୁଡ଼ିକୁ ସାହିତ୍ୟରେ ସ୍ଥାନ ଦେଲେ, ତାହା ସତ୍ୟର ଅସତ୍ ଉପଯୋଗ ବୋଲି କହିବାକୁ ହେବ। ବେଳେବେଳେ ସତ୍ୟ ଗୁଡ଼ାଏ ଅହିତ ଉପାଦାନକୁ ସ୍ୱାଗତ କରିଆଣେ, ହିତେ ବିପରୀତ ହୁଏ। ସମାଜର ଶୀଳ ସମ୍ଭ୍ରମତା ନଷ୍ଟ ହୁଏ। ସାମାଜିକ ବିଶୃଙ୍ଖଳା ଓ ବିକୃତିର ବିପତ୍ତିକୁ ବଶ କରିହୁଏ ନାହିଁ। ଅସହିଷ୍ଣୁତା ମାରାତ୍ମକ ରୂପ ଧାରଣ କରେ। ସବୁ ସତ୍ୟ ଅହିତ ନୁହେଁ କି ସବୁ ହିତ ଅସତ୍ୟ ନୁହେଁ। ସତ୍ୟ ଓ ହିତ ସହ ସନ୍ତୁଳନ ରକ୍ଷା କରାଯାଇ ପାରିଲେ, ତାହା ସତ୍ ସାହିତ୍ୟ ହୋଇଥାଏ। ତେବେ ସୁଧୀବୃନ୍ଦ ! ସାହିତ୍ୟକୁ ଆମେ ସତ୍ୟାଶ୍ରୟୀ କରିବା ନା ହିତାଶ୍ରୟୀ ?



# ଆଦିମ ପ୍ରବୃତ୍ତି

ଐତିହାସିକ ଓସ୍‌ୱାଲ୍ଡ ସ୍ପେଙ୍ଗଲର ତାଙ୍କର ବହୁ ଚର୍ଚ୍ଚିତ ପୁସ୍ତକ 'ଡିକ୍ଲାଇନ୍ ଅଫ୍ ଦ ଓ୍ୱେଷ୍ଟ' ପୁସ୍ତକରେ କହିଛନ୍ତି, ଗ୍ରୀକ୍ ଓ ରୋମ୍ ପରି ଅତ୍ୟନ୍ତ ସମୃଦ୍ଧ ଓ ଶକ୍ତିଶାଳୀ ସଭ୍ୟତାର ଅସ୍ତିତ୍ୱ ଲୋପ ପାଇବା ମୂଳରେ ଯୌନ ବ୍ୟଭିଚାର ରହିଛି। କେବଳ ଗ୍ରୀକ୍ ଅଥବା ରୋମ୍ ପାଇଁ ନୁହେଁ, ସମଗ୍ର ମାନବ ଜାତି ପାଇଁ ଏ ଉକ୍ତିର ଯଥାର୍ଥତା ରହିଛି। ମଣିଷ ପଶୁମାନଙ୍କଠାରୁ ସଭ୍ୟ ଏଇଥିପାଇଁ ଯେ ସେ ତା'ର ଜାନ୍ତବ ପ୍ରବୃତ୍ତିର ଚରିତାର୍ଥ ପାଇଁ ରୁଚିପୂର୍ଣ୍ଣ ଓ ଶୀଳ ସଂଯମ ପରିବେଶଟିଏ ଆବଶ୍ୟକ କରେ। ମଣିଷମାନଙ୍କର ସଭ୍ୟତା ଅଛି। ପଶୁମାନଙ୍କର ଗୋଷ୍ଠୀ ଅଛି ସିନା ତାହା ସଭ୍ୟତା ନୁହେଁ। ପୁଣି ସଭ୍ୟତା ନାଁରେ ଗୁଡ଼ାଏ କାଇଦା କଟକଣା ମଧ୍ୟ ମାନସିକ ବିକୃତିର କାରଣ ହୋଇଥାଏ। ୟୁରୋପୀୟମାନେ ଅତି ମାତ୍ରାରେ ଆଦବକାଇଦା ଉପରେ ଗୁରୁତ୍ୱ ଦେଉଥିଲେ। ଏପରିକି ହସିବା କାନ୍ଦିବା ପରି ସ୍ୱାଭାବିକ ପ୍ରକ୍ରିୟାକୁ ମଧ୍ୟ କାଇଦା କଟକଣା ଭିତରେ ସମ୍ପନ୍ନ କରୁଥିଲେ। କୁହାଯାଏ, ବିଶ୍ୱ ମହାଯୁଦ୍ଧ ପରେ ଇଂରେଜମାନେ ଖୋଲାଖୋଲି ହସି ଶିଖିଲେ ଓ କାନ୍ଦି ଶିଖିଲେ। ଶିଶୁ ଜନ୍ମ ହେବା ପରଠୁ ତାକୁ ଶିଖାଇ ଦିଆ ଯାଉଥିଲା ଆଦବ କାଇଦା, ଶିଷ୍ଟାଚାର। ସେ ଜାତିର ଗର୍ବ ଥିଲା 'ଷ୍ଟିଫ୍ ଅପର ଲିପ୍ କଲ୍‌ଚର୍'। ମୁଖମଣ୍ଡଳର ମାଂସପେଶୀ କୁଞ୍ଚନକୁ ଅନ୍ୟ କାହା ଆଗରେ ଦେଖାଇବାକୁ ସେମାନେ ଆଦିମତା ବା ବାର୍ବାରିକ୍ ବୋଲି କହୁଥିଲେ। ମୁହଁର ଭାବଭଙ୍ଗୀ ବାହାରକୁ ଜଣା ପଡ଼ିଯିବ ବୋଲି ଚର୍ଚ୍ଚିଲ କୁଆଡ଼େ ଓଠରେ ସଦାସର୍ବଦା ସିଗାର୍ ଚାପି ଧରୁଥିଲେ। ସେଇ ଚର୍ଚ୍ଚିଲ୍ ମହାତ୍ମାଗାନ୍ଧିଙ୍କୁ ଯେତେବେଳେ ଆଣ୍ଠୁ ଲୁଚୁ ନଥିବା ଖଦି ପିନ୍ଧା ଅବସ୍ଥାରେ ଦେଖିଲେ, ତାଙ୍କର 'ଇଟ୍ ଇଜ୍ ଆଲର୍ମିଂ ଆଣ୍ଡ ନସିଏଟିଂ ଟୁ ସି ହିମ୍' କହିବାରେ କିଛି ଅସ୍ୱାଭାବିକତା ନଥିଲା।

ସମ୍ଭ୍ରମତା, ଶାଳୀନତା ଓ ଶୃଙ୍ଖଳା ଯେ କୌଣସି ସଭ୍ୟତାର ସର୍ବନିମ୍ନ ପରିଚୟ। ନାରୀ ପୁରୁଷଙ୍କ ସମ୍ପର୍କ କ୍ଷେତ୍ରରେ ଏହା ପୁଣି ନିହାତି ଜରୁରୀ। ପ୍ରାଚୀନ ଯୁଗରେ ଏ ସମ୍ପର୍କ ଅବାଧ ଥିଲା। ମାନବେତର ପ୍ରାଣୀଙ୍କ ପରି ଯିଏ ଯେତେବେଳେ ଯାହା ସହ

ଚାହୁଁଥିଲା, ତା' ସହ ସେତେବେଳେ ସମ୍ପର୍କ ସ୍ଥାପନ କରିପାରୁଥିଲା । ଉଦ୍ଦାଳକ ଋଷିଙ୍କ ପୁତ୍ର ଶ୍ୱେତକେତୁଙ୍କ ସମ୍ମୁଖରେ ଜଣେ ବ୍ରାହ୍ମଣ ତାଙ୍କ ମାତା ଅର୍ଥାତ୍ ଉଦ୍ଦାଳକଙ୍କ ପତ୍ନୀଙ୍କୁ ଜବରଦସ୍ତ ଉପଭୋଗ କରିବାପାଇଁ ନେଇଗଲା । ଉଦ୍ଦାଳକ ପ୍ରତିବାଦ ନ କରିବାରୁ ଶ୍ୱେତକେତୁ ଏହାର କାରଣ ପଚାରିଥିଲେ । ସେ ନିଜର ଅସହାୟତା ପ୍ରକାଶ କରି କହିଥିଲେ, ନାରୀ ଓ ପୁରୁଷଙ୍କ ସମ୍ଭୋଗ ପାଇଁ କୌଣସି ଶୃଙ୍ଖଳିତ ନିୟମ ଗଢ଼ାଯାଇ ନାହିଁ । ତେଣୁ ସେ ନିରୁପାୟ । ତା' ପରଠାରୁ ଶ୍ୱେତକେତୁଙ୍କ ଦ୍ୱାରା ବିବାହ ଅନୁଷ୍ଠାନ ପ୍ରଚଳନ ହେଲା । ଏହା ଏକ ସର୍ବ ପୁରାତନ ଅନୁଷ୍ଠାନ । ଏଥିପାଇଁ ନୀତି ନିୟମ, ଆଚାର ସଂହିତାର ପ୍ରଣୟନ ହେଲା; 'ପରଦାରେଷୁ ମାତୃବତ୍' ନିୟମ ପ୍ରତିଷ୍ଠିତ ହେଲା । ପରନାରୀ ହରଣ କଲେ ସାମାଜିକ ଦଣ୍ଡ ବିଧାନ ତ ରହିଲା, ଏହି ଅପରାଧରେ ବ୍ୟକ୍ତି ମୃତ୍ୟୁ ପରେ କୁମ୍ଭୀପାକ ନର୍କରେ ପଡ଼ିବାର ଭୟ ମଧ୍ୟ ସୃଷ୍ଟି କରାଗଲା । ବିବାହିତ ପତ୍ନୀଙ୍କୁ ସୁରକ୍ଷା ଦେବା ପୁରୁଷର କର୍ତ୍ତବ୍ୟ ରୂପେ ପରିଗଣିତ ହେଲା । ଯେଉଁଠି ଏହାର ବ୍ୟତିକ୍ରମ ହେଲା, ସେଠାରେ ସାମାଜିକ ଜୀବନ ବିପର୍ଯ୍ୟସ୍ତ ହେଲା ।

ରାମାୟଣରେ ସୀତାଙ୍କୁ ଲଙ୍କାରୁ ଉଦ୍ଧାର କରିବାପାଇଁ ରାମଚନ୍ଦ୍ର ଯେତେ ସାମର୍ଥ୍ୟ ବିନିଯୋଗ କରିଛନ୍ତି, ତା'ଠାରୁ ଅଧିକ ଆଉ କେହି କରିପାରି ନଥାନ୍ତେ । ତାଙ୍କୁ ଉଦ୍ଧାର କରି ସାରିବା ପରେ ସେ କହିଛନ୍ତି, 'ରାମ କୁଳାଙ୍ଗାର । ସେ ସ୍ତ୍ରୀକୁ ସୁରକ୍ଷା ଦେଇ ପାରିଲା ନାହିଁ । ଏମିତି କଳଙ୍କ ରଘୁବଂଶରେ ନ ଲାଗୁ ବୋଲି ମୁଁ ସୀତାଙ୍କୁ ଉଦ୍ଧାର କଲି । ବର୍ତ୍ତମାନ ସୀତାଙ୍କଠାରେ ମୋର ଆଉ କିଛି କାର୍ଯ୍ୟ ନାହିଁ ।' ପରେ ଅବଶ୍ୟ ଅଗ୍ନି ପରୀକ୍ଷା ଦେଇ ସୀତା କିପରି ଉତ୍ତୀର୍ଣ୍ଣ ହୋଇଛନ୍ତି ଓ ରାମ ତାଙ୍କୁ ଗ୍ରହଣ କରିଛନ୍ତି, ତାହା ଭିନ୍ନ ପ୍ରସଙ୍ଗ ।

ରାମାୟଣ ଯୁଗର ଏ ସାମାଜିକ ମୂଲ୍ୟବୋଧ ମହାଭାରତ ଯୁଗ ବେଳକୁ ଅବକ୍ଷୟ ହୋଇ ପଡିଲା । ପୁରୁଷ ନିଜ ସ୍ତ୍ରୀକୁ ଉପଯୁକ୍ତ ମର୍ଯ୍ୟାଦା ଦେବାରେ ଅବହେଳା ପ୍ରଦର୍ଶନ କଲା । ନାରୀ ନିଜକୁ ନିଜେ ରକ୍ଷା କରିବାର ଭୂମିକା ନେଲା । ସ୍ୱାମୀ ସ୍ତ୍ରୀକୁ ନିଜର ସମ୍ପତ୍ତି ବୋଲି ଭାବି ଜୁଆ ଖେଳରେ ବାଜି ରଖି ତା'ର ଅସମ୍ମାନ କଲା । ଅନ୍ତଃପୁରରୁ ରାଜସଭାକୁ ଆଣି ତାକୁ ବିବସ୍ତ୍ର କରିବାର ପଥ ପରିଷ୍କାର କରିଦେଲା । ବିଡ଼ମ୍ବନାର କଥା, କୁରୁସଭାରେ ଦ୍ରୌପଦୀଙ୍କୁ ବିବସ୍ତ୍ର କରିବାର ଅପଚେଷ୍ଟା ପାଇଁ ଆମେ ଦୁଃଶାସନକୁ ଓ ଦୁର୍ଯ୍ୟୋଧନକୁ ଯେତିକି ଦାୟୀ କରୁ, ସେତିକି ଦାୟୀ ଯୁଧିଷ୍ଠିରଙ୍କୁ କରୁନାହିଁ । ସିଏ ଆମ ଦୃଷ୍ଟିରେ ଧର୍ମରାଜ, ଯିଏ ଏହି ଲଜ୍ଜାଜନକ ପ୍ରକ୍ରିୟା ପାଇଁ ପଥ ପ୍ରଶସ୍ତ କରି ଦେଇଥିଲେ । ମାଙ୍କଡ଼ ହାତରେ ଶାଳଗ୍ରାମ ଦେଲେ ସେ ତାକୁ ଫୁଲଚନ୍ଦନ ଦେଇ ପୂଜା କରିବ- ଏ ଆଶା

ଅନ୍ତତଃ ସର୍ବନିମ୍ନ ବିଚାରବୋଧ ଥିବା ମଣିଷ କରିବ ନାହିଁ।

ପରବର୍ତ୍ତୀ ପର୍ଯ୍ୟାୟମାନଙ୍କରେ ନାରୀ କ୍ରମେ ଆହୁରି ଅସୁରକ୍ଷିତ ହୋଇପଡ଼ିଛି। ଇତିହାସ, ପୁରାଣ, ଲୋକକଥା ଓ କାହାଣୀ କିମ୍ବଦନ୍ତୀମାନଙ୍କରେ ନାରୀକୁ ନେଇ ଯେତେ ପ୍ରକାର ଉଦ୍ଭଟ ପରିକଳ୍ପନା କରାଯାଇପାରେ, କରାଯାଇଛି। ଦେବତା, ଦାନବ, ମାନବ, ମୁନିଋଷି, ସଂସାର ତ୍ୟାଗୀ ସନ୍ନ୍ୟାସୀ - ସମସ୍ତଙ୍କ ପାଇଁ ନାରୀ ଉପଭୋଗର ବସ୍ତୁ ହୋଇଛି। ପରନାରୀ ଉପଭୋଗ କରିବାର ସର୍ବନିମ୍ନ ସୁଯୋଗ ଟିକକ କେହି ହାତଛଡ଼ା କରିନାହାଁନ୍ତି। କେଉଁଠି ବଳାତ୍କାରରେ ତ କେଉଁଠି ପ୍ରଲୋଭିତ କରି, ପୁଣି କେଉଁଠି ପ୍ରେମର ଅଭିନୟ କରି।

ଏବେ ନାରୀ ପୁରୁଷଙ୍କ ସମ୍ପର୍କ ବିସ୍ଫୋରକ ସ୍ଥିତିରେ ପହଞ୍ଚିଛି। ଯେଉଁ ଦୂରଦୃଷ୍ଟି ନେଇ ଶ୍ୱେତକେତୁ ସମାଜରେ ବିବାହ ଅନୁଷ୍ଠାନର ପରିକଳ୍ପନା କରିଥିଲେ, ତାହା ଆଜି ଅବକ୍ଷୟମୁଖୀ। ମଣିଷ ଭିତରେ ପୁଣି ସେଇ ଆଦିମତା କଡ଼ ଲେଉଟାଇଲାଣି। ଘରେ ସ୍ତ୍ରୀ ଥାଇ ପର ସ୍ତ୍ରୀ ପ୍ରତି ଅତିଶୟ ଆସକ୍ତି ପାରିବାରିକ ବିପର୍ଯ୍ୟୟର କାରଣ ହୋଇଛି। ବିବାହ ପ୍ରତି ନୂଆ ପିଢ଼ିର ଭରସା ରହୁନାହିଁ। ଲିଭ୍-ଇନ୍ ରିଲେସନସିପ୍ ସଭ୍ୟତା ମଣିଷର ଜାନ୍ତବ ପ୍ରବୃତ୍ତିକୁ ଆହୁରି ଅସଂସ୍କୃତ କରୁଛି। ଯେ କୌଣସି ଉତ୍ସବ ଅନୁଷ୍ଠାନ ପାଳନରେ ଆଦିମ ମଣିଷଙ୍କ ପରି ନାରୀ ପୁରୁଷଙ୍କ ଦଣ୍ଡ ନୃତ୍ୟ ହିଁ ହୋଇଛି ମୂଳକଥା। ପୁଣି ଖାଦ୍ୟ ପାନୀୟରେ ମଧ୍ୟ ସେଇ ବର୍ଣ୍ୟ ଆଦିମତା। ନେତା, ଅଭିନେତା, ସରକାରୀ ପଦାଧିକାରୀ, ସାମାଜିକ କର୍ମୀ, ପୁଲିସ ଓ ସୈନ୍ୟ ବିଭାଗର କର୍ମକର୍ତ୍ତାମାନଙ୍କୁ ସୁଦ୍ଧା ଯୌନ ବ୍ୟଭିଚାରରେ କଳଙ୍କିତ ହୋଇ ଉତ୍ତୁଙ୍ଗ ଆସନରୁ ଧୂଳିମାଟିରେ ଲୋଟିବା ପାଇଁ ଗୋଟାଏ ମୁହୂର୍ତ୍ତ ଲାଗୁନାହିଁ। ତଥାପି ଚେତା ପଶୁନାହିଁ। ଗୋଟିକ ପରେ ଗୋଟିଏ ଭିନ୍ନ ଭିନ୍ନ ଯୌନ ବ୍ୟଭିଚାରର ସମ୍ବାଦ ଖବରକାଗଜ ମାନଙ୍କର ପୃଷ୍ଠା ମଣ୍ଡନ କରୁଛି। ଧରା ପଡ଼ିଯିବା ଭୟରେ ଅପରାଦୀ ହତ୍ୟାକାଣ୍ଡ କରି ଚାଲିଛି।

ପଦାର୍ଥ ବିଜ୍ଞାନର ତତ୍ତ୍ୱ ଅନୁସାରେ ସୃଷ୍ଟିର ପ୍ରତ୍ୟେକ ବସ୍ତୁ ବିକ୍ଷିପ୍ତ ବିଶୃଙ୍ଖଳିତ ହେବାପାଇଁ ତତ୍ପର ହୋଇ ରହିଥାନ୍ତି। ସର୍ବନିମ୍ନ ସୁଯୋଗ ଟିକେ ପାଇଲେ ସେମାନେ ତା'ର ସଦୁପଯୋଗ କରନ୍ତି। ମନେ ହୁଏ, ମଣିଷର ପ୍ରବୃତ୍ତି ମଧ୍ୟ ଏଇ ପଦାର୍ଥ ବିଜ୍ଞାନର ଅନୁସାରୀ। ସାମାଜିକ ଶୃଙ୍ଖଳା ପାଇଁ ଯେତେ ଆଇନ୍‌କାନୁନ୍, ଅନୁଶାସନ, ଉପଦେଶ ଥିଲେ ସୁଦ୍ଧା ସେ ସହଜରେ ଆଦିମ ପ୍ରବୃତ୍ତିରୁ ମୁକ୍ତ ହୋଇପାରୁନାହିଁ। କୃଷ୍ଣ, ବୁଦ୍ଧ, ଯୀଶୁ, ମହମ୍ମଦ, ମହାତ୍ମାଗାନ୍ଧି, ବିବେକାନନ୍ଦଙ୍କ ପରି ଆଦର୍ଶ ମହାପୁରୁଷ ଆମକୁ

ଉତ୍ତମ ଜୀବନ ବଞ୍ଚିବାର କଳା କୌଶଳ ଶିଖାଇଛନ୍ତି। ଗଦାଗଦା ପୋଥି ପୁରାଣ, ଆଚାର ସଂହିତାରେ ଆମ ସାମାଜିକ ବିଧିବ୍ୟବସ୍ଥା ପାଇଁ ନିୟମମାନ ରହିଛି। ଈଶ୍ୱର ପ୍ରାଣୀମାନଙ୍କୁ ଶରୀର, ମନ ଓ ପ୍ରାଣ ଦେଇଛନ୍ତି। କିନ୍ତୁ ଆମକୁ ଏସବୁ ସହ ଦେଇଛନ୍ତି ମହାର୍ଘ ଆତ୍ମା। ଏଇ ସୂକ୍ଷ୍ମ ସତ୍ତା ମଣିଷକୁ ଉର୍ଦ୍ଧ୍ୱାୟିତ କରିବାପାଇଁ ସତତ ଚେଷ୍ଟିତ। ଆମକୁ ଉଚ୍ଚତମ ସୋପାନକୁ ନେଇଯିବା ତା'ର ଲକ୍ଷ୍ୟ। ସେଥିପାଇଁ ଆମେ ପ୍ରସ୍ତୁତ ହେବା ତ ନିହାତି ଜରୁରୀ। କିନ୍ତୁ ଆମେ ଆତ୍ମାକୁ ଅବମାନନା କରି ସେଇ ଆଦିମତାକୁ ସ୍ୱୀକାର କରୁଛୁ। ଅତି ଗୁଡ଼ାଏ ଖୁସି ହୋଇଗଲେ ଆମ ପ୍ରବୃତ୍ତିକୁ ଆମେ କାବୁରେ ରଖିପାରୁ ନାହୁଁ। ଆମକୁ ଦରକାର ହେଉଛି ପ୍ରଚୁର ଖାଦ୍ୟ, ପାନୀୟ, ସମ୍ଭୋଗ। ଏଥିରେ କୌଣସି ଶାଳୀନତା ରହୁନାହିଁ, ଯାହା ଆମକୁ ଅନେକ ଜଟିଳ ସମସ୍ୟା ଭିତରକୁ ଠେଲି ଦେଉଛି। ଏବେ ନୂଆବର୍ଷ ପାଳନ ଅବସରରେ ଭାରତ ସମେତ ସମଗ୍ର ବିଶ୍ୱରେ ଯେଉଁସବୁ ଲଜ୍ଜାଜନକ ପରିସ୍ଥିତି ସୃଷ୍ଟି ହୋଇଛି ଓ ଆମ ନେତୃସ୍ଥାନୀୟ ବ୍ୟକ୍ତି ଯେଉଁସବୁ ଦାୟିତ୍ୱହୀନ ମନ୍ତବ୍ୟ ଦେଇଛନ୍ତି, ତାହା ଅତ୍ୟନ୍ତ କ୍ଷୋଭଦାୟକ। ରାଜରାସ୍ତାରେ ପୂର୍ବାପେକ୍ଷା ମହିଳାମାନେ ଆହୁରି ଅସୁରକ୍ଷିତ ହୋଇ ପଡୁଛନ୍ତି। ଏ ଆଦିମ ପ୍ରବୃତ୍ତିର ସରୀସୃପ କବଳରୁ ଆମେ କ'ଣ ମୁକ୍ତ ହେବା ନାହିଁ ?



# ଅଜବ ଗୁଜବ

ଉଚ୍ଛୃଙ୍ଖଳ ଯଦୁବଂଶୀଙ୍କ ଦୁରାଚାର ଓ ଦୌରାତ୍ମ୍ୟରେ ନିଜକୁ ଅତ୍ୟନ୍ତ ଅସହାୟ ମଣିଥିଲେ ଶ୍ରୀକୃଷ୍ଣ। ଦୁଷ୍କୃତମାନଙ୍କୁ ବିନାଶ କରିବା ପାଇଁ ସେ ଧରାଧାମରେ ଅବତରଣ କରିଥିଲେ। କିନ୍ତୁ ଆତ୍ମୀୟସ୍ୱଜନଙ୍କୁ ନିପାତ କରିବା କ'ଣ ଏତେ ସହଜ କଥା ? ଗଭୀର ମନସ୍ତାପ ମଧ୍ୟରେ ଗୋଟାଏ ଅଭିନବ ଉପାୟରେ ସେ ଏହି ଦୁରୂହ କାର୍ଯ୍ୟଟି ସମ୍ପନ୍ନ କରିଥିଲେ। କୋକୁଆ ବୋଲି ଏକ ଭୟଙ୍କର ଜୀବ ଦ୍ୱାରିକାକୁ ଆସିଛି। ଯଦୁବଂଶୀମାନେ ତା'ଠାରୁ ସତର୍କ ରହିବାକୁ ସେ ଉଦ୍ଧବ ହାତରେ ସମ୍ବାଦଟିଏ ପଠାଇ ଦେଇଥିଲେ ସେମାନଙ୍କ ପାଖକୁ। ବାସ୍,ଏତିକି ହିଁ କଥା। ଉଦ୍ଧବଙ୍କ ମୁହଁରୁ କଥାଟି ବାହାରି ସର୍ବଶେଷ ଯଦୁବଂଶୀଟି ପାଖରେ ପହଞ୍ଚିଲା ବେଳକୁ କୋକୁଆର ରୂପରେଖ ଏମିତି କିମ୍ଭୂତକିମାକାର ହୋଇ ଯାଇଥିଲା ଯେ ଶ୍ରୀକୃଷ୍ଣ ମଧ୍ୟ ନିଜେ କଳ୍ପନା କରି ପାରିନଥିଲେ ସେକଥା ! ଶେଷରେ ପରସ୍ପରକୁ କୋକୁଆ ବୋଲି ସନ୍ଦେହ କରି, ପରସ୍ପର ଭିତରେ ବାଡ଼ିଆପିଟା ହୋଇ ଯଦୁବଂଶୀମାନେ ଧ୍ୱଂସ ହୋଇଥିଲେ। କୋକୁଆ ଯେ ଶ୍ରୀକୃଷ୍ଣଙ୍କର ସମ୍ପୂର୍ଣ୍ଣ କପୋଳକଳ୍ପିତ ଥିଲା, ଏକଥା ତନଖିବା ପାଇଁ ଜଣେ ବି ଜୀବିତ ନଥିଲେ।

ଗୁଜବର ସତ୍ୟାସତ୍ୟ ପରୀକ୍ଷା ନିରୀକ୍ଷା ନକରି ସେଥିରେ ମାତିଗଲେ ପରିଣତି କିପରି ଭୟାବହ ହୁଏ, ଉପରୋକ୍ତ ଘଟଣାଠାରୁ ବଳି ତା'ର ବଡ଼ ଉଦାହରଣ ବୋଧହୁଏ ବିଶ୍ୱ ସାହିତ୍ୟରେ ଅନ୍ୟତ୍ର ନାହିଁ। ଆମେ ଆମ ପୁରାଣ ଇତିହାସକୁ ନେଇ ଅନେକ ଗର୍ବ କରୁ। ଯାହା ନାହିଁ ଭାରତେ, ତାହା ନାହିଁ ମରତେ (ବିଶ୍ୱରେ) ବୋଲି କହୁ। କିନ୍ତୁ ସେଇ ଗ୍ରନ୍ଥମାନଙ୍କରେ ଜୀବନ ପାଇଁ ଯେଉଁ ପ୍ରେରଣାପ୍ରଦ ଆଖ୍ୟାନ, ଉପାଖ୍ୟାନମାନ ଅଛି, ସେଗୁଡ଼ିକୁ କେବଳ ମନୋରଞ୍ଜନ ଉଦ୍ଦେଶ୍ୟରେ ଉପଯୋଗ କରୁ। ଆମ ପାଇଁ ସତ୍ୟ ଅପେକ୍ଷା ଗୁଜବ ଅଧିକ ରୋଚକ। ସତ୍ୟ ଆମ ଜୀବନକୁ ସେତେ ବେଶୀ ପ୍ରଭାବିତ କରେନାହିଁ, ଯେତିକି କରେ ଗୁଜବ। ଏହା କେବଳ ଆମ ଲୋକଙ୍କ କଥା ନୁହେଁ, ସମଗ୍ର ମଣିଷ ଜାତିର ଏହା ସ୍ୱଭାବ।

ସ୍ୱିଡେନ୍‌ର ସୋସିଆଲ୍ ମିଡ଼ିଆରେ ସମ୍ବାଦଟିଏ ଭାଇରାଲ ହୋଇ ପ୍ରଳୟ ସୃଷ୍ଟି କରିଥିଲା। କୌଣସି କାରଣବଶତଃ ସ୍ୱିଡେନ୍‌ରେ ଖ୍ରୀଷ୍ଟମାସ ବେଳେ ସହରରେ ଆଲୋକ ସଜ୍ଜା ହୋଇପାରିଲା ନାହିଁ। ସୋସିଆଲ ମିଡ଼ିଆଦ୍ୱାରା ବାର୍ତ୍ତା ପ୍ରସରି ଗଲା ଯେ ମୁସଲିମ୍‌ମାନେ ଖ୍ରୀଷ୍ଟମାସର ଆଲୋକ ସଜ୍ଜାରେ ଉତ୍ତ୍ୟକ୍ତ ହୋଇଯିବା ଆଶଙ୍କାରେ ସରକାରଙ୍କ ତରଫରୁ ଏହି ପଦକ୍ଷେପ ନିଆଯାଇଛି। ତା'ପରେ ଆରମ୍ଭ ହୋଇଗଲା ସାମ୍ପ୍ରଦାୟିକ ଅସନ୍ତୋଷ; ଆକ୍ରମଣ ଓ ପ୍ରତିଆକ୍ରମଣ। ପ୍ରଳୟ ଅନ୍ତେ ହିଁ ଜଣା ପଡ଼ିଲା ଯେ ଯାନ୍ତ୍ରିକ ତ୍ରୁଟି ହେତୁ ଖ୍ରୀଷ୍ଟମାସର ଆଲୋକ ସଜ୍ଜା ହୋଇ ପାରିନଥିଲା। ଏଥିରେ ଅନ୍ୟ କୌଣସି ଉଦ୍ଦେଶ୍ୟ ଅଥବା ଅଭିସନ୍ଧି ସରକାରଙ୍କର ନଥିଲା।

କୌଣସି ସକରାତ୍ମକ ବାର୍ତ୍ତା ଜନତାଙ୍କ ପାଖରେ ପହଞ୍ଚାଇବା ପାଇଁ ପ୍ରୟାସ କରିବାକୁ ପଡ଼େ। ଧନ ଜନ, ବିଦ୍ୟା ବୁଦ୍ଧି ପ୍ରୟୋଗ କରିବାକୁ ପଡ଼େ। କିନ୍ତୁ ଗୁଜବ ଅଥବା ନକରାତ୍ମକ ସମ୍ବାଦର ଡେଣା ଥାଏ। ସେ ଆପେ ଆପେ ଉଡ଼ିଯାଏ ଓ ରାସ୍ତାସାରା ନିଜକୁ ପରିପୁଷ୍ଟ କରୁଥାଏ। ସେଥିପାଇଁ ତାକୁ ସାହାଯ୍ୟ ସହଯୋଗ କରିବା ଲୋକର ମଧ୍ୟ ଅଭାବ ନଥାଏ। ମଣିଷର ଏ ସ୍ୱଭାବକୁ ସୁନ୍ଦର ବିଶ୍ଳେଷଣ କରିଛନ୍ତି ଗାଳ୍ପିକ ମନୋଜ ଦାସ ତାଙ୍କର ଏକ ଗଳ୍ପରେ। ଏକ ଜନପଦରେ ସମ୍ବାଦଟିଏ ରଟିଗଲା ଯେ ଜନପଦର ପ୍ରସିଦ୍ଧ ଅଭିନେତ୍ରୀ ଦିବସର ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ଗୃହର ଛାତ ଉପରେ ଉଲଗ୍ନ ହୋଇ ଜନତାଙ୍କୁ ଦର୍ଶନ ଦେବେ। ସମ୍ବାଦଟି କାହା ମୁଖରୁ କେମିତି ପ୍ରଚାର ହେଲା ଜଣା ନାହିଁ, କିନ୍ତୁ ସେହି ସମୟରେ ଜନପଦର ଜନତା ତାଙ୍କ ବାସଗୃହ ନିକଟରେ ଏକତ୍ରିତ ହେଲେ। ଅଭିନେତ୍ରୀ ଜଣକ କୋଳାହଳର କାରଣ ଅବଗତ ହୁଅନ୍ତେ କ୍ଷୁବ୍ଧ ଓ ବ୍ୟଥିତ ହୋଇ ପଡ଼ିଲେ। ଅବଶେଷରେ ଛାତ ଉପରେ ଉପସ୍ଥିତ ହୋଇ ଜନତାଙ୍କ ଉଦ୍ଦେଶ୍ୟରେ କହିଲେ- ଯେଉଁ ସମ୍ବାଦ ପ୍ରଚାର ହୋଇଛି, ତାହା ସତ୍ୟ ନୁହେଁ, ଗୁଜବ। ତଥାପି ସେ ସମବେତ ଜନତାଙ୍କୁ ନିରାଶ କରିବେ ନାହିଁ। ସେ ତାଙ୍କ ଶରୀରରୁ ଉତ୍ତରୀୟ ଖଣ୍ଡକ ଉଠାଇବା ମାତ୍ରେ ଦେଖଣାହାରୀ ଲଜ୍ଜା, ସଂକୋଚ ଓ ପଶ୍ଚାତ୍ତାପରେ ମୁହଁ ପୋତି ଯେ ଯାହା ରାସ୍ତାରେ ଚାଲିଗଲେ। କଳ୍ପ ଜଗତରେ ଯେଉଁ ବାସନାଟି ଥାଏ, ତା'ର ବାସ୍ତବ ରୂପ କେତେ କଠୋର, ତାହା ଏ ଗଳ୍ପରେ ସୁନ୍ଦର ଭାବେ ପ୍ରଦର୍ଶିତ ହୋଇଛି।

କୁହାଯାଏ, ସତ୍ୟଠୁ ମିଥ୍ୟା ବା ଗୁଜବର ଦୂରତ୍ୱ ମାତ୍ର ଚାରି ଆଙ୍ଗୁଳି। ଆମେ ଯାହା ଆଖିରେ ଦେଖୁ, ତାହା ସତ୍ୟ। ଯାହା କାନରେ ଶୁଣୁ, ତାହା ସତ୍ୟ ହୋଇପାରେ,

ମିଥ୍ୟା ବି ହୋଇପାରେ। ଯାହା ନ ଦେଖିବ ବେନି ନୟନେ, ପରତେ ନଯିବ ଗୁରୁ ବଚନେ। କିନ୍ତୁ ଏବେ ଆମେ ଯେଉଁ ଯୁଗରେ ପହଞ୍ଚିଛୁ, ଏଠି ଆଖି କାନ ସବୁ ସମାନ। କିଛିଦିନ ତଳେ ସୋସିଆଲ୍ ମିଡ଼ିଆରେ ଆସିଥିଲା ଫଟୋଟିଏ। ଜଣେ ପାର୍ସୀ ମହିଳା ଏକା ଥରକେ ୧୧ଟି ଶିଶୁ ଜନ୍ମ କରିଛନ୍ତି। କ୍ରମକ୍ଷୟିଷ୍ଣୁ ପାର୍ସୀମାନେ ଏ ସମ୍ବାଦ ପାଇ ମହିଳାଙ୍କୁ ଓ ହସ୍‌ପିଟାଲ୍‌କୁ ପୁରସ୍କୃତ କରିବାକୁ ଚାହିଁଲେ। କିନ୍ତୁ ଏ ମହିଳା ଓ ହସ୍‌ପିଟାଲକୁ ସେମାନେ ଖୋଜି ପାଇଲେ ନାହିଁ। ପ୍ରକୃତରେ ଫଟୋଟି ଥିଲା ଗୁଜରାଟସ୍ଥିତ ସୁରଟ ସହରର ଏକ ହସ୍ପିଟାଲ୍‌ରେ ଏ ଶତାବ୍ଦୀର ୧୧.୧୧.୧୧ ମସିହାରେ ଜନ୍ମ ହୋଇଥିବା ୧୧ ଜଣ ଟେଷ୍ଟଟ୍ୟୁବ୍ ଶିଶୁଙ୍କର।

ଦିଲ୍ଲୀ ପୁଲିସ ଓ ଏନ୍‌ଡିଟିଭି କୌଣସି ପ୍ରକାର ମୃଦୁ ପାନୀୟ ଫ୍ରୁଟି ନ ପିଇବା ପାଇଁ ସୂଚନା ଦେଇଛନ୍ତି ବୋଲି ଥରେ ସମ୍ବାଦଟିଏ ସୋସିଆଲ ମିଡ଼ିଆରେ ଖେଳି ବୁଲିଲା। ଭୟରେ କେତେଦିନ ପର୍ଯ୍ୟନ୍ତ ଫ୍ରୁଟି ବିକାକିଣା ବନ୍ଦ ମଧ୍ୟ ହୋଇଗଲା। କାରଣ ଭାବରେ କୁହାଯାଇଥିଲା, ଫ୍ରୁଟି କାରଖାନାରେ କାମ କରୁଥିବା ଜଣେ ଏଡ୍‌ସ ରୋଗୀର ରକ୍ତ ଫ୍ରୁଟିରେ ସଂକ୍ରମିତ ହୋଇଛି। କିନ୍ତୁ ଦିଲ୍ଲୀ ପୁଲିସ ଓ ଏନ୍‌ଡ଼ିଟିଭି ଏମିତି କିଛି ସୂଚନା ଦେଇଥିବା କଥାକୁ ଅସ୍ୱୀକାର କଲେ। ସବୁଠୁ ମଜାକଥା ହେଲା, ଆମେ ସମସ୍ତେ ଜାଣିଛେ ଯେ ଖାଦ୍ୟ ଜରିଆରେ ଏଡ୍‌ସ୍ ଜୀବାଣୁ ବ୍ୟାପେ ନାହିଁ। ତଥାପି କାଉ କାନ ନେଇଗଲା ଶୁଣି ଆମେ କାନକୁ ନ ଦେଖି କାଉ ପଛରେ ଧାଉଁ।

ଫେବ୍ରୁଆରୀ ୧୪ ତାରିଖ, ଭାଲେଣ୍ଟାଇନ୍ ଦିବସକୁ ବିରୋଧ କରି କେତେକ ସମ୍ପ୍ରଦାୟ ଏହି ଦିନ ଭଗତ୍ ସିଂ ଫାଶୀ ପାଇଥିଲେ, ତେଣୁ ଏ ଦିନଟିକୁ ଏମିତି ମଜା ମଜଲିସ୍‌ରେ ନ କାଟିବାକୁ ନିର୍ଦ୍ଦେଶ ଦିଅନ୍ତି। କିନ୍ତୁ ଗୋଟାଏ ସୁଅରେ ମାତି ଭଗତ୍ ସିଂଙ୍କ ଫାଶୀ ଦିବସ ଯେ ଫେବ୍ରୁଆରୀ ୧୪ ନୁହେଁ, ୧୯୩୧ ମସିହା ମାର୍ଚ୍ଚ ୩୧, ସେକଥା କେହି ବିଚାରକୁ ନିଅନ୍ତି ନାହିଁ।

ବିଦେଶୀ ରାଷ୍ଟ୍ରମାନଙ୍କରେ ମଧ୍ୟ ଭାରତ ସମ୍ପର୍କରେ ଗୁଡ଼ାଏ ଅଜବ ପ୍ରଚାର ହୋଇଥାଏ। କିଛିଦିନ ତଳେ ଯୁକ୍ତରାଷ୍ଟ୍ର ଆମେରିକାର ସମ୍ବାଦ ସରବରାହ ସଂସ୍ଥା ନ୍ୟାସନାଲ୍ ରିପୋର୍ଟରେ ପ୍ରକାଶିତ ହେଲା, ଆସନ୍ତା ସପ୍ତାହରେ ଆସାମରେ ପାଳିତ ହେବ ବାର୍ଷିକ ରେପ୍ ଫେଷ୍ଟିଭାଲ୍ (ଦୁଷ୍କର୍ମ ଉତ୍ସବ) ଯେଉଁଥିରେ ସାତବର୍ଷରୁ ସତର ବର୍ଷର ଅବିବାହିତ କନ୍ୟାମାନଙ୍କୁ ମୁକ୍ତ ଭାବରେ ଦୁଷ୍କର୍ମ କରାଯାଏ। ଏହା ଥିଲା ସମ୍ପୂର୍ଣ୍ଣ ମିଥ୍ୟା ଓ କପୋଳକଳ୍ପିତ। ଜଣେ ଆମେରିକୀୟ ସ୍ୱାମୀ ବିବେକନନ୍ଦଙ୍କୁ ଭାରତରେ

କନ୍ୟା ଶିଶୁମାନଙ୍କୁ କୁମ୍ଭୀରକୁ କାହିଁକି ଖାଇବାକୁ ଦିଆଯାଏ ବୋଲି ପ୍ରଶ୍ନଟିଏ କରିଥିଲେ। ଏଥିରେ ବ୍ୟଥିତ ହେଲେ ବି ବିବେକାନନ୍ଦ ପରିହାସ କରି କହିଥିଲେ ଝିଅମାନଙ୍କ ଶରୀର ନରମ। ତେଣୁ କୁମ୍ଭୀରକୁ ଖାଇବା ପାଇଁ କଷ୍ଟ ହେବନାହିଁ ବୋଲି ସେମାନଙ୍କୁ ନଦୀକୁ ଫିଙ୍ଗା ଯାଏ। ଭଦ୍ରବ୍ୟକ୍ତି ବିବେକାନନ୍ଦଙ୍କ ଉତ୍ତରରେ ସେଠାରୁ ପଳାୟନ କରିବା ପାଇଁ ରାସ୍ତା ପାଇ ନଥିଲେ। ଏବେ ଜଗନ୍ନାଥଙ୍କ ମନ୍ଦିରରେ ଆମିଷ ରନ୍ଧନ ସମ୍ବାଦ ପ୍ରସାର କଥା ସମସ୍ତଙ୍କର ମନେ ଥିବ।

ପ୍ରଧାନମନ୍ତ୍ରୀଙ୍କ ନିର୍ଦ୍ଦେଶରେ ଆମ ଦେଶରେ ପାଞ୍ଚଶହ ଓ ହଜାରେ ଟଙ୍କିଆ ନୋଟ୍ ଅଚଳ ହୋଇଯିବା ପରେ ଯେପରି ଅଜବ ଗୁଜବ ସବୁ ପ୍ରଚାରିତ ହେଲା, ଆମେ ସବୁ ତା'ର ଭୁକ୍ତଭୋଗୀ। ଏବେ ସୁଦ୍ଧା ଦଶଟଙ୍କିଆ ମୁଦ୍ରାକୁ ଅଧିକାଂଶ ଲୋକ ଗ୍ରହଣ କରୁନାହାନ୍ତି। ପୁଣି ଦୁଇହଜାର ଟଙ୍କିଆ ନୋଟ୍‌ରେ ଚିପ୍ ଥିବା ଓ ଯେଉଁଠି ଥିଲେ ବି ସ୍ୟାଟେଲାଇଟ୍ ତା'ର ସନ୍ଧାନ ଦେବା ପରି ଅଜବ ଖବର ସବୁ ଗଣମାଧ୍ୟମରେ ପ୍ରସାରିତ ହେଲା। ଶେଷରେ ରିଜର୍ଭ୍ ବ୍ୟାଙ୍କ୍‌ର ଗଭର୍ଣ୍ଣର ଏସବୁ ଗୁଜବକୁ ଖଣ୍ଡନ କଲେ।

ଏବେ ସୋସିଆଲ୍ ମିଡ଼ିଆର ଯୁଗ। ସତ୍ୟ ହେଉ କି ଗୁଜବ, ସମ୍ବାଦଟିଏ ବିଶ୍ୱର କୋଣ ଅନୁକୋଣକୁ ପହଞ୍ଚିବାକୁ ମୁହୂର୍ତ୍ତେ ବି ଲାଗୁନାହିଁ। ତା' ସହ ଆହୁରି ଗୋଟିଏ କଥା। ଆମକୁ ହେଜିବାକୁ ପଡ଼ିବ ଯେ ମଣିଷ ଏକମାତ୍ର ଜୀବ ଯାହାର ବିଚାର ଶକ୍ତି ଅଛି, ମନନଶୀଳତା ଅଛି, ବିଶ୍ଳେଷଣ କରିବାର ସାମର୍ଥ୍ୟ ଅଛି। କୌଣସି ତଥ୍ୟରେ ବିଭ୍ରାନ୍ତ ହେବା ପୂର୍ବରୁ ତାହାର ସତ୍ୟାସତ୍ୟ ତର୍ଜମା କରିବାର ଆବଶ୍ୟକତା ରହିଛି। ପୁଣି ଶ୍ରୀକୃଷ୍ଣ ଏକ ମହତ ଉଦ୍ଦେଶ୍ୟ ନେଇ କୋକୁଆ ଭୟ ସୃଷ୍ଟି କରିଥିଲେ। କିନ୍ତୁ ଆମେ କେବଳ ମନୋରଞ୍ଜନ ପାଇଁ ଅନ୍ୟକୁ ବୋକା ବନେଇବା ଅଥବା ଭୟଭୀତ କରିବା ପାଇଁ କାଳ୍ପନିକ ତଥ୍ୟମାନ ପରିବେଷଣ କରୁଛୁ। ଯୁଗପୁରୁଷ ଶ୍ରୀକୃଷ୍ଣଙ୍କ ପରି ଆମ ଉଦ୍ଦେଶ୍ୟ ମହତ ନୁହେଁ। ଆମେ ଯାହାକୁ ଖେଳ କହୁଛୁ, ତାହା ଅନ୍ୟମାନଙ୍କ ପାଇଁ କାଳ ହୋଇ ପଡୁଛି। ଅନ୍ୟର ଚିନ୍ତାଶକ୍ତିକୁ ବିଭ୍ରାଟ କରିବାର ନୈତିକ ଅଧିକାର କାହାର ନାହିଁ।



# ମାତୃ ଆବାହନୀ

ମାଆ ଆସିଛନ୍ତି ଧରାଧାମକୁ। ତାଙ୍କ ଆଗମନୀରେ ମହକି ଉଠୁଛି ପ୍ରକୃତି; ତାଙ୍କ ଆବାହନୀ ପାଇଁ କେତେ ନା କେତେ ସାଜସଜ୍ଜା। ଭକ୍ତିର ଅର୍ଘ୍ୟ, ଭାବର ପୁଷ୍ପ, ଭାବନାର ନୈବେଦ୍ୟ, ଆବେଗର ଦୀପାଳି ଜାଳି ଧରାବାସୀ ତାଙ୍କୁ ସ୍ୱାଗତ କରୁଛନ୍ତି; ତାଙ୍କର ଆଶୀର୍ବାଦ ଭିକ୍ଷା କରୁଛନ୍ତି। ବିଭିନ୍ନ ଉପାଦାନରେ ମହାମାୟାଙ୍କୁ ପରିତୃପ୍ତ କରିବାପାଇଁ ଆବାଳ ବୃଦ୍ଧବନିତା ବ୍ୟଗ୍ର। ସିଂହବାହିନୀ ମା' ଦୁର୍ଗା ଆସିଥିଲେ ଅଧର୍ମ ଉପରେ ଧର୍ମର, ଅସତ୍ୟ ଉପରେ ସତ୍ୟର ସଂସ୍ଥାପନା ପାଇଁ। ମଣିଷ ଭିତରେ ଥିବା ପାଶବିକ ପ୍ରବୃତ୍ତିକୁ, ଆସୁରିକ ଅସ୍ପର୍ଦ୍ଧାକୁ ଚୂର୍ଣ୍ଣୀଭୂତ କରି ଧରାଧାମରେ ମାନବିକତାର ପ୍ରତିଷ୍ଠା ପାଇଁ। ତା' ଭିତରେ ଥିବା ଦୈତ୍ୟ ପ୍ରବୃତ୍ତିକୁ ପରାଭବ ଦେଇ ଦୈବୀଗୁଣକୁ ପ୍ରଖ୍ୟାପନ କରିବା ପାଇଁ। ଏବେ ଆସିଛନ୍ତି ରାଜରାଜେଶ୍ୱରୀ ମା' ମହାଲକ୍ଷ୍ମୀ। ସେ ଆସିଛନ୍ତି ଗଜ ବାହନରେ - ସୁଖ, ଶାନ୍ତି, ସ୍ଥୈର୍ଯ୍ୟ ଓ ଐଶ୍ୱର୍ଯ୍ୟର ପ୍ରତୀକ ହୋଇ; ଧନଧାନ୍ୟ ଗୋପଲକ୍ଷ୍ମୀର ପ୍ରତିଶ୍ରୁତି ନେଇ। ତା'ପରେ ଆସିବେ ମା' ମହାକାଳୀ ଅଜ୍ଞାନ ମଣିଷର ଅହଙ୍କାରକୁ ଖଣ୍ଡ ବିଖଣ୍ଡିତ କରିବପାଇଁ। ମହାଳୟାଠାରୁ ମହାଦୀପାବଳି ପର୍ଯ୍ୟନ୍ତ ମର୍ତ୍ତ୍ୟଭୂମିରେ ମା'ଙ୍କର ବିଭିନ୍ନ ଭାବ ଐଶ୍ୱର୍ଯ୍ୟ ପରିବ୍ୟାପ୍ତ ହୋଇପଡ଼େ। ମହିମା ମଣ୍ଡିତ ହୁଏ ମହୀ।

ଆମ ପୁରାଣ ଶାସ୍ତ୍ର କୁହେ - ମହିଷାସୁରକୁ ବଧ କରିବା ପାଇଁ ମହାମାୟୀ ଦୁର୍ଗାଙ୍କୁ ଅନେକ କଷ୍ଟ ସ୍ୱୀକାର କରିବାକୁ ହୋଇଥିଲା। ଦେବଗଣମାନେ ତାଙ୍କୁ ବିଭିନ୍ନ ପ୍ରକାର ଅସ୍ତ୍ରଶସ୍ତ୍ର ପ୍ରଦାନ କରିଥିଲେ ସତ, କିନ୍ତୁ ଦୁର୍ଦ୍ଧର୍ଷ ମହିଷାସୁରକୁ ବଧ କରିବାପାଇଁ ତାହା ଯଥେଷ୍ଟ ନଥିଲା। ଶେଷରେ ଦୁର୍ଗାଙ୍କୁ ଆଉ ଏକ ଭିନ୍ନ ଅମୋଘ ଅସ୍ତ୍ରର ପ୍ରୟୋଗ କରିବାକୁ ହୋଇଥିଲା। ତାକୁ ଜାନୁ ଯୌବନ ପ୍ରଦର୍ଶନ କରି ତା'ର ଇନ୍ଦ୍ରିୟମାନଙ୍କୁ ବିବଶ କରିବାକୁ ପଡ଼ିଥିଲା। ନିଷ୍ପ୍ରଭ ହୋଇ ଥିଲା ଦୈତ୍ୟ। ତେବେ ଯାଇଁ ତାକୁ ବଧ କରିବା ସମ୍ଭବ ହୋଇଥିଲା। ପ୍ରତ୍ୟେକ ପୌରାଣିକ ଆଖ୍ୟାନ ମୂଳରେ ସାଙ୍କେତିକ ସ୍ୱରୂପଟିଏ ବିଦ୍ୟମାନ ଥାଏ। ତାକୁ ଖୋଜିଲୋଡ଼ି ଆମ ଜୀବନ ବିକାଶରେ ତା'ର ପ୍ରୟୋଗ କରିବା ହେଉଛି ବଡ଼କଥା।

ଯିଏ ଯେତେ ଶକ୍ତିଶାଳୀ ହୋଇଥାଉ ନା କାହିଁକି, ଇନ୍ଦ୍ରିୟମାନଙ୍କୁ ନିଜ ନିୟନ୍ତ୍ରଣରେ

ରଖି ନ ପାରିଲେ ତା'ର ଧ୍ୱଂସ ଅନିବାର୍ଯ୍ୟ। ସେହି କାରଣରୁ ଧ୍ୱଂସ ପାଇଲା ମହିଷାସୁର। ଦେବତାମାନେ ଆଶ୍ୱସ୍ତ ହେଲେ। ଧରାଧାମରେ ଶାନ୍ତି ବିରାଜମାନ ହେଲା। କିନ୍ତୁ ନାରୀର ନିଷ୍କୃତି କାହିଁ? ସମାଜ କଲ୍ୟାଣ ପାଇଁ କାୟମନୋବାକ୍ୟରେ ନିଜକୁ ତିଳ ତିଳ କରି ନିଃଶେଷ କଲେ ସୁଦ୍ଧା ତଥାପି ତା'ର ଚରିତ୍ରକୁ, ତା'ର ପବିତ୍ରତାକୁ, ତା'ର ଆଚରଣକୁ, ତା'ର ମୁକ୍ତ ବିହାରକୁ ଅଙ୍ଗୁଳି ନିର୍ଦ୍ଦେଶ କରେ ପୁରୁଷ ସମାଜ। ତାକୁ ଆକ୍ଷେପ କରେ, ଉପହାସ କରେ, ତୁଚ୍ଛ ତାଚ୍ଛଲ୍ୟ କରେ। ଏସବୁ ତ ପୁରୁଷର ପ୍ରବୃତ୍ତି। ଦେବତାମାନେ ସୁଦ୍ଧା ଏଥିରୁ ବାଦ୍ ପଡ଼ି ନାହାଁନ୍ତି। ସଙ୍କଟତାରିଣୀ ରୂପେ ପୁରୁଷର ସବୁ ବିପଦ ବେଳେ କଂସା କବାଟ ହୋଇ ଠିଆ ହୋଇଥିବା ନାରୀଟିକୁ ପୁରୁଷ ଶତଜିହ୍ୱ ହୋଇ ସମାଲୋଚନା କରିବା ପରି ଅକୃତଜ୍ଞ ଦେବତାମାନେ ବି ଓଲଟି ପଡ଼ିଲେ। ଅଭୟ ପ୍ରଦାୟିନୀ ଦୁର୍ଗାଙ୍କ ସାହାଯ୍ୟ ସହାୟତା କଥା ବିସ୍ମୃତ ହୋଇଗଲେ। ଜାନୁ ଯୌବନ ପ୍ରଦର୍ଶନ କରି ମହିଷାସୁରକୁ ବଧ କରିଥିବାରୁ ତାଙ୍କୁ ତୁଚ୍ଛ ତାଚ୍ଛଲ୍ୟ କଲେ; ନିନ୍ଦା ଅପବାଦ କଲେ। ଆଘାତପ୍ରାପ୍ତ ହେଲା ନାରୀର ସ୍ୱାଭିମାନ। ସବୁ ପ୍ରକାର ଉଚ୍ଛୃଙ୍ଖଳତାକୁ ନିଜର ଗୌରବ ବୋଲି ଭାବୁଥିବା, ନାରୀକୁ ନିଜର ଶାସନ ଶୃଙ୍ଖଳ ଭିତରେ ରଖୁଥିବା ଓ ତା' ପାଇଁ ଅସଂଖ୍ୟ ଅନୁଶାସନ ସୃଷ୍ଟି କରୁଥିବା ପୁରୁଷ ସମାଜକୁ ପୁଣି ଏକ ଶିକ୍ଷା ଦେବା ପାଇଁ ସେ ସର୍ବସଂହାରିଣୀ ରୂପ ଧାରଣ କଲେ। ଏଥର କେବଳ ମହିଷାସୁର ନୁହେଁ, ପୁରୁଷର ଅହଂକାରକୁ ଚୂର୍ଣ୍ଣବିଚୂର୍ଣ୍ଣ କରିବାକୁ ହେବ। ଆଉ ନିସ୍ତାର ନାହିଁ। ସେଇ ଉଲଗ୍ନ ବେଶରେ ସେ ଆରମ୍ଭ କରିଦେଲେ ତାଣ୍ଡବ ଲୀଳା। ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଥରହର ହେଲା। କିଏ ଶାନ୍ତ କରିବ ମହାମାୟା ଦୁର୍ଗାଙ୍କର ଏ ମହାଭୈରବତ୍ୱକୁ? ମହାକାଳୀ ରୂପରେ ତାଙ୍କର ଧ୍ୱଂସ ଅବତାରକୁ? ଶେଷରେ ସମୁଦ୍ର ମନ୍ଥନରୁ ଉଦ୍‌ଭୂତ ହଳାହଳ ବିଷକୁ ଅନ୍ତସ୍ଥ କରି ବିଶ୍ୱକୁ ଅଭୟ ପ୍ରଦାନ କରିଥିବା ଶିବଙ୍କୁ ଆବାହନ କରାଗଲା। ସିଏ କ୍ରୋଧ ଜର୍ଜରିତା ମହାକାଳୀଙ୍କ ଗତିପଥକୁ ଅବରୋଧ ଉଦ୍ଦେଶ୍ୟରେ ଉର୍ଦ୍ଧ୍ୱମୁଖା ହୋଇ ଶୟନ କରିଗଲେ ଭୂମିରେ। ଦେବୀଙ୍କ ଅସତର୍କ ଉଦ୍ଦଣ୍ଡ ପାଦ ପଡ଼ିଗଲା ତାଙ୍କ ବକ୍ଷଦେଶରେ। ଜିହ୍ୱା କାମୁଡ଼ି ନିଜକୁ ନିୟନ୍ତ୍ରଣ କଲେ ଦେବୀ। କ୍ଷମା କରିଦେଲେ ଅକୃତଜ୍ଞ ଦେବପୁରୁଷମାନଙ୍କୁ।

ମାଆ ତ ସବୁବେଳେ କ୍ଷମାମୟୀ। ତା' ପ୍ରତି ଯେତେ ଅବହେଳା, ଅନାଦର, ଅନ୍ୟାୟ ଆଚରଣ କଲେ ସୁଦ୍ଧା ତା'ର ଆଶୀର୍ବାଦ ଧାରା ସଦାସର୍ବଦା ତା' ସନ୍ତାନମାନଙ୍କ ପାଇଁ ଅବାରିତ ଥାଏ। ଓଡ଼ିଶାର କେତେକ ଅଞ୍ଚଳରେ ଝିଅମାନେ ମାଆଙ୍କୁ ଦଣ୍ଡବତ ହେବା ମନା। କି କାରଣ ଏ ପରମ୍ପରା ମୂଳରେ? ବରଦାୟିନୀ ଅଭୟ ପ୍ରଦାୟିନୀ କଲ୍ୟାଣମୟୀ ମାଆ ତ ଅହରହ ସନ୍ତାନର ଶୁଭ ମନାସୁ ଥାଏ। ତାକୁ ମୁଣ୍ଡିଆ ମାରି ତା'ର ଆଶୀର୍ବାଦ ଭିକ୍ଷା କରିବା ମା'ର ମାତୃ ଭାବନାକୁ ଅବମାନନା ନୁହେଁ କି?

କେତେବେଳେ ଆମେ ମାତୃ କରୁଣାରୁ ବଞ୍ଚିତ ହେଲୁ ଯେ ତା'ଠାରୁ ପୁଣି ଆଶୀର୍ବାଦ କାମନା କରିବା ! ମାଗି କଲ୍ୟାଣ ଯାଚି ଓଳଗି। ଏଠି ମାଗିବା ପୂର୍ବରୁ ସବୁ ମିଳି ସାରିଥାଏ। ସେଇଥିପାଇଁ ତ କୁହାଯାଏ, ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରିୟସୀ। ଏନ୍ତୁଡ଼ିରୁ ଅନ୍ତ୍ୟେଷ୍ଟି ପର୍ଯ୍ୟନ୍ତ ସବୁଠି ସେ ଆମର ସାଥୀ।

ବିବେକାନନ୍ଦ କହୁଥିଲେ, ମାତୃଭାବ ସାଧନାର ଶେଷ କଥା। ମାତୃଗର୍ଭରୁ ଭୂମିଷ୍ଠ ହେଉହେଉ ମାଟିମାଆ ଆମକୁ ଆଦରରେ କୋଳେଇ ନିଏ। ତା' ବକ୍ଷରେ ପଡ଼ି ଆମେ କୁଆଁ କୁଆଁ ରଡ଼ି ଦେଇଥିଲୁ। ଜନ୍ମର ଷଷ୍ଠ ଦିନରେ ମା' ଷଷ୍ଠୀ ଦେବୀଙ୍କ ପାଇଁ କାନ୍ଥରେ ଷଠୀଘର ତିଆରି କରାଯାଏ। ଶିଶୁର ମୁଣ୍ଡ ପାଖରେ ଲେଖନୀ ଓ ତାଳପତ୍ର ଥୋଇ ଦିଆଯାଏ। ସେଇ ଷଠୀ ଦୁଛେଇ (ଷଷ୍ଠୀ ଦେବୀ) ଲେଖନ୍ତି ଶିଶୁର ଭାଗ୍ୟ। ପାଞ୍ଚବର୍ଷରେ ଶିଶୁକୁ ଜ୍ଞାନ ପ୍ରଦାୟିନୀ ମା' ସରସ୍ୱତୀଙ୍କ ଦାୟିତ୍ୱରେ ସମର୍ପି ଦିଆଯାଏ। ସେ ଆମକୁ ଜ୍ଞାନ ଗରିମା, କଳା କାରିଗରୀର ନିପୁଣତା ଦିଅନ୍ତି। ପୁଣି କର୍ମକ୍ଳାନ୍ତ ଶରୀର ଓ ମନକୁ ବିଶ୍ରାମ ଦେବା ପାଇଁ ନିଦ୍ରାଦେବୀ ସ୍ୱତଃ ଆମକୁ କୋଳେଇ ନିଅନ୍ତି।

ବୈଦିକ ପରମ୍ପରା ଅନୁଯାୟୀ ଅଗ୍ନିକୁ ସାକ୍ଷୀ ରଖି ବେଦମନ୍ତ୍ର ଉଚ୍ଚାରଣରେ ବିବାହ କାର୍ଯ୍ୟ ସମ୍ପନ୍ନ କରାଗଲେ ସୁଦ୍ଧା ତା' ପୂର୍ବରୁ ଗ୍ରାମଦେବତୀଙ୍କ ପାଖରୁ ପାଣି ତୋଳି (ଦିଅଁ ମଙ୍ଗୁଳା) ଅଣାଯାଇ ସେହି ପାଣିରେ ବରକନ୍ୟା ସ୍ନାନ ନ କରିବା ପର୍ଯ୍ୟନ୍ତ ସେମାନଙ୍କୁ ବେଦୀକୁ ଯିବାର ଅଧିକାର ଦିଆଯାଏ ନାହିଁ। ପୁଣି କନ୍ୟାଟି ବଧୂବେଶରେ ଶାଶୂଘରେ ଏରୁଣ୍ଡି ଡେଇଁ ଭିତରକୁ ପ୍ରବେଶ କରେ ତ ପ୍ରଥମେ ଯାଏ ଦେଇପିଣ୍ଡି ବା ଇଶାଣ ଦେବୀଙ୍କ ପାଖକୁ। ମାଆ, ଖୁଡ଼ୀ, ପଠେଇ ଥିବା ଆଣଗୁଡ଼ ଗିନାରୁ ଶିଉଳି କାଟି କାଟି ସେ ଇଶାଣ ଦେବୀଙ୍କ ଆଶୀର୍ବାଦ ଭିକ୍ଷା କରି ତା' ଘରକରଣା ଆରମ୍ଭ କରେ। ନିତି ସଞ୍ଜବେଳେ ମା' ବୃନ୍ଦାବତୀ ପାଖରେ ସଞ୍ଜବତୀଟିଏ ଜାଳି ଦେଇ ପରିବାରର ମଙ୍ଗଳ ମନାସୁଥାଏ। ଜୀବନ ଯାତ୍ରାର ସବୁ ଘଟଣ ଅଘଟଣ ବେଳେ ସେ ସର୍ବମଙ୍ଗଳା, ଜଗନ୍ନାଥଙ୍କୁ ସୁମରଣ କରି ଶୁଭକାମ ଆରମ୍ଭ କରିଥାଏ। ମାତୃ ଆଶୀର୍ବାଦ ବିନା କ'ଣ ଜୀବନ ଯାତ୍ରା ସମ୍ଭବ ? ଜୀବନ ଯାତ୍ରା ସରିଗଲେ ଆସେ ମୃତ୍ୟୁର ମହାପର୍ବ। ସେତେବେଳେ ସୁଦ୍ଧା ଶ୍ମଶାନଚଣ୍ଡୀ ରୂପରେ ସେ ଶ୍ମଶାନ ଭୂଇଁରେ ଆମ ମର ଶରୀରକୁ କୋଳେଇ ନେବା ପାଇଁ ଅପେକ୍ଷା କରିଥାଏ।

ସପ୍ତାହକ ଯାକ ମାତୃବାର ରୂପେ ଆମେ ମାନି ନେଇଛୁ। ରବିବାର ଖୁଦୁରୁକୁଣୀ, ମଙ୍ଗଳବାର ମା' ମଙ୍ଗଳା, ଗୁରୁବାର ମହାଲକ୍ଷ୍ମୀ, ଶୁକ୍ରବାର ସନ୍ତୋଷୀ ମା', ଶନିବାର ମହାମାୟୀ ଇତ୍ୟାଦି। ପ୍ରତି ମୁହୂର୍ତ୍ତରେ ସେ ଆମ ପାଖେପାଖେ ଥାନ୍ତି। ତଥାପି ଆମେ ତାଙ୍କ ପାଇଁ ପାର୍ବଣ ରତୁର ପରିକଳ୍ପନା କରିଛୁ। ତାଙ୍କର କୃପା ଓ କୋପକୁ ଅନ୍ତର ଭରି ଅନୁଭବ କରି ଆସିଛୁ। ତାଙ୍କୁ ଆବାହନ ଓ ବିସର୍ଜନ କରିବାର ଆସ୍ପର୍ଦ୍ଧା ବି କରୁଛୁ।

ଯେତେ ଜ୍ଞାନ ଗରିମା, ଐଶ୍ୱର୍ଯ୍ୟ ପ୍ରାଚୁର୍ଯ୍ୟର ଅଧିକାରୀ ହେଲେ ବି ସନ୍ତାନଟିଏ ତା ମାଆ ପାଖରେ ଅଧମ, ଅକ୍ଷମ ଓ ଅବୋଧ ବାଳକ। ସେ ଆମର ସବୁ ଅପରାଧ ନିଃସର୍ତ୍ତରେ ମାର୍ଜନା କରିଥାନ୍ତି। ଏହା ହିଁ ବୋଧହୁଏ ମାତୃଜାତିର ମହାନତା ଓ ଚରମ ଦୁର୍ବଳତା ବି। ସେଇଥିପାଇଁ କ'ଣ ଆମେ ମାତୃଜାତିକୁ ବାରମ୍ବାର ଲାଞ୍ଛିତ କରୁଛୁ ? ଅପମାନିତ କରୁଛୁ ? ମାତୃଗର୍ଭରେ କନ୍ୟାଭ୍ରୁଣଟିଏ ସଂଚରିବା ପରଠୁ ଆମେ ତା' ପ୍ରତି ହିଂସା ଆଚରଣ ଆରମ୍ଭ କରି ଦେଉଛୁ ! କନ୍ୟା ନୁହେଁ, ପୁତ୍ରଟିଏ ଜନ୍ମ ନେବାର କାମନା କରୁଛୁ ! ଆମ କନ୍ୟା କି ବଧୁମାନଙ୍କୁ ପୁତ୍ରବତୀ ହେବାର ଆଶୀର୍ବାଦ ଦେଉଛୁ- ସାତପୁତ୍ର ହେଉ କି, ଶତପୁତ୍ର ? ଆବଶ୍ୟକ ପଡ଼ିଲେ କନ୍ୟାଭ୍ରୁଣଟିକୁ ହତ୍ୟା କରିବାର ମାନସିକତାରୁ ବି ଆମେ ମୁକ୍ତ ହୋଇପାରୁନାହୁଁ। ଜନ୍ମ ପରେ ପୁତ୍ର ସନ୍ତାନଟିକୁ ଆମେ ଯେଉଁ ଅଧିକାର, ସୁବିଧାସୁଯୋଗ ଦେଉଛୁ, କନ୍ୟା ସନ୍ତାନକୁ ତା'ଠାରୁ ଟିକେ ଊଣା ଦେଉଛୁ। ତା' ପାଇଁ ସବୁ ପ୍ରକାର ସାମାଜିକ କାଇଦା କଟକଣା। ତା' ପାଦରେ ପାଉଁଜି ନାଁରେ ଶିକୁଳୀଟିଏ ପିନ୍ଧେଇ ଦେଉଛୁ ଆମେ। ରାଜରାସ୍ତାରେ ନାରୀମାନଙ୍କ ସ୍ୱଚ୍ଛନ୍ଦ ବିହାର ଆମକୁ ଅସହ୍ୟ ହେଉଛି। ଆମେ କହୁଛୁ ସ୍ୱେଚ୍ଛାଚାରିଣୀ। ତା' ରକ୍ତମାଂସ ଝୁଣି ଖାଇବାକୁ ଏଠି ଡାହାଳ କୁକୁରମାନଙ୍କ ଅଭାବ ନାହିଁ। ଆମ ଘରକୁ ଗୃହଲକ୍ଷ୍ମୀ ରୂପରେ ଆସୁଥିବା ପତ୍ନୀ ଉପରେ ପତିପଣ ସାବ୍ୟସ୍ତ କରୁଛୁ। ଆମ ସଂସାରର ସବୁ ଜଞ୍ଜାଳ ତାକୁ ସମର୍ପି ଦେଇ ଆମେ ନିଶ୍ଚିତ ରହୁଛୁ। ମାଆ ରୂପରେ ସେ ଆମର ସବୁ ଅଳି ଅର୍ଦ୍ଦଳି ସହୁଛି। ସେଇ ମାଆଟି ପରିଣତ ବୟସରେ ଆମ ଅନାଦର, ଅବହେଳାର ଶିକାର ହେଉଛି। ଆମେ ତା'ର ସବୁ ତ୍ୟାଗ ତିତିକ୍ଷା ଭୁଲି ତାକୁ ବୋଝ ବୋଲି ଭାବୁଛୁ। ପୁଅବୋହୂଙ୍କ ଅନୁକମ୍ପାକୁ ଆଶ୍ରା କରି ସେ ପରିବାରରେ ଅଲୋଡ଼ା ଅଖୋଜା ହୋଇ ପଡ଼ି ରହୁଛି। ଜରା ନିବାସରେ ନିକ୍ଷେପ କରିବା ପାଇଁ ବି ଭ୍ରୂକ୍ଷେପ କରୁନାହିଁ ଅକୃତଜ୍ଞ ପୁତ୍ର। ମାତୃଜାତି ପ୍ରତି ଆମେ ଆଚରଣ କରୁଥିବା ମହାପାପର ପ୍ରକ୍ଷାଳନ ପାଇଁ ଆମେ କ'ଣ ପାର୍ବଣ ଋତୁରେ ମାଆଙ୍କୁ ମହାଆଡ଼ମ୍ବରରେ ଆବାହନ କରୁଛୁ ?



# ବିଦୁଷୀ ମାଆର ବିକୃତ ମସ୍ତିଷ୍କ କନ୍ୟା

ବିଶ୍ୱର ବିଭିନ୍ନ ଧର୍ମରେ ଥିବା କୁସଂସ୍କାର ଓ ଅନ୍ଧବିଶ୍ୱାସକୁ 'ମ୍ୟାଡ୍ ଡଟର୍ ଅଫ୍ ୱାଇଜ୍ ମଦର୍' ଅର୍ଥାତ୍ 'ବିଦୁଷୀ ମାଆର ବିକୃତ ମସ୍ତିଷ୍କ କନ୍ୟା' ବୋଲି ଭୋଲ୍‌ଟାୟାର କହିଥିଲେ। ବିଶ୍ୱର କୌଣସି ଧର୍ମ କୁସଂସ୍କାରରୁ ମୁକ୍ତ ନୁହେଁ। ବିଭିନ୍ନ ପ୍ରଥା, ପରମ୍ପରା, ଲୋକ ବିଶ୍ୱାସରେ ଗଣଧର୍ମ ଯେତିକି ସଂସ୍କୃତିବନ୍ତ, ତଦନୁରୂପେ ବିକୃତ, ବିଭଙ୍ଗ। ଭଗବତ୍ ବିଶ୍ୱାସ ମାନବ ସମାଜକୁ ଯେପରି କଲ୍ୟାଣମୟ କରିଛି, ଭୂତପ୍ରେତ, ଡାହାଣୀ, ଗୁଣିଆ ଆଦି ଭୟ ସେହିପରି ମଣିଷକୁ ଜଡ଼ ଓ ନିର୍ବେଦଗ୍ରସ୍ତ କରିଛି। ଏକବିଂଶ ଶତାବ୍ଦୀର ବିଜ୍ଞାନଭିତ୍ତିକ ସମାଜ ମନ୍ତ୍ରତନ୍ତ୍ର, ଡାହାଣୀ ପ୍ରଥାକୁ ଅବୈଜ୍ଞାନିକ କହୁଥିବା ବେଳେ ଅନେକ ନିରୀହ ଲୋକ ତଥାପି ଏହାର ଶିକାର ହୋଇ ଚାଲିଛନ୍ତି। ପୁରୁଷ ଓ ପ୍ରତିଷ୍ଠିତମାନଙ୍କ ତୁଳନାରେ ନାରୀ ଓ ଦୁର୍ବଳମାନେ ଏଥିରେ ବେଶୀ ଆକ୍ରାନ୍ତ ହୋଇ ଥାଆନ୍ତି। ପୁରୁଷମାନେ ଗୁଣିଆ ହୋଇ ଡାହାଣୀ କୁହାଯାଉଥିବା ନାରୀମାନଙ୍କୁ ନିସ୍ତୁକ ମାଡ଼ ମାରିବାଠାରୁ ଆରମ୍ଭ କରି ଦାନ୍ତ ଭାଙ୍ଗି ଦେବା, ଲଣ୍ଡା କରି ମୁହଁରେ ଚୂନକାଳି ବୋଳିବା, ଅଖାଦ୍ୟ ଖୁଆଇବା, ନିଆଁ ଚେଙ୍କ ଦେବା, ଉଲଗ୍ନ କରି ଗାଁ ଦାଣ୍ଡରେ ବୁଲାଇବା ପରି ଅନେକ ଅମାନୁଷିକ ଅତ୍ୟାଚାର କରିଥାନ୍ତି।

ଇଂରାଜୀରେ ପ୍ରବାଦଟିଏ ଅଛି- 'ଏଭ୍ରି ଷ୍ଟ୍ରଙ୍ଗ ଓ୍ୱିମ୍ୟାନ୍ ଇଜ୍ ଏ ଉଇଚ୍' ଅର୍ଥାତ୍ ପ୍ରତ୍ୟେକ 'ଶକ୍ତିମତୀ ମହିଳା ଜଣେ ଜଣେ ଡାହାଣୀ'। ଫ୍ରାନ୍ସରେ ଦେଶକୁ ଶତ୍ରୁ କବଳରୁ ରକ୍ଷା କରିଥିବା ସେଣ୍ଟ୍ ଜୋଆନ୍‌କୁ ଡାହାଣୀ କହି ଅଗ୍ନିରେ ନିକ୍ଷେପ କରିଥିବା ପ୍ରସଙ୍ଗ ସମ୍ପର୍କରେ ସମଗ୍ର ବିଶ୍ୱବାସୀ ଅବଗତ। ନାରୀମାନେ ପୁରୁଷମାନଙ୍କ ପରି ଶାରୀରିକ ଶକ୍ତିଦ୍ୱାରା କଠିନ କାର୍ଯ୍ୟ କରିବା ସମାଜ ଆଖିରେ ଯାଏନାହିଁ। ଆମ ପାରମ୍ପରିକ ସମାଜ ନାରୀକୁ ଅବଳା ଦୁର୍ବଳା ସାବ୍ୟସ୍ତ କରିବାକୁ ପସନ୍ଦ କରେ। ନାରୀ ଦ୍ୱାରା କୌଣସି ଦୁଃସାଧ କାର୍ଯ୍ୟ ସାଧନ ହେଲେ ସେ ତା' ଶକ୍ତିକୁ ସନ୍ଦେହପୂର୍ଣ୍ଣ ଚକ୍ଷୁରେ ଦେଖିଥାଏ। ଏ ପ୍ରକାର ମାନସିକତା ଡାହାଣୀ ପ୍ରଥାର ଅନ୍ୟତମ ହେତୁ ରୂପେ ଗ୍ରହଣ କରାଯାଇପାରେ।

ଏ ପ୍ରକାର ଅମାନୁଷିକ ଦୃଶ୍ୟ ବହୁଳାଂଶରେ ଗ୍ରାମାଞ୍ଚଳ ଓ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳମାନଙ୍କରେ ପରିଲକ୍ଷିତ ହୋଇଥାଏ। ବେଜୁଣି, ପାଙ୍ଗିଣୀ, ବୀର ପେଶିବା, ଡାହାଣୀ,

ଚିରଗୁଣୀ ସମ୍ପର୍କରେ ବହୁ ଅଲୌକିକ କାହାଣୀ, କିମ୍ବଦନ୍ତୀରେ ଆମ ଲୋକସାହିତ୍ୟ ସମୃଦ୍ଧ। ଏସବୁକୁ ପଲ୍ଲୀ ଜନତା ବିଶ୍ୱାସ କରନ୍ତି। ଯେପରିକି- କଞ୍ଚା ଡାହାଣୀମାନେ ଜିଅନ୍ତା ମଣିଷ ହେଲେ ବି ସେମାନେ ଅସ୍ୱାଭାବିକ। ସେମାନେ ସର୍ବଦା ନିଜ ସହ ଗୁଣୁଗୁଣୁ ହୋଇ ବାର୍ତ୍ତାଳାପ କରୁଥାନ୍ତି। ନିଃସଙ୍ଗ ଜୀବନଯାପନ କରିବାକୁ ଏମାନେ ପସନ୍ଦ କରନ୍ତି। ଅନ୍ଧାର ରାତିରେ ଉଲଗ୍ନ ହୋଇ ମୁଣ୍ଡ ତଳକୁ ଓ ଗୋଡ଼ ଉପରକୁ କରି ଅଖାଦ୍ୟ ଖାଇଥାନ୍ତି। ଛୋଟ ଶିଶୁମାନେ ସେମାନଙ୍କ ଦୃଷ୍ଟିରେ ପଡ଼ିଲେ ରକ୍ତ ଶୋଷି ନିଅନ୍ତି। ଝିଅବୋହୂଙ୍କ ଦେହରେ ପଶି ସେମାନଙ୍କୁ ନାନା ହଇରାଣ ହରକତ କରନ୍ତି। କେବଳ ମଣିଷ ନୁହନ୍ତି, ଗାଈ ପହ୍ନାରୁ ରକ୍ତ ଝରେ। କ୍ଷୀର ଦୁହିଁଲା ବେଳେ ଗାଈ ଲାତ ମାରେ। ବାଛୁରୀ ପହ୍ନାରେ ମୁହଁ ମାରେନାହିଁ, କଅଁଳ ଛନଛନ ଶସ୍ୟ କ୍ଷେତ୍ରରେ ଅକାଳ ମରୁଡ଼ି ଘୋଟିଯାଏ। ବୃକ୍ଷଲତା ଉଧେଇ ପାରେନାହିଁ। ଏପରିକି ଖାଦ୍ୟ ପ୍ରସ୍ତୁତି ସମୟରେ ଏମାନଙ୍କ ଦୃଷ୍ଟି ପଡ଼ିଲେ ତାହା ଅସ୍ୱାଦକର ହୋଇଯାଏ। ଅଚାନକ ଘର ପୋଡ଼ିଯାଏ। ଘର ଉପରକୁ ଟେକା ପଥର ପଡ଼େ। ଏ ପ୍ରକାର ଅଘଟଣ ମୂଳରେ କୌଣସି ନା କୌଣସି ବିଜ୍ଞାନସମ୍ମତ କାରଣ ଥିଲେ ସୁଦ୍ଧା ଗ୍ରାମ୍ୟ ଜନତା ତାହା ସ୍ୱୀକାର କରନ୍ତି ନାହିଁ। ଏସବୁ ମନ୍ତ୍ର ତନ୍ତ୍ରଦ୍ୱାରା ହେଉଛି ବୋଲି ବିଶ୍ୱାସ କରାଯାଇଥାଏ।

ଅହରହ ଜୀବନ ସଂଗ୍ରାମରେ ବ୍ୟାପୃତ ରହି ସୁଦ୍ଧା ତଥାପି ସ୍ୱଚ୍ଛନ୍ଦ ଜୀବନ ବଞ୍ଚି ନପାରିଲେ ନିଜର ଦୁରବସ୍ଥା ପାଇଁ ଅପରକୁ ଦାୟୀ କରିବା ମଣିଷର ସ୍ୱଭାବସିଦ୍ଧ ପ୍ରକୃତି। କେତେବେଳେ ଏହା ଏକକ ଭାବରେ ହୋଇଥାଏ ତ ପୁଣି କେତେବେଳେ ସଂଘବଦ୍ଧ ଭାବରେ। ସବୁ ଦୁର୍ଯୋଗର ମୂଳ ବୋଲି ସନ୍ଦେହ କରୁଥିବା ଲୋକମାନଙ୍କୁ ନିର୍ଯ୍ୟାତନା ଦିଆ ଯାଇଥାଏ। ଅନ୍ୟ ପକ୍ଷରେ ମହିଳାମାନଙ୍କର ସମ୍ପତ୍ତି ହଡ଼ପ କରିବା ଅଥବା ପାରିବାରିକ କଳହର ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ମହିଳାମାନଙ୍କୁ ଡାହାଣୀ ଆଖ୍ୟା ଦିଆ ଯାଇଥାଏ। ତା'ପରେ ତାକୁ ଗାଁରୁ ତଡ଼ିବା ସହଜ ହୋଇଥାଏ। ଏହାଛଡ଼ା ପ୍ରେମ ନିବେଦନ କରି ବ୍ୟର୍ଥ ହୋଇଥିବା ହତାଶ ପ୍ରେମିକମାନେ ମଧ ନାରୀମାନଙ୍କୁ ଡାହାଣୀ ବୋଲି ଅପପ୍ରଚାର କରି ନାନା ସାମାଜିକ ଲାଞ୍ଛନା ଦେଇଥାନ୍ତି।

ତେବେ ପୁରୁଷମାନେ ଯେ ଏହି ଅପବାଦରୁ ମୁକ୍ତ ଥାଆନ୍ତି, ତା' ନୁହେଁ। କିନ୍ତୁ ନାରୀମାନଙ୍କ ତୁଳନାରେ ସେମାନଙ୍କ ସଂଖ୍ୟା ନଗଣ୍ୟ। ମନ୍ତ୍ରତନ୍ତ୍ରଦ୍ୱାରା ବ୍ୟକ୍ତିର ତଥା ସମାଜର କ୍ଷତି କରୁଥିବା ସନ୍ଦେହରେ ବହୁ ପୁରୁଷଙ୍କ ଦାନ୍ତ ଭାଙ୍ଗି ବିଷ୍ଠା ଖୁଆଇ ଦିଆଯାଇଥାଏ। ଏହାଦ୍ୱାରା ସେମାନଙ୍କ ତନ୍ତ୍ରବିଦ୍ୟା କାର୍ଯ୍ୟ କରେନାହିଁ ବୋଲି ବିଶ୍ୱାସ କରାଯାଏ। ସାଧନାଦ୍ୱାରା ମାନବେତର ଅପଶକ୍ତି ହାସଲ କରିବା ବିଶ୍ୱାସ ଆଜିର ନୁହେଁ।

ଆମର ଚତୁର୍ଥ ବେଦ ଅଥର୍ବ ବେଦରେ ଏହି କଳା ସମ୍ପର୍କରେ ତଥ୍ୟମାନ ଉଲ୍ଲେଖ ରହିଛି। ଏଥିପାଇଁ ମନ୍ତ୍ରମାନ  ମଧ୍ୟ ଅଛି। ସମୟକ୍ରମେ ଏହି ଅନ୍ଧବିଶ୍ୱାସ ଆମ ସମାଜକୁ ଅତି ମାତ୍ରାରେ କବଳିତ କରି ଚାଲିଛି।  ଆମ ତନ୍ତ୍ର ସାହିତ୍ୟରେ ଉଲ୍ଲେଖ ଥିବା ନିତେଇ ଧୋବଣୀ, ପିତେଇ ସଉରୁଣୀ ଆଦି ଚରିତ୍ର ଏହି ପର୍ଯ୍ୟାୟବାଚୀ। ଯେଉଁମାନେ ରୋଷେଇ କଲାବେଳେ କାଠ ବଦଳରେ ନିଜ ଗୋଡ଼କୁ ଚୁଲୀରେ ଭର୍ତ୍ତି କରି ଦେଇ ଥାଆନ୍ତି, ଦରକାର ପଡ଼ିଲେ ନିଜ କୋଳରେ ଧରିଥିବା ଶିଶୁକୁ ମଧ୍ୟ ଚୁଲୀକୁ ମୁହାଁଇ ଦେବା କଥା ଲୋକ କାହାଣୀମାନଙ୍କରେ ରହିଛି। ଶିକ୍ଷା ଓ ସ୍ୱାସ୍ଥ୍ୟରେ ଅନଗ୍ରସର, ଦାରିଦ୍ର୍ୟ ତୀବ୍ରତର ଅନୁଭୂତ ହେଉଥିବା ଅଞ୍ଚଳମାନଙ୍କରେ ଏବେ ସୁଦ୍ଧା ଏଇଭଳି ଚରିତ୍ର ଅଛନ୍ତି ବୋଲି ସେମାନେ ବିଶ୍ୱାସ କରନ୍ତି। ଫଳ ସ୍ୱରୂପ ସେମାନଙ୍କୁ ବିଭିନ୍ନ ଉପାୟରେ ନିର୍ଯାତନା ଦେବା ଅଥବା ହତ୍ୟା କରିବା ପରି ଅଘଟଣ ଗଣମାଧ୍ୟମମାନଙ୍କରେ ପ୍ରକାଶିତ ହୋଇଥାଏ। ଶିକ୍ଷା ଓ ସଭ୍ୟତାର ପ୍ରଗତି ସାଧନ ହୋଇଥିବା ସହରାଞ୍ଚଳରେ ଏ ପ୍ରକାର ଚରିତ୍ର ଓ ମାନସିକତା କମ୍ ପରିଲକ୍ଷିତ ହୁଏ। ଗ୍ରାମାଞ୍ଚଳମାନଙ୍କରେ ଅଶିକ୍ଷିତ ଓ ଅଜ୍ଞ ମଣିଷମାନଙ୍କ ଜୀବନ ଯାତ୍ରା ସହ ଏ ବିଶ୍ୱାସ ଅଙ୍ଗାଙ୍ଗୀ ଭାବେ ଜଡ଼ିତ। ତନ୍ତ୍ରମନ୍ତ୍ରଦ୍ୱାରା ଯେଉଁମାନେ ଅସାଧ୍ୟ ସାଧନ କରିବାକୁ ଚାହାନ୍ତି, ଶତ୍ରୁକୁ ପରାଭବ ଦେବାକୁ ଚାହାନ୍ତି, ସେମାନେ ତନ୍ତ୍ର ସାଧକମାନଙ୍କ ପ୍ରରୋଚନାରେ ବହୁ ଅଘଟଣ କରିଥାନ୍ତି। ସନ୍ତାନ ଓ ଧନପ୍ରାପ୍ତି ପାଇଁ ଏମାନେ ଶିଶୁବଳି ଦେବାର ବହୁତ ଦୃଷ୍ଟାନ୍ତ ରହିଛି। ରାଜନୈତିକ କ୍ଷମତା ହାସଲ ଓ ମାଲି ମକଦ୍ଦମାରେ ଡିଗ୍ରୀ ପାଇଁ ପ୍ରତିଷ୍ଠିତମାନେ ସୁଦ୍ଧା ତାନ୍ତ୍ରିକମାନଙ୍କ ସାହାରାରେ ନରବଳି ପରି ବହୁ ଅପରାଧ ଘଟାଇଥାନ୍ତି।

ଡାହାଣୀ ପ୍ରଥାରେ ବିଶ୍ୱାସ ରଖୁଥିବା ମଣିଷମାନଙ୍କ ମଧ୍ୟରେ ଆଉ ଏକ ଜଟିଳ ସମସ୍ୟା ପରିଲକ୍ଷିତ ହୋଇଥାଏ। ବହୁଳାଂଶରେ ମହିଳାମାନେ ଏଥିରେ ପୀଡ଼ିତା ହୋଇଥାନ୍ତି। ପ୍ରାୟତଃ ମାନସିକ ରୋଗୀ, ସଦ୍ୟ ବିବାହିତ, ଅବିବାହିତ ଯୁବତୀ, ଅଥବା ସନ୍ତାନହରା ମାଆମାନଙ୍କ ମଧ୍ୟରେ ଏ ପ୍ରବୃତ୍ତି ପରିଲକ୍ଷିତ ହୋଇଥାଏ। ଏହି ରୋଗୀମାନଙ୍କ ମଧ୍ୟରେ କେତେକ ନିର୍ଦ୍ଦିଷ୍ଟ ପ୍ରକାରର ଅସ୍ୱାଭାବିକ ଲକ୍ଷଣ ପରିଲକ୍ଷିତ ହୋଇଥାଏ, ଯେପରିକି-ବାଉଳି ହେବା, ଚିତ୍କାର କରିବା, ଲୁଗାପଟା ଚିରିବା, ହସିବା, କାନ୍ଦିବା, ଘଣ୍ଟାକୁ ଘଣ୍ଟା ମୂର୍ଚ୍ଛା ଯିବା, ହାତ ମୁଠାମୁଠା କରିବା ଇତ୍ୟାଦି। ଭୂତପ୍ରେତ ଗ୍ରାସ କରିବା ବିଶ୍ୱାସରେ ଗୁଣିଆମାନେ ଏମାନଙ୍କୁ ଅତ୍ୟନ୍ତ ଶାରୀରିକ ନିର୍ଯାତନା ଦେଇଥାନ୍ତି। ଭୟରେ ରୋଗୀ ଗୁଡ଼ାଏ ମିଛକଥା କହିଥାଏ। ଭୂତ ଗ୍ରାସିଛି ବୋଲି ସ୍ୱୀକାର କରିଥାଏ। ଗୁଣିଆର ନିର୍ଦ୍ଦେଶରେ ଝାଡ୍ରୁ, ଚାଲୁଣୀ, ପାଣିଗରା ଆଦି ଦାନ୍ତରେ ଧରି ତ୍ରିଛକି ପର୍ଯ୍ୟନ୍ତ ଧାଇଁଥାଏ।

ଗାଁ ଗହଳିରେ ଏସବୁ ସାଧାରଣ ଦୃଶ୍ୟ। ରୋଗର ପ୍ରକୃତ ନିଦାନ ଅନୁସନ୍ଧାନ ନକରି ଗୁଣିଆ ମାଧ୍ୟମରେ ଯେଉଁ ପ୍ରକାର ଉପଚାର କରାଯାଏ, ତାହା ରୋଗୀ ପାଇଁ ଆହୁରି ଜଟିଳ ସମସ୍ୟା ସୃଷ୍ଟି କରିଥାଏ। ପାରିବାରିକ ସମସ୍ୟା, ପ୍ରେମରେ ବ୍ୟର୍ଥତା, ହତାଶାବୋଧ ଆଦି ଏ ଲକ୍ଷଣର ହେତୁ ବୋଲି ମନସ୍ତତ୍ତ୍ୱବିତ୍‌ମାନେ କୁହନ୍ତି। କିନ୍ତୁ ଅଜ୍ଞ ଜନତା ଏଥିପାଇଁ ପ୍ରତାରିତ ହୁଅନ୍ତି। ନାନା ପ୍ରକାର ସାମାଜିକ ସମସ୍ୟା ସୃଷ୍ଟି ହୋଇଥାଏ। ଏ ବିକୃତ ମସ୍ତିଷ୍କ କନ୍ୟାଟି ବିଦୁଷୀ ମାଆକୁ ଅସହାୟ କରିଦିଏ।

ସୁସ୍ଥ ସମାଜ ଗଠନରେ ବିରାଟ ପ୍ରତିବନ୍ଧକ ସାଜିଥିବା ଏହି ଅନ୍ଧବିଶ୍ୱାସ ଓ କୁସଂସ୍କାରର ଦୂରୀକରଣ ପାଇଁ ଭାରତୀୟ ପିଙ୍ଗଳ କୋଡ୍‌ର ୧୬୪ ଧାରା, ୧୯୭୩ ଅନୁସାରେ ସମ୍ପୃକ୍ତ ଅପରାଧୀମାନଙ୍କ ପାଇଁ ଦଣ୍ଡବିଧି ନିର୍ଦ୍ଧାରିତ ହୋଇଛି। କିନ୍ତୁ କ୍ରମବର୍ଦ୍ଧିଷ୍ଣୁ ଅପରାଧ ପାଇଁ ତାହା ଯଥେଷ୍ଟ ନୁହେଁ। ଏ ପ୍ରଥା ଯେଉଁମାନଙ୍କ ଜୀବନକୁ ଦୁର୍ବିସହ କରେ, ସେମାନଙ୍କ ପାଖରେ ଏହି ଦଣ୍ଡବିଧି ସମ୍ପର୍କୀୟ ସୂଚନା ପହଞ୍ଚି ପାରେ ନାହିଁ। ଯେଉଁ କାରଣ ପାଇଁ ସେମାନେ ଏ ପ୍ରଥାର ଆଶ୍ରୟ ନେଇଛନ୍ତି, ତା'ର ନିରାକରଣ ସହ ଜନସଚେତନତା ମଧ୍ୟ ଆବଶ୍ୟକ। ଶିକ୍ଷା ଓ ସ୍ୱାସ୍ଥ୍ୟ ସମସ୍ୟା ଏସବୁର ହେତୁ। ଏସବୁ ପ୍ରତି ବିହିତ ପଦକ୍ଷେପ ନ ନିଆଗଲେ ଦଣ୍ଡବିଧି ନିୟମ କେବଳ ଅପରାଧୀମାନଙ୍କୁ ଦଣ୍ଡିତ କରି ଚାଲୁଥିବ ସିନା, ଫଳ କିଛି ହେବନାହିଁ।



# ଋଣ ବୋଝ

'ଦୁନିଆରେ ଦୁଃଖୀ କିଏ ?'- ଧର୍ମବକର ଏ ପ୍ରଶ୍ନର ଉତ୍ତରରେ ଯୁଧିଷ୍ଠିର କହିଥିଲେ- 'ଋଣଗ୍ରସ୍ତ ବ୍ୟକ୍ତି।' ଅଥଚ ଚାର୍ବାକ୍ କହିଲେ, 'ଯାବତ୍ ଜୀବେତ୍ ସୁଖମ୍ ଜୀବେତ୍ ଋଣଂ କୃତ୍ୱା ଘୃତଂ ପିବେତ୍। ଭସ୍ମୀଭୂତସ୍ୟ ଶରୀରସ୍ୟ ପୁନରାଗମନ କୁତଃ ?' ଏ ମାଟିଘଟ ଯେ ଆଉଥରେ ଜନ୍ମ ନେବ, ତା'ର କିଛି ନିଶ୍ଚିତତା ନାହିଁ। ତେବେ ଋଣ କରି ପଛେ ଘିଅ ଖାଅ, ଯେତେ ଦିନ ବଞ୍ଚିଛ, ସୁଖରେ ବଞ୍ଚ। ଚାର୍ବାକ୍ ଅର୍ଥାତ୍ ଚାରୁ ବାକ୍- ସୁନ୍ଦର କଥା। ତାଙ୍କ କଥାଗୁଡ଼ାକ କାନକୁ ସୁନ୍ଦର ଶୁଭୁଥିବାରୁ ତାଙ୍କୁ କୁହାଯାଉଥିଲା ଚାର୍ବାକ୍। କିନ୍ତୁ ବାସ୍ତବତା ଦୃଷ୍ଟିରୁ ଚାର୍ବାକ୍ ଦର୍ଶନ ଭାରତୀୟ ପରମ୍ପରାରେ ସର୍ବଜନଗ୍ରାହୀ ହେଲାନାହିଁ, ତେଣୁ ତିଷ୍ଠି ପାରିଲା ନାହିଁ। ଭାରତୀୟ ଚିନ୍ତନରେ ଋଣ କରିବା ପାଇଁ ଉତ୍ସାହିତ କରାଯାଏ ନାହିଁ। ଋଣ ଆମ ପାଇଁ ଆତଙ୍କ। ଆମ ଋଢ଼ି ଓ ପ୍ରବଚନ କହେ- 'ବାପ ଖାଇଚି ତାଳ ପୁଅକୁ ହୋଇଛି କାଳ।' ମୃତ୍ୟୁଶଯ୍ୟାରେ ବୃଦ୍ଧପିତା ଶେଷ ନିଃଶ୍ୱାସ ତ୍ୟାଗ ପୂର୍ବରୁ କାହାଠାରୁ କ'ଣ ଋଣ କରିଛି, ତାହା ପୁତ୍ର ପାଖରେ ପ୍ରକାଶ କରିବାର ପ୍ରଥା ରହିଛି। ପିତାର ଋଣ ପୁତ୍ରକୁ ପରିଶୋଧ କରିବାକୁ ହୋଇଥାଏ। ଋଣଗ୍ରସ୍ତ ଲୋକର ଐହିକ ଜୀବନ କେବଳ ଯନ୍ତ୍ରଣା ଜର୍ଜରିତ ନୁହେଁ, ଏହା ପାରଲୌକିକ ପର୍ଯ୍ୟନ୍ତି ଲମ୍ବି ଯାଇଥାଏ। ଏ ଜନ୍ମରେ ଋଣ ଶୁଝି ନପାରି ମୃତ୍ୟୁବରଣ କରିଥିବା ବ୍ୟକ୍ତି ପରଜନ୍ମରେ ଋଣଦାତାଙ୍କ ବାଡ଼ିପଟେ ଲଙ୍କାଗଛ ହୋଇ ଶୁଝିଥାଏ ବୋଲି ଆମ ଲୋକ ବିଶ୍ୱାସ ରହିଛି। ଏସବୁ ଆମ ଲୋକ ଚରିତ୍ର। ସାଧୁତା, ସତ୍ୟନିଷ୍ଠତା ଓ ବିଶ୍ୱସନୀୟତା ଥିଲା ଆମ ଲୋକ ଚରିତ୍ରର ଭିତ୍ତିଭୂମି। କିନ୍ତୁ ଏବେ ଆଉ ସେ ଯୁଗ ନାହିଁ। ଋଣଦାତା ଓ ଋଣ ଗ୍ରହୀତାଙ୍କ ଭିତରେ ଏବେ ଛକାପଞ୍ଝା ନୀତି।

ଗୃହତ୍ୟାଗୀ ସନ୍ନ୍ୟାସୀଟିଏ ଜଣେ ଗୃହସ୍ଥକୁ ପ୍ରଶ୍ନ କରିଥିଲେ, 'ତମେ ତମ ଅର୍ଜିତ ଧନକୁ କ'ଣ କରୁଛ ?' ଗୃହସ୍ଥ ଜଣକ ଉତ୍ତର ଦେଇଥିଲେ- 'ମୁଁ କିଛି ପୁରୁଣା ଋଣ ପରିଶୋଧ କରୁଛି, କିଛି ନୂଆ ଋଣରେ ନିବେଶ କରୁଛି। ଆସନ୍ତା ଜନ୍ମ ପାଇଁ କିଛି ସଞ୍ଚୟ କରୁଛି ଏବଂ ଅବଶିଷ୍ଟରେ ଆମେ ସ୍ୱାମୀ ସ୍ତ୍ରୀ ଦୁଃଖସୁଖେ କାଳ କାଟୁଛୁ।' ତାଙ୍କର

ଏପରି ବକ୍ତବ୍ୟରେ ସନ୍ନ୍ୟାସୀ ଜଣକ ସନ୍ତୁଷ୍ଟ ନହେବାର ଦେଖି ଗୃହସ୍ଥ ବୁଝେଇ କହିଥିଲେ – 'ପିତାମାତା ତାଙ୍କୁ ଜନ୍ମଦେଇ ମଣିଷ କରିଛନ୍ତି। ସେଥିପାଇଁ ସେ ସେମାନଙ୍କ ପାଖରେ ଋଣୀ। ପିତୃମାତୃଋଣ ପରିଶୋଧ ପାଇଁ ସେ ତାଙ୍କ ଅର୍ଜନର ସିଂହଭାଗ ଦିଅନ୍ତି। ନିଜ ସନ୍ତାନମାନଙ୍କ ପାଇଁ ଯାହା ଖର୍ଚ୍ଚ କରନ୍ତି, ତାହା ତାଙ୍କର ନୂଆ ଋଣ ନିବେଶ। ତାଙ୍କର ବୃଦ୍ଧାବସ୍ଥାରେ ସେମାନେ ତାଙ୍କର ଦାୟିତ୍ୱ ନେଇ ଋଣ ପରିଶୋଧ କରିବେ। ଦୁଃଖୀରଙ୍କି, ଭାଟ ଭିକାରୀ ଓ ଦେବତା ବ୍ରାହ୍ମଣଙ୍କ ଉଦ୍ଦେଶ୍ୟରେ ଯାହା ସେ ଖର୍ଚ୍ଚ କରନ୍ତି, ତାହା ତାଙ୍କର ଆସନ୍ତା ଜନ୍ମ ପାଇଁ ସଞ୍ଚିତ ପୁଞ୍ଜି। ଅବଶିଷ୍ଟ ପଇସାରେ ସ୍ୱାମୀ ସ୍ତ୍ରୀ ବଞ୍ଚନ୍ତି।' ଆମେ କହୁ ପିତୃମାତୃଋଣ, ଗୁରୁଋଣ, ଦେବଋଣ, ଜନ୍ମମାଟିର ଋଣ, ଏପରିକି କନ୍ୟା ସନ୍ତାନକୁ ଲାଳନପାଳନ କରି ସୁପାତ୍ରରେ ଦେବାକୁ କନ୍ୟା ଋଣ ପରିଶୋଧ ବୋଲି ଧରାଯାଇଥାଏ। ଶିଶୁପାଳକୁ ବଧ କରିବା ଅବସରରେ ଶ୍ରୀକୃଷ୍ଣଙ୍କ ତର୍ଜନୀର ସାମାନ୍ୟ କ୍ଷତକୁ ଦ୍ରୌପଦୀ ତାଙ୍କ ପିନ୍ଧା ବସ୍ତ୍ରରୁ ଚିରୁଡ଼ାଏ ଚିରି ବାନ୍ଧି ଦେଇଥିଲେ। ପ୍ରତିବଦଳରେ ଶ୍ରୀକୃଷ୍ଣ ତାଙ୍କୁ କୋଟିବସ୍ତ୍ର ଦେଇ ଋଣମୁକ୍ତ ହୋଇଥିଲେ ବୋଲି ଶାସ୍ତ୍ର ସିଦ୍ଧି ରହିଛି।

ସ୍ଥୂଳଦୃଷ୍ଟିରେ ଋଣ କହିଲେ ଆମେ ଆର୍ଥିକ ଋଣ ବୋଲି ବୁଝୁ। ଏହି ଆର୍ଥିକ ଋଣଗ୍ରସ୍ତ ବ୍ୟକ୍ତି ସର୍ବଦା ଚାପଗ୍ରସ୍ତ ହୋଇ ରୁହେ। ଋଣ ପରିଶୋଧ କରି ନପାରି ମଣିଷ କିପରି ଦୁର୍ବିସହ ଜୀବନ ବଞ୍ଚିଥାଏ, ସର୍ବସ୍ୱାନ୍ତ ହୋଇଥାଏ, ତା'ର ମଧ ରାଶି ରାଶି ଉଦାହରଣ ଆମ ସାହିତ୍ୟମାନଙ୍କରେ ରହିଛି। ରାଜା ହରିଶ୍ଚନ୍ଦ୍ର ବିଶ୍ୱାମିତ୍ରଙ୍କ ଋଣ ପରିଶୋଧ କରିନପାରି କିପରି ସର୍ବସ୍ୱାନ୍ତ ହୋଇଥିଲେ, ତାହା ସର୍ବଜନବିଦିତ। ସେକ୍ସପିୟରଙ୍କ 'ମର୍ଚ୍ଚାଣ୍ଟ୍ ଅଫ୍ ଭେନିସ୍'ରେ ସାଇଲକ୍‌ର ଋଣ କବଳରୁ ବର୍ତ୍ତିବା ଆଣ୍ଟୋନିଓ ପାଇଁ କେତେ ବିପଜ୍ଜନକ ହୋଇଥିଲା, ତାହା ଶୁଣିଲେ ଲୋମ ଟାଙ୍କୁରି ଉଠେ। ଛ'ମାଣ ଆଠଗୁଣ୍ଠର ଭଗିଆ ସାରିଆ ହୁଅନ୍ତୁ କି ପରଜାର ମାଣ୍ଡିଆ ଜାନୀ ଶୁକ୍ରୁ ଜାନୀ ହୁଅନ୍ତୁ, ମହାଜନ ଘର ଋଣ କିପରି ଏମାନଙ୍କୁ ତଳିତକାନ୍ତ କରି ଦେଇଥିଲା, ତାହା ଆମକୁ ଅବିଦିତ ନାହିଁ।

ଏ ତ ସବୁ ଗଲା ଶାସ୍ତ୍ରର କଥା। ବାସ୍ତବ ଜୀବନରେ ଥରେ ମଣିଷ ଋଣଯନ୍ତାରେ ପଶିଗଲେ, ସେଥିରୁ ମୁକୁଳିବା କାଠିକର ପାଠ ହୋଇଥାଏ। ଏକଥା ସତ୍ୟ ଯେ ଭାରତ ପରି ଏକ ବିକାଶଶୀଳ ରାଷ୍ଟ୍ର, ଯେଉଁଠାରେ ବିଶ୍ୱ ବ୍ୟାଙ୍କ୍‌ର ଋଣରେ ବିକାଶ ଯୋଜନା ହୋଇଥାଏ, ସେଠାରେ ଶିଶୁଟିଏ ମୁଣ୍ଡରେ ଋଣ ବୋଝ ନେଇ ଦୁନିଆକୁ ଆସିଥାଏ। ଋଣ ଟଙ୍କାକୁ ସଦୁପଯୋଗ କରିପାରୁନଥିବା ବ୍ୟକ୍ତିଙ୍କୁ ବ୍ୟଙ୍ଗ କରି କୁହାଯାଏ– 'ପୁଅ ମୋର ବଡ଼ ଗୁଣର,

ଆଣେ ଋଣ ଦିଏ ଉଧାର'। ଋଣ ସହ ସୁଧ ଜଡ଼ିତ ଥାଏ, ଉଧାର ସହ ନୁହେଁ।

ବିଶ୍ୱ ବ୍ୟାଙ୍କ୍‌ରୁ ଋଣ ଆଣି ଆମ ଦେଶରେ ଯେଉଁ ବିକାଶ ଯୋଜନା ହୋଇଥାଏ, ସେଥିରୁ କ୍ୱଚିତ୍ ଯୋଜନା ଫଳବତୀ ହୋଇଥାଏ। 'ସରକାର୍ କା ମାଲ୍ ଦରିଆ ମେ ଡାଲ୍' ନୀତିରେ ଯୋଜନା ଟଙ୍କାର ଅପବ୍ୟବହାର ହୋଇଥାଏ। କିନ୍ତୁ ଘରୋଇ ଋଣଯନ୍ତାରୁ ସାଧାରଣ ଲୋକ ବର୍ତ୍ତିପାରନ୍ତି ନାହିଁ। କଳେବଳେ କୌଶଳେ ଋଣଦାତା ଋଣ ଆଦାୟ କରିଥାଏ। ବିଦେଶାଗତ କାବୁଲିବାଲାଠାରୁ ଦେଶ ଭିତରେ ମାରୱାଡ଼ି, କୁମୁଟି, ସାହୁକାର ଓ କୁଜି ମହାଜନ ପର୍ଯ୍ୟନ୍ତ ସମସ୍ତଙ୍କର ଦୌରାତ୍ମ୍ୟ ଦାରିଦ୍ର୍ୟ ଉପରେ ଚାଲେ। ଯେଉଁଠି ଦାରିଦ୍ର୍ୟ, ସେଇଠି ଶୋଷଣ। ଅମୀର୍ ଓ ଗରିବ ମଧ୍ୟରେ ଥାଏ ଗୋଟିଏ ସମ୍ପର୍କ- ଅର୍ଥ ଦେଣ ନେଣର। ଦରିଦ୍ରର କଷ୍ଟାର୍ଜିତ ଧନ ବିଭିନ୍ନ ଉପାୟରେ ଧନୀକର ସିନ୍ଦୁକକୁ ଚାଲିଯାଏ। କାଗଜପତ୍ରରେ ଟିପଚିହ୍ନ କିମ୍ବା ସନ୍ତକ କରି କିଛି ସର୍ତ୍ତରେ ମହାଜନ ଘରୁ ଋଣ ଅଣାଯାଇଥାଏ ତ କେତେବେଳେ ଜମିବାଡ଼ି ଘରଦ୍ୱାର କଣ୍ଟ କବଲା ହୋଇଥାଏ। ସୁନାରୂପା, ଘରର ପିତଳ ବାସନ ବନ୍ଧକ ରଖାଯାଏ। ଗାଈଗୋରୁ ମଧ୍ୟ ବାଦ୍ ପଡ଼ନ୍ତି ନାହିଁ। ଏବେ ପୁଣି ଋଣ ଦୁନିଆକୁ ଆସିଲାଣି ବିପିଏଲ୍ କାର୍ଡ୍ ଓ ଜବ୍ କାର୍ଡ୍ ଇତ୍ୟାଦି।

ନିଅଣ୍ଟିଆ ସମୟରେ ସାହୁକାରମାନେ ଧାନ ଅମାର ଓ ଧାନ ଖଣି ଅଭାବୀମାନଙ୍କ ଉଦ୍ଦେଶ୍ୟରେ ଖୋଲି ଦେଇଥାନ୍ତି। ଭମା, ପୋକଖିଆ ଓ ପାଣିପଶା ଧାନ ବି ଏଥିରୁ ବାଦ୍ ପଡ଼େନାହିଁ। ନିଅଣ୍ଟିଆ ସମୟରେ ନେଇଥିବା ଧାନର ଦେଢ଼ଗୁଣ କରି ଅମଳ ସମୟରେ ଦେବାକୁ ହୋଇଥାଏ। ଏହାକୁ ଉପକୂଳବର୍ତ୍ତୀ ଅଞ୍ଚଳରେ ଦେଢ଼ି ଧାନ କୁହାଯାଏ। ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ପ୍ରତିବେଶୀ ରାଜ୍ୟମାନଙ୍କରୁ ଆସିଥାନ୍ତି କିଛି ଅସାଧୁ ବ୍ୟବସାୟୀ। ଯେଉଁମାନଙ୍କୁ ସ୍ଥାନୀୟ ଭାଷାରେ କୁହାଯାଏ 'ଡବଲବାଲା'। ସେମାନେ ଲଗାଇବା ଋଣର ସୁଧ ସାପ୍ତାହିକୀ ହିସାବ କରି ଆଦାୟ କରିଥାନ୍ତି। ମାସ ଶେଷକୁ ସେମାନେ ଯେତିକି ଦେଇଥାନ୍ତି,ସୁଧମୂଳ କରି ତା'ର ଡବଲ୍ ନେଇ ଯାଇଥାନ୍ତି। ସାଧାରଣତଃ ବଜାର ହାଟ କରୁଥିବା ଛୋଟଛୋଟ ବେପାରୀ ଓ କୋଚଣିମାନେ ସେମାନଙ୍କଠାରୁ ପଇସା ନେଇଥାନ୍ତି। ବାହାଘର, ବ୍ରତଘର, ଦଶାଘର ଆଦି କ୍ରିୟାନୁଷ୍ଠାନ କରିବା ସହିତ କେହି ରୋଗ ବ୍ୟାଧିଗ୍ରସ୍ତ ହେଲେ, ତା'ର ନିଦାନ କିମ୍ବା କୋର୍ଟ୍ କଚେରୀ କାମ ପାଇଁ ଅଭାବୀ ଲୋକମାନେ ଋଣ କରିଥାନ୍ତି। ପିଲାମାନଙ୍କୁ ପାଠ ପଢ଼ାଇବା ବେଳେ ବହୁ ପରିବାରର ଜମିବାଡ଼ି କିମ୍ବା ସୁନାରୂପା ଚଢ଼ା ସୁଧହାରରେ ବନ୍ଧା ପଡ଼ିଥାଏ। ଶାଗମାଛ ମୂଲରେ ଧନୀକର ସିନ୍ଦୁକକୁ ଗରିବର ସମ୍ବଳ ଅନାୟାସରେ ଚାଲିଯାଏ।

ଆଗତ ଋଣ ନେଇ କାମ କରି ଶୁଝିଦେବା ପ୍ରଥା ଏବେ ବି ସବୁ ଅଞ୍ଚଳରେ ଚାଲିଛି। ଏହା ସମ୍ପର୍ଣ୍ଣ କ୍ରୀତଦାସ କିମ୍ବା ଗୋତିପ୍ରଥା ନହେଲେ ସୁଦ୍ଧା ଶ୍ରମିକମାନଙ୍କୁ ଗୋତି ଶ୍ରମିକଙ୍କ ପରି ଦିନରାତି ଖଟିବାକୁ ହୋଇଥାଏ। ସୁଧମୂଳ ମିଶେଇ ସାହୁକାରମାନେ ଏମାନଙ୍କୁ ନିର୍ମମ ଭାବରେ ଖଟେଇଥାନ୍ତି। ଆମ ରାଜ୍ୟରେ ଅଭାବୀ ଲୋକମାନେ ବ୍ୟାଙ୍କ୍ ଅପେକ୍ଷା ସାହୁକାର ମହାଜନମାନଙ୍କ ପାଖରୁ ଋଣ ନେବାପାଇଁ ପସନ୍ଦ କରନ୍ତି। ବ୍ୟାଙ୍କ୍‌ରୁ ଋଣ ଉଠାଇବା ଜଟିଳ। ଏଥିପାଇଁ ଆବଶ୍ୟକୀୟ କାଗଜପତ୍ର ସେମାନେ ଦାଖଲ କରିପାରନ୍ତି ନାହିଁ। ଦଲାଲମାନେ ଏମାନଙ୍କୁ ଶୋଷଣ କରିଥାନ୍ତି।

ଏବେ ସବୁ ଋଣକୁ ବଳିଯାଇଛି ଚାଷୀ ଋଣ। ପାରମ୍ପରିକ ଚାଷ ପାଇଁ ଉଦ୍ଦିଷ୍ଟ ଅର୍ଥ ଚାଷୀର ସାମର୍ଥ୍ୟ ଭିତରେ ଥାଏ। କିନ୍ତୁ ଅତ୍ୟାଧୁନିକ ପ୍ରଣାଳୀରେ ଲାଭଜନକ ଚାଷ ଓଳିଆ ବିହନ ଓ ଗୋବର ଖତରେ ହେଉନାହିଁ। କିଣା ବିହନ ସହ ସାର ଓ କୀଟନାଶକ ଅପରିହାର୍ଯ୍ୟ ହୋଇପଡ଼ିଛି। ଏଥିପାଇଁ ନଗଦ ପଇସାର ଆବଶ୍ୟକତା ରହିଛି। ମହାଜନୀ କାରବାର କରୁଥିବା ଅସାଧୁ ବ୍ୟବସାୟୀମାନେ କ୍ଷୁଦ୍ରଚାଷୀ, ନାମମାତ୍ର ଚାଷୀଙ୍କୁ ବିଭିନ୍ନ ପ୍ରଲୋଭନ ଦେଖାଇ ଖତ ସାର, ବିହନ, କୀଟନାଶକ ଆଣି ଯୋଗାଇ ଦିଅନ୍ତି ଓ ଯାହା ଦେଇଥାନ୍ତି, ତା'ର ଦେଢ଼ଗୁଣ ପରିମାଣର ଶସ୍ୟ ଜମି କିମ୍ବା ଖଳାରୁ ସଂଗ୍ରହ କରି ନେଇଥାନ୍ତି। ବନ୍ୟା, ବାତ୍ୟା, ମରୁଡ଼ି ଆଦିକୁ ସୁଦ୍ଧା ଏମାନେ ବିଚାରକୁ ନିଅନ୍ତି ନାହିଁ। ଫଳରେ ଋଣଗ୍ରସ୍ତ ଚାଷୀକୁଳ ଆତ୍ମହତ୍ୟା କରେ ନହେଲେ ଚାଷବାସ ଛାଡ଼ି ଦାଦନ ଯିବା ପାଇଁ ବାଧ ହୁଏ।

ଜଗତୀକରଣର ପ୍ରଭାବରେ ଆମେ ଉପଭୋକ୍ତାବାଦ ଜାଲରେ ଛନ୍ଦି ହେଇଯାଇଛେ। ଆୟ ଦେଖି ବ୍ୟୟ କରିବା ବଦଳରେ ବ୍ୟୟକୁ ଦେଖି ଆମେ ଆୟ କରିବା କଥା ଚିନ୍ତା କରୁଛୁ। ଆମ ଦ୍ରବ୍ୟ ମୋହକୁ ଚରିତାର୍ଥ କରିବା ପାଇଁ ଆମ ଏରୁଣ୍ଡି ପାଖରେ ଋଣଦାତା। ଫଳରେ ଆଗପଛ ବିଚାର ନକରି ସିସିଫସ୍ ପରି ଆମେ ଋଣ ବୋଝ ବୋହି ବୋହି ବଞ୍ଚି ଚାଲିଛୁ। ଏଥିରୁ କ'ଣ ଆମର ମୁକ୍ତି ନାହିଁ?



# ନାରୀ ଓ ଚାକିରି

ଆମେରିକାର ମହିଳାମାନଙ୍କ ମଧ୍ୟରେ ଏବେ ଏକ ନୂଆ ଭାବନାର ଅଙ୍କୁରଣ ହେଉଛି। ସେମାନେ ଆଉ କର୍ମଜୀବୀ ହେବାକୁ ଚାହୁଁ ନାହାଁନ୍ତି। ଦାପ୍ତରିକ କାର୍ଯ୍ୟ ପ୍ରତି ମହିଳାଙ୍କ ନିଷ୍ପୃହ ଭାବ ସେ ଦେଶର ଅର୍ଥନୀତିକୁ ପ୍ରଭାବିତ କରିବା ଆଶଙ୍କାରେ ବୁଦ୍ଧିଜୀବୀମାନେ ଉଦ୍‌ବେଗ ପ୍ରକାଶ କରୁଛନ୍ତି। ସେମାନେ ପୁଣି କିପରି କାର୍ଯ୍ୟମନସ୍କ ହେବେ, ସେଥିପାଇଁ ଉପଦେଶନ (କାଉନ୍‌ସେଲିଂ) ମାନ ଆରମ୍ଭ ହୋଇଗଲାଣି।

ଜାତି, ଧର୍ମ, ବର୍ଣ୍ଣ ଦେଶ ନିର୍ବିଶେଷରେ ପ୍ରତ୍ୟେକ ମହିଳା ସନ୍ତାନ ଲାଳନପାଳନ ସହ ଗୃହର ଯାବତୀୟ କାର୍ଯ୍ୟ ନିର୍ବାହ କରିବାକୁ ନିଜର ମୁଖ୍ୟ କର୍ତ୍ତବ୍ୟ ରୂପେ ଗ୍ରହଣ କରିଥାନ୍ତି। ଚାକିରି ତା' ପାଇଁ ଅତିରିକ୍ତ କାର୍ଯ୍ୟ। ସ୍ୱାମୀ ସ୍ତ୍ରୀ ଦୁହେଁ ଗୋଟିଏ ଅଫିସ୍‌ରେ ସମାନ ଶ୍ରମ କରୁଥିଲେ ବି ଘରକୁ ଫେରି ଆସିଲେ ସ୍ୱାମୀକୁ ବିଶ୍ରାମ ଲୋଡ଼ାହୁଏ। ଅଥଚ ସ୍ତ୍ରୀ ବିଚାରୀକୁ ରୋଷେଇଘରକୁ ଯାଇ ତା' କ୍ଳାନ୍ତ ସ୍ୱାମୀ ହାତକୁ ଚା' କପ୍‌ଟା ବଢ଼େଇ ଦେବାକୁ ପଡ଼େ। ତା' ଫେରିବା ବାଟକୁ ଚାହିଁ ବସିଥିବା ପରିବାରର ଅନ୍ୟାନ୍ୟ ସଦସ୍ୟଙ୍କ ଆବଶ୍ୟକତା ପୂରଣ କରେ। ଏଇଥିରେ ତା'ର ଆତ୍ମତୃପ୍ତି। ସେ କ୍ଳାନ୍ତି କ'ଣ ଜାଣେ ନାହିଁ। ଅୟସ ଆରାମ ତା' ପାଇଁ ସ୍ୱପ୍ନ। ଘର ଓ ଅଫିସ୍ - ଦୁଇଟା କାର୍ଯ୍ୟ ସମ୍ଭାଳିବା ଯେତେ ଦୁରୁହ ହେଲେ ବି ସେ ଚାକିରି କରିବାକୁ ଋହେଁ। ପରିବାରକୁ ଆର୍ଥିକ ନିରାପତ୍ତା ଦେବାକୁ ଋହେଁ।

ନାରୀ ପ୍ରଗତିର ଚରମ ସୀମାରେ ଉପନୀତ ହୋଇଥିବା ପାଶ୍ଚାତ୍ୟ ମହିଳାମାନେ ଆଉ ଏ ଅତିରିକ୍ତ ବୋଝକୁ ବହନ ନକରି ଚାପମୁକ୍ତ ରହିବାକୁ ଚାହୁଁଛନ୍ତି। ବିଶେଷତଃ ଅଭିଜାତ ମହିଳାମାନେ, ଯେଉଁମାନେ ଉଚ୍ଚଶିକ୍ଷିତ ଓ ଆର୍ଥିକ ଦୃଷ୍ଟିରୁ ସମ୍ପନ୍ନ। ଏଠାରେ ଲକ୍ଷ୍ୟ କରିବାର କଥା, ଏହି ବିକଶିତ ରାଷ୍ଟ୍ରର ମହିଳାମାନେ ସ୍ୱେଚ୍ଛାକୃତ ଭାବରେ ହାଉସ୍ ୱାଇଫ୍ ବା ଗୃହିଣୀ ଜୀବନ ବଞ୍ଚିବାକୁ ଚାହୁଁଛନ୍ତି; କୌଣସି ବାଧ୍ୟବାଧକତାରେ ନୁହେଁ। ଅଥଚ ଏମାନଙ୍କୁ ପୁଣି କାର୍ଯ୍ୟାନୁରାଗୀ କରିବା ପାଇଁ ରାଷ୍ଟ୍ର ପ୍ରଚେଷ୍ଟା କରୁଛି। ଅଥଚ ଆମ ଦେଶର ମହିଳାମାନଙ୍କୁ ଚାକିରି କରିବାକୁ ଉତ୍ସାହିତ କରାଯାଏ ନାହିଁ। ବିବାହର ଗୋଟିଏ ସର୍ତ୍ତ ଥାଏ - ବିବାହ ପରେ କରୁଥିବା ଚାକିରି ଛାଡ଼ିବା କିମ୍ବା ନୂଆ ଚାକିରି

ନକରିବା। ଦିନ ଥିଲା, ଝିଅମାନେ ପାଠ ପଢ଼ିଲେ ପରିବାରର ଅମଙ୍ଗଳ ହୁଏ ବୋଲି ବିଶ୍ୱାସ ଥିଲା। ଚାକିରି କରି ଅର୍ଥ ଉପାର୍ଜନ କଲେ ପରିବାରର ମାନସମ୍ମାନ କ୍ଷୁଣ୍ଣ ହୁଏ ବୋଲି କୁହାଯାଉଥିଲା। ଏବେ ଅବଶ୍ୟ ସେ ପରିସ୍ଥିତି ଆଉ ନାହିଁ। ତଥାପି କେତେକ ରକ୍ଷଣଶୀଳ ପରିବାରରେ ଝିଅ ବୋହୂମାନଙ୍କୁ ଚାକିରି କରିବାକୁ ଦିଆଯାଏ ନାହିଁ। ଝିଅ ଅଧୀନରେ ଘର ଚଳିଲେ ସାମାଜିକ ସମ୍ମାନ ହାନି ହୁଏ ବୋଲି ବିଧି ବ୍ୟବସ୍ଥା ମଧ୍ୟ ରହିଯାଇଛି।

ମହିଳାମାନେ କେବଳ ଅର୍ଥ ଉପାର୍ଜନ ପାଇଁ ଚାକିରି କରିନଥାନ୍ତି। ଅର୍ଥ ଉପାର୍ଜନ ଗୋଟିଏ ଦିଗ ହୋଇପାରେ। କିନ୍ତୁ ନିଜ ଦକ୍ଷତାର ସଦୁପଯୋଗ ଓ ନିଜ ବ୍ୟକ୍ତିତ୍ୱର ପରିପ୍ରକାଶ ପାଇଁ ଚାକିରି ବା କର୍ମକ୍ଷେତ୍ର ବିସ୍ତୃତ ପରିସର ସୃଷ୍ଟି କରେ; ଦୃଷ୍ଟିକୋଣ ବ୍ୟାପକ ହୁଏ। ସାମାଜିକ ପ୍ରତିଷ୍ଠା ମିଳେ। ସଂକୀର୍ଣ୍ଣତା, ସଂକୋଚବୋଧ ଦୂରୀଭୂତ ହୁଏ। ବ୍ୟକ୍ତିତ୍ୱ ବଳଶାଳୀ ହୁଏ। ଆତ୍ମନିର୍ଭରଶୀଳତା ବଢ଼େ। ସବୁଠାରୁ ବଡ଼କଥା ହେଲା, ଆତ୍ମବିଶ୍ୱାସ ଦୃଢ଼ ହୁଏ। ପରିବାରକୁ ଆର୍ଥିକ ସହାୟତା ଦେଉଥିବାରୁ ତା' ପ୍ରତି ପାରିବାରିକ ହିଂସା ହ୍ରାସ ପାଏ ଓ ତାକୁ ଅନ୍ୟମାନେ ସମ୍ମାନ ପ୍ରଦର୍ଶନ କରନ୍ତି। ନାରୀ ଓ ପୁରୁଷମାନଙ୍କ ମଧ୍ୟରେ ଆଉ ବିଭେଦର ରେଖା ନାହିଁ। ସମାଜରେ ମର୍ଯ୍ୟାଦାର ସହ ଉଭୟଙ୍କର ବଞ୍ଚିବାର ସମାନ ଅଧିକାର ଅଛି, ଏକଥା ସମସ୍ତେ ଉପଲବ୍ଧି କରି ସାରିଲେଣି। ତଥାପି ପୁରୁଷପ୍ରବଣ ଅସୁସ୍ଥ ଚିନ୍ତାଧାରା ବେଳେବେଳେ ଉଦ୍‌ଗୀରଣ ହୋଇପଡ଼େ। କେବେ ସେମାନଙ୍କ ପୋଷାକପତ୍ର ପ୍ରତି ଆକ୍ଷେପ ତ ପୁଣି କେବେ ସେମାନଙ୍କ ସ୍ୱଚ୍ଛନ୍ଦ ଚଳଣି, ସ୍ୱାଧୀନତା ଓ ସ୍ୱାଭାବିକ ଜୀବନଯାତ୍ରା ପ୍ରତି ବ୍ୟଙ୍ଗବିଦ୍ରୂପ ଓ କାଇଦା କଟକଣା। ଏପରିକି ନୋବେଲ ପୁରସ୍କାର ବିଜେତା ଡକ୍ଟର ଆର୍ଣ୍ଣଲଡ୍ ଟଏନ୍‌ବି କହିଥିଲେ - ନାରୀମାନେ ଗୃହତ୍ୟାଗ କରି ପଦାକୁ ଆସିବା ଦିନଠୁ ସାମାଜିକ ସଂହତି ନଷ୍ଟ ହୋଇଛି। ଚୀନ୍‌ର ସାହିତ୍ୟକାର କହନ୍ତି, ନାରୀର ସହାୟତା ନେଲେ ଯେତେ ସୁଦୃଢ଼ ଦୁର୍ଗ ହେଉପଛେ, ତାହା ଧୂଳିସାତ୍ ହୋଇଯିବ। ଭାରତୀୟ ଶାସ୍ତ୍ରକାର କହନ୍ତି, ଶହେଜଣ ପୁରୁଷ ଏକତ୍ର ରହିପାରିବେ, କିନ୍ତୁ ଦୁଇଜଣ ନାରୀ ଗୋଟାଏ ଛାତ ତଳେ ରହିବା ସମ୍ଭବ ନୁହେଁ। ଗ୍ରୀକ୍ ପୁରାଣ ଅନୁସାରେ ନାରୀ ଅବିଶ୍ୱାସୀ। ମୃତା ନାରୀକୁ ସୁଦ୍ଧା ବିଶ୍ୱାସ କରିବ ନାହିଁ। ନାରୀମାନଙ୍କୁ ଏପରି ଚିତ୍ରିତ କରିବାରେ ପୁରୁଷମାନଙ୍କର ନାରୀ ବିଦ୍ୱେଷୀ ବିକଳ ମାନସିକତା ଯେ ପ୍ରତିଫଳିତ, ତାହା ବୁଝାଇ କହିବା ଆବଶ୍ୟକ ନାହିଁ। ନାରୀମାନଙ୍କର ଶକ୍ତି ସାମର୍ଥ୍ୟରେ ନିଜେ ନିଷ୍ପ୍ରଭ ହୋଇଯିବାର ଭୟ ଯେଉଁମାନଙ୍କୁ ଅହରହ କବଳିତ କରିଥାଏ, ସେହିମାନେ ହିଁ ଏପରି ଦାୟିତ୍ୱହୀନ ମନ୍ତବ୍ୟମାନ ଦେଇଥାନ୍ତି।

'ୱିଚ୍' ଶବ୍ଦର ଆଭିଧାନିକ ଅର୍ଥ ହେଲା 'ଜ୍ଞାନୀ ନାରୀ'। ଇଂରାଜୀରେ ଏକ ପ୍ରବାଦ ଅଛି - 'ଏଭ୍ରି ଷ୍ଟ୍ରଙ୍ଗ ୱିମେନ୍ ଇଜ୍ ଏ ୱିଚ୍'। ଯେଉଁ ନାରୀ ନିଜର ନିଷ୍ଠା, ସାଧନା ଓ ଆତ୍ମବିଶ୍ୱାସ ବଳରେ ସମାଜରେ ନିଜ ସ୍ଥିତି ସୁଦୃଢ଼ କରନ୍ତି, ସେମାନଙ୍କୁ ଡାହାଣୀ କହି ପୋଡ଼ି ମାରି ଦିଆଯାଏ। ତାହା ଜର୍ମାନ୍‌ର ଜୋଆନ୍ ଅଫ୍ ଆର୍କ୍‌କୁ ପୋଡ଼ିବା ପରି - ସତକୁ ସତ ଅଗ୍ନିକୁଣ୍ଡରେ ହେଉ ଅଥବା ବଦନାମ୍‌ର ବହ୍ନିରେ। କାରଣ ଆବହମାନ କାଳରୁ ନୀତି ନିୟମମାନ ପୁରୁଷ ଦ୍ୱାରା ନିର୍ମିତ ଓ ନିୟନ୍ତ୍ରିତ ହୋଇଆସିଛି। ଶାରୀରିକ ଶକ୍ତିରେ ଆଧିକ୍ୟ ହେତୁ ସେମାନେ କବଳିତ କରିଛନ୍ତି ନାରୀ ସମାଜକୁ। କେବଳ କବଳିତ କରି ସନ୍ତୁଷ୍ଟ ରହିନାହାଁନ୍ତି, ସେମାନଙ୍କୁ ଲାଞ୍ଛିତ ଓ ଉପହସିତ କରିବାର ସର୍ବନିମ୍ନ ସୁଯୋଗ ବି ହାତଛଡ଼ା କରନ୍ତି ନାହିଁ। ନାରୀକୁ କେବେ ପାଦର ପାଣ୍ଡୋଇ କହନ୍ତି ତ କେବେ ନରକର ଦ୍ୱାର। ଜର୍ମାନ ସାହିତ୍ୟ କୁହେ, ନାରୀର ରୂପ ପରୀ ଭଳି। ତା'ର ବକ୍ଷରେ ଅଛି ସର୍ପର ହୃଦୟ ଓ ମସ୍ତିଷ୍କରେ ଗଧ ପରି ବୁଦ୍ଧି ରହିଛି। ଆୟାର୍ଲ୍ୟାଣ୍ଡର ଲୋକମାନେ କହନ୍ତି - ତିନୋଟି ଜୀବ ଆଇନ୍ କ'ଣ ଜାଣନ୍ତି ନାହିଁ। ଘୁଷୁରୀ, ନାରୀ ଓ ଘୋଡ଼ୀ। ପୁରୁଷମାନଙ୍କ ପ୍ରତି ଏପରି କଟୁକ୍ତିମାନ ନାରୀମାନେ ପ୍ରଦାନ କରନ୍ତି ନାହିଁ। ବରଂ ପୁରୁଷର ମଙ୍ଗଳ କାମନା କରି ନିଜକୁ ତିଳତିଳ ନିଃଶେଷ କରି ଚାଲିଥାଏ ନାରୀଟିଏ। ପୁରୁଷର ଆପଦବିପଦରେ ନିଜର ଦୁଃଖସୁଖ ଭୁଲି ସେବା ସୁଶ୍ରୁଷା, ସହଯୋଗ ସହାୟତା କରିଥାଏ। ମାତୃ ରୂପରେ, ଜାୟା ରୂପରେ, ଭଗିନୀ ରୂପରେ, କନ୍ୟା ରୂପରେ କେବେ ଅର୍ଦ୍ଧାହାର ତ କେବେ ସମ୍ପୂର୍ଣ୍ଣ ନିର୍ଜଳା ଅନାହାରରେ ପୁରୁଷର ଶୁଭ ମନାସି ଦିଅଁ ଦେବତା ଉଦ୍ଦେଶ୍ୟରେ ବ୍ରତ ଉପାସନା କରିଥାଏ। ଦୀପ ଜାଳି ରାତ୍ରି ଉଜାଗର ଥାଏ।

ଅବଶ୍ୟ ନାରୀର ଏ କଲ୍ୟାଣମୟୀ ଚେତନାକୁ ବହୁ ମହାତ୍ମା ସ୍ୱୀକାର କରିଛନ୍ତି। 'ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତା' ବୋଲି କହିଛନ୍ତି। ନାରୀକୁ ଆଦ୍ୟାଶକ୍ତି, ଦେବୀ ଆଖ୍ୟା ଦେଇଛନ୍ତି। ମାତୃଭାବ ସାଧନାର ଶେଷକଥା (ବିବେକାନନ୍ଦ) ବୋଲି କହିଛନ୍ତି। କିନ୍ତୁ ଏସବୁ ସତ୍ତ୍ୱେ ପ୍ରତି ଯୁଗରେ ନାରୀମାନେ ଲାଞ୍ଛିତ ହେବାର ବହୁ ପ୍ରମାଣ ରହିଛି। ଏବେ କୁହାଯାଉଛି, ନାରୀମାନେ ବାହାରକୁ ଆସି ଚାକିରି କରିବା ଦ୍ୱାରା ପୁରୁଷଙ୍କ ବେକାର ସମସ୍ୟା ବଢୁଛି। କେତେ ଦାୟିତ୍ୱହୀନ ମନ୍ତବ୍ୟ! ନାରୀମାନଙ୍କ ଅର୍ଜିତ ଧନ ପୁରୁଷମାନେ ବିନିଯୋଗ କରନ୍ତି। ନିକଟ ଅତୀତରେ ଆନ୍ତର୍ଜାତିକ ଶ୍ରମ ସଂଗଠନ (ଆଇଏଲ୍‌ଓ)ର ଏକ ପରିସଂଖ୍ୟାନ ଅନୁସାରେ, ପୃଥିବୀର ଲୋକସଂଖ୍ୟାର ପଚାଶ ଭାଗ ସିନା ମହିଳା, କିନ୍ତୁ ପୃଥିବୀର ଯେତେ କାର୍ଯ୍ୟ ସମୟ ରହିଛି, ତା'ର

ଦୁଇତୃତୀୟାଂଶରେ ରହିଛି ମହିଳାଙ୍କ ଭାଗ। ଅଥଚ ପୃଥିବୀର ସାମଗ୍ରିକ ସମ୍ପଦର ଶତକଡ଼ା ଏକଭାଗ ତା' ହାତରେ ଥାଏ। ବିକାଶଶୀଳ ରାଷ୍ଟ୍ରମାନଙ୍କର ଶତକଡ଼ା ୭୫ ଭାଗ ମହିଳା ନିଜ ଉପାର୍ଜନକୁ ସ୍ୱାଧୀନ ଭାବରେ ଖର୍ଚ୍ଚ କରିପାରିନଥାନ୍ତି। ପିତାମାତା ଦାରିଦ୍ର୍ୟରେ ସଢୁଥିଲେ ସୁଦ୍ଧା ସ୍ୱାମୀ ଶ୍ୱଶୁରଙ୍କ ବିନାନୁମତିରେ ସେମାନଙ୍କୁ ସହାୟତା କରିପାରେ ନାହିଁ। ଏପରିକି କନ୍ୟା ଅର୍ଜିତ ଧନକୁ ପିତାମାତା ଉପଭୋଗ କରିବା ଅପରାଧ ବୋଲି ସାମାଜିକ ପ୍ରଥା ପରମ୍ପରା କରିଦିଆଯାଇଛି।

ସାମ୍ପ୍ରତିକ ସମାଜରେ ନାରୀମାନଙ୍କ ପ୍ରତି ହିଂସା ଆଚରଣ କ୍ରମବର୍ଦ୍ଧିଷ୍ଣୁ ହେବା ବେଳେ ନାରୀକୁ ସ୍ୱାବଲମ୍ବୀ ହେବା ପାଇଁ ଉତ୍ସାହିତ କରିବାର ଆବଶ୍ୟକତା ରହିଛି। ନାରୀ ପୁରୁଷ ମଧ୍ୟରେ ସ୍ନେହ ସୌହାର୍ଦ୍ଦ୍ୟ ପ୍ରତିଷ୍ଠିତ ହେଲେ ପୁରୁଷମାନେ ଈର୍ଷା ପ୍ରଣୋଦିତ ହେବେନାହିଁ। ସମାଜର ବୁଦ୍ଧିଜୀବୀ ଓ ରାଜନେତାମାନେ ଯଦି ନାରୀକୁ ପୁରୁଷର ଦୁର୍ଦ୍ଦଶାର ହେତୁ ରୂପେ ପ୍ରତିପାଦନ କରିବେ, ତେବେ ସାଧାରଣ ପୁରୁଷମାନେ ନାରୀମାନଙ୍କ ପ୍ରତି ସମ୍ବେଦନଶୀଳ ହେବା ପରିବର୍ତ୍ତେ ଅସହିଷ୍ଣୁ ହୋଇପଡ଼ିବେ। କର୍ମକ୍ଷେତ୍ରରେ ନାରୀମାନଙ୍କର ସହଯୋଗୀ ପରିବର୍ତ୍ତେ ପୁରୁଷମାନେ ପ୍ରତିଯୋଗୀ ଓ ପ୍ରତିଯୋଗୀରୁ ପ୍ରତିଦ୍ୱନ୍ଦୀ ହେବେ। ସେହିଠାରୁ ପ୍ରତିଶୋଧ ପରାୟଣତାର ବିଷବୀଜ ଅଙ୍କୁରିତ ହେବ ଯାହାର ପରିଣତି ସମାଜ ପାଇଁ ଆଦୌ ହିତକର ନୁହେଁ।



# ସ୍ତ୍ରୀ ଧନ

ସ୍ତ୍ରୀ ରତ୍ନ ଓ ସ୍ତ୍ରୀ ଧନ ଆପାତତଃ ଏକାଭଳି ମନେ ହେଉଥିଲେ ମଧ୍ୟ ଭାବଗତ ଦୃଷ୍ଟିରୁ ଦୁଇଟିଯାକ ଶବ୍ଦର ଅର୍ଥ ସମ୍ପୂର୍ଣ୍ଣ ଭିନ୍ନ। ସ୍ତ୍ରୀ ରତ୍ନ କହିଲେ ଆମେ ବୁଝୁ ସ୍ତ୍ରୀ ରୂପକ ରତ୍ନ ବା ନାରୀ ରତ୍ନ। ପୂର୍ବରୁ ନାରୀମାନଙ୍କୁ ରତ୍ନ ସହ ତୁଳନା କରାଯାଉଥିଲା। ପୁରୁଷ ନାରୀକୁ ତା'ର ସମ୍ପତ୍ତି ବୋଲି ଭାବୁଥିଲା। ନାରୀ ରତ୍ନ, ରମଣୀ ରତ୍ନ, କନ୍ୟା ରତ୍ନ ଏସବୁ ବିଶେଷଣ ନାରୀ ପାଇଁ ଅତି ସହଜଲବ୍ଧ ହେଉଥିଲା। ସାଂପ୍ରତିକ ଯୁଗରେ ମଧ୍ୟ କନ୍ୟା ସନ୍ତାନ ସୁରକ୍ଷା ଯୋଜନାରେ ସ୍ଲୋଗାନ୍ ଦିଆଯାଉଛି - 'କନ୍ୟା ରତ୍ନ କର ଯତ୍ନ'। ନାରୀମାନଙ୍କୁ କେବଳ ରତ୍ନ ବୋଲି କୁହା ଯାଉନଥିଲା, ସେହିପରି ବ୍ୟବହାର ମଧ୍ୟ ପ୍ରଦର୍ଶନ କରାଯାଉଥିଲା। ଚାଣକ୍ୟ କହିଥିଲେ - ନାରୀ, ରତ୍ନ ଓ ନିଜ ପାପକୁ ସର୍ବଦା ଲୋକଲୋଚନ ଅନ୍ତରାଳରେ ରଖିବା ଉଚିତ୍। ପୁଣି ଉତ୍ତମ ନାରୀ, ଭୂମି ଓ ଗୋରୁ ଭାଗ୍ୟରେ ଥିଲେ ମିଳେ ବୋଲି ଆପ୍ତବାକ୍ୟ ରହିଛି। ନାରୀକୁ ରତ୍ନ ବୋଲି ଅତିଶୟ ଆଦର କରି ତାକୁ ଅଣନିଃଶ୍ୱାସୀ କରି ଦିଆଯାଇଛି, ସାତ ସିନ୍ଦୁକରେ ଭରି ଦିଆଯାଇଛି। ତା' ଉପରେ ସୂର୍ଯ୍ୟକିରଣ ପଡ଼ିବାକୁ ଦିଆଯାଇନାହିଁ। ସେ ରତ୍ନ, ସେ ଅଳଙ୍କାର। କେବଳ ଗୃହରେ ଶୋଭା ବର୍ଦ୍ଧନ କରିବା ତା'ର ଧର୍ମ, ବାହାର ଜଗତ ନୁହେଁ। ପୁରୁଷମାନେ ତାଙ୍କୁ ଇଚ୍ଛା ଅନୁସାରେ ବ୍ୟବହାର କରିପାରିବେ। କେତେବେଳେ ବିବାହ ତ ଆଉ କେତେବେଳେ କିଣାବିକା। ତା' ନିଜର କିଛି ଅସ୍ତିତ୍ୱ ଅଥବା ପ୍ରତିକ୍ରିୟା ନାହିଁ। କେତେବେଳେ ପଚାଶ ବର୍ଷର ବୃଦ୍ଧ ପଇସା ଦେଇ ବାର ବର୍ଷର କନ୍ୟାରତ୍ନକୁ କିଣିଲାଣି ତ ଆଉ କେତେବେଳେ କନ୍ୟା ରତ୍ନକୁ ଦାନ କଲାବେଳେ ଦକ୍ଷିଣାର ଅଭାବ ହେତୁ ପିତାମାତାମାନେ ସୁନ୍ଦରୀ ଗୁଣବତୀ କନ୍ୟାମାନଙ୍କୁ ଅଯୋଗ୍ୟ ଅକର୍ମଣ୍ୟ କୁତ୍ସିତ କଦାକାର ବରପାତ୍ର ହାତରେ ଅର୍ପଣ କରି ଦେଲେଣି। ଏବେ ସୁଦ୍ଧା କନ୍ୟା ରତ୍ନକୁ ପୁରୁଷ ହାତରେ 'ଅର୍ପଣ' ବା 'ସମର୍ପଣ' କରି ଦିଆଯାଉଛି ଠିକ୍ ବସ୍ତୁଟିଏ ପରି। ଏ ପର୍ଯ୍ୟନ୍ତ ଏହି ଶବ୍ଦଟି ଉପରେ କେହି ଆପତ୍ତି ଉଠେଇ ନାହାଁନ୍ତି। ବହୁଦିନ ପର୍ଯ୍ୟନ୍ତ ନାରୀମାନଙ୍କର ଏହି ସ୍ଥିତି ଥିଲା। କାବ୍ୟ କବିତାମାନଙ୍କରେ ନାରୀର ଶକ୍ତି ସାମର୍ଥ୍ୟ ଉପରେ ଗୁରୁତ୍ୱ ଦିଆଯାଉନଥିଲା। ତାକୁ ସମ୍ବୋଧନ କରାଯାଉଥିଲା 'ସୁନ୍ଦରୀ' ବୋଲି। ତା ସମ୍ପର୍କରେ ଯେଉଁଠି ବି କିଛି

କୁହାଯାଉଥିଲା, ତାହା କେବଳ ତା ଶୋଭା ସୌନ୍ଦର୍ଯ୍ୟର କଥା ଭିତରେ ସୀମିତ ରହୁଥିଲା; ତା'ର ଶକ୍ତି ସାମର୍ଥ୍ୟ କଥା ନୁହେଁ।

ଅବଶ୍ୟ ଆଜିକାଲି ଏ ମାନସିକତାରେ ଅନେକ ପରିବର୍ତ୍ତନ ହେଲାଣି। ଆଧୁନିକ ଚିନ୍ତା ଚେତନା ସମ୍ବଳିତ ମହିଳା ନାରୀ ରତ୍ନ, ରମଣୀ ରତ୍ନ ଆଦି ଶବ୍ଦ ପ୍ରୟୋଗକୁ ଅମର୍ଯ୍ୟାଦାଜନକ ବୋଲି ପ୍ରତିବାଦ କରିବା ଆରମ୍ଭ କଲେଣି। ସେମାନଙ୍କ ଯୁକ୍ତି ହେଲା- ନାରୀ ବସ୍ତୁ ନୁହେଁ, ଶକ୍ତି। ତାକୁ ରତ୍ନ ବୋଲି କୁହାଯାଇପାରିବ ନାହିଁ। ସେ ରକ୍ତମାଂସଧାରିଣୀ ମଣିଷଟିଏ। ସେ ସକ୍ରିୟ, ସେ ସଜୀବ। ସେ ନିଜେ ଗଢ଼ିପାରେ, ଭାଙ୍ଗି ବି ପାରେ। ସୃଷ୍ଟି, ସ୍ଥିତି, ପ୍ରଳୟ- ସବୁକିଛି ତା'ର ଅଧୀନ। ତେଣୁ ତା ପାଇଁ 'କନ୍ୟା ରତ୍ନ କର ଯତ୍ନ' ନୁହେଁ ବରଂ ତା ପାଇଁ 'ନାରୀ ଶକ୍ତି କର ଭକ୍ତି' ଅଧିକ ପ୍ରଯୁଜ୍ୟ ହେବ।

ଏଥର ଆସିବା ସ୍ତ୍ରୀ ଧନ ପ୍ରସଙ୍ଗକୁ। ସ୍ତ୍ରୀ ରତ୍ନଠାରୁ ସ୍ତ୍ରୀ ଧନ ସମ୍ପୂର୍ଣ୍ଣ ଭିନ୍ନାର୍ଥବୋଧକ। ସ୍ତ୍ରୀ ଧନ ରୂପକ ଧନ ନୁହେଁ, ସ୍ତ୍ରୀର ଧନ ଧନ, ଯେଉଁ ଧନ ଉପରେ ସମ୍ପୂର୍ଣ୍ଣ ଭାବରେ ତା'ର ଅଧିକାର ଥାଏ। କାହାର ଅନୁମତି ବିନା ସେ ସ୍ୱାଧୀନ ଭାବରେ ତାହା ଉପଭୋଗ କରିପାରିବ; ଖର୍ଚ୍ଚ କରିପାରିବ; ଯାହାକୁ ଇଚ୍ଛା, ତାକୁ ଦାନ କରିପାରିବ କିମ୍ବା ତା ଇଚ୍ଛାନୁସାରେ କାହାପାଇଁ ଇଚ୍ଛାପତ୍ର (ଉଇଲ୍) କରିପାରିବ। ତା ପିତାଗୃହ କିମ୍ବା ପତିଗୃହ - କେହି ସେଥିରେ ଆପତ୍ତି କରିପାରିବେ ନାହିଁ। ଆଇନ୍ ଅନୁସାରେ ସେ ନିଜେ ସେହି ସମ୍ପତ୍ତିର କଷ୍ଟୋଡିଆନ୍ ବା ସଂରକ୍ଷକ ଭାବରେ କାର୍ଯ୍ୟ କରିଥାଏ। ଅବଶ୍ୟ ପ୍ରାକୃତିକ ବିପର୍ଯ୍ୟୟ ବେଳେ ସ୍ୱାମୀ ସେହି ଧନକୁ ଖର୍ଚ୍ଚ କରିପାରେ, ପରେ ତାହା ଭରଣା କରିବା ଉଦ୍ଦେଶ୍ୟରେ। ଆମ ସମାଜରେ ଝିଅ ବାହା ହେବା ପାଇଁ ବୋହୂ ବାପଘରୁ ଆଣିଥିବା ଜାନିଯୌତୁକକୁ ନିର୍ବିବାଦରେ ବ୍ୟବହାର କରାଯାଇଥାଏ। ସେମାନଙ୍କ ଯୁକ୍ତି ହେଲା, ବୋହୂ ବାପଘରୁ ଆଣିଥିବା ସାମଗ୍ରୀ ଶାଶୁଘର ଲୋକଙ୍କର ହୋଇଥାଏ। ତେଣୁ ସେମାନେ ତାକୁ ଯେପରି ବ୍ୟବହାର କଲେ ବି ବୋହୂର ପ୍ରତିବାଦ କରିବାର ଅଧିକାର ନଥାଏ। ବେଳେବେଳେ ଅଭିଭାବକମାନେ ଚତୁରତାର ସହ ପୁଅ ଓ ଝିଅଙ୍କ ବିବାହ ଗୋଟିଏ ତାରିଖରେ କରନ୍ତି। ଗୋଟିଏ ଭୋଜିରେ ତ ଚଳିଯାଏ, ପୁଣି ବିଧି ଅନୁସାରେ ବୋହୂ ଆଣିଥିବା ସାମଗ୍ରୀ ସବୁ ଝିଅ ପାଇଁ ବ୍ୟବହୃତ ହୋଇଥାଏ।

ପିତ୍ରାଳୟରୁ ପାଇଥିବା ଶ୍ରଦ୍ଧା ଉପହାରସବୁକୁ ବିଚରା ବୋହୂଟିକୁ ଦେଖିବାକୁ ସୁଯୋଗ ମିଳିନଥାଏ। ଫଳତଃ ପ୍ରଥମ ଦିନରୁ ବୋହୂଟି ଶାଶୁଘରର ସ୍ୱାର୍ଥପରତାକୁ ବରଦାସ୍ତ କରିପାରେ ନାହିଁ। ପରସ୍ପର ମଧ୍ୟରେ ଯେଉଁ ମାନସିକ ବ୍ୟବଧାନ ସୃଷ୍ଟି ହୁଏ, ତାହା ପାରିବାରିକ ହିଂସାର ସୂତ୍ରପାତ କରେ। ବାପଘରୁ ଆଣିଥିବା ଧନର୍ ଅନୁଚିତ

ବ୍ୟବହାରରେ ସ୍ତ୍ରୀଟି ଆଘାତ ପାଇଥାଏ। ବର୍ଷ ବର୍ଷ ଧରି ତା ପିତାମାତା ତା ପାଇଁ ଶ୍ରଦ୍ଧାରେ ସାଇତି ରଖିଥିବା ଦ୍ରବ୍ୟମାନଙ୍କୁ ଯଥେଚ୍ଛାଚାର କରାଯାଇଥାଏ। ଜମିବାଡ଼ି ବିକି, ଘରଡ଼ିହ ବନ୍ଧା ପକାଇ ତା ପିତୃପ୍ରଦତ୍ତ ଯୌତୁକ ଅର୍ଥକୁ ବାଣ ରୋଷଣୀରେ ଉଡ଼େଇ ଦିଆଯାଏ। ଅଳଙ୍କାର ଆଦି ଅନ୍ୟାନ୍ୟ ସୌଖୀନ ଉପକରଣ ବନ୍ଧୁବାନ୍ଧବଙ୍କୁ ବାଣ୍ଟି ଦିଆଯାଏ, ଯେଉଁଗୁଡ଼ିକୁ ସ୍ତ୍ରୀ ଧନ ବୋଲି ସର୍ବୋଚ୍ଚ ନ୍ୟାୟାଳୟ ମତ ଦେଇଛନ୍ତି।

ହିନ୍ଦୁ ବିବାହ ଆଇନ୍‌ର ବ୍ୟାଖ୍ୟା କରି ଗୁରୁଦାସ ବାନାର୍ଜୀ ସ୍ତ୍ରୀ ଧନକୁ ସୌଦାୟିକା ବୋଲି କୁହନ୍ତି। ବିବାହ ସମୟରେ ଝିଅଟିକୁ ସ୍ନେହଶ୍ରଦ୍ଧାରେ ସମସ୍ତ ଉପହାରେ ସୌଦାୟିକ ଅନ୍ତର୍ଭୁକ୍ତ। ସେଥିରେ ଝିଅ ଛଡ଼ା ଅନ୍ୟ କାହାର ଅଧିକାର ନଥାଏ। ଏହାଛଡ଼ା ସ୍ତ୍ରୀଟି କୌଣସି ସୂତ୍ରରୁ ବୃତ୍ତି ପାଉଥିଲେ କିମ୍ବା କୌଣସି ବ୍ୟବସାୟିକ ପ୍ରତିଷ୍ଠାନରୁ ତା ନାଁରେ ଲାଭାଂଶ ଆସୁଥିଲେ, ତାହା ମଧ୍ୟ ସ୍ତ୍ରୀ ଧନ ପର୍ଯ୍ୟାୟଭୁକ୍ତ। ଏପରିକି ବିବାହ ସମୟରେ ସ୍ୱାମୀ କିମ୍ବା ଶାଶୁଘର ତରଫରୁ ମିଳିଥିବା ଅଳଙ୍କାର, ଉପହାର, ଉପଢ଼ୌକନରେ ମଧ୍ୟ ମହିଳାଟିର ସମ୍ପୂର୍ଣ୍ଣ ଅଧିକାର ରହିଛି। କୌଣସି ପରିସ୍ଥିତିରେ ଏସବୁକୁ କେହି ତା' ଠାରୁ ଜବରଦସ୍ତ ନେଇପାରିବେ ନାହିଁ।

ଏବେ ସ୍ତ୍ରୀ ଧନ ସହ ଆଉ ଗୋଟିଏ ଅଧ୍ୟାୟ ଯୋଡ଼ି ହୋଇଯାଇଛି। ମହିଳାମାନଙ୍କ ଆର୍ଥିକ ସ୍ଥିତି ଏବେ କେବଳ ଆତ୍ମୀୟସ୍ୱଜନଙ୍କଠାରୁ ମିଳିଥିବା ଉପଢ଼ୌକନ, ଉପହାର କିମ୍ବା ଉତ୍ତରାଧିକାର ସୂତ୍ରରେ ମିଳିଥିବା ସମ୍ପତ୍ତି ମଧ୍ୟରେ ସୀମିତ ନୁହେଁ। ନିଜେ ପରିଶ୍ରମ କରି ସେମାନେ ନିଜର ଆର୍ଥିକ ସ୍ଥିତି ସ୍ୱଚ୍ଛଳ କରି ପାରୁଛନ୍ତି। ନିଜେ ଆତ୍ମନିର୍ଭରଶୀଳ ହୋଇ ଅନ୍ୟମାନଙ୍କର ଦାୟିତ୍ୱ ବହନ କରିବାରେ ସମର୍ଥ ହେଲାଣି। ଉଚ୍ଚ ପଦପଦବୀରେ ଅଳଙ୍କୃତା ହୋଇଥିବା ମହିଳାଙ୍କ ପାଖରୁ ଗାଁ ଗହଳର ସ୍ୱୟଂ ସହାୟିକା ଗୋଷ୍ଠୀ ପର୍ଯ୍ୟନ୍ତ। ନାରୀମାନେ ଆଉ ଆର୍ଥିକ ସୁରକ୍ଷା ପାଇଁ ପୁରୁଷଙ୍କୁ ଅନୁକରଣ କରୁନାହାଁନ୍ତି। ଦେଶର ଅଧିକାଂଶ ଶିଳ୍ପ ପ୍ରତିଷ୍ଠାନ କିମ୍ବା ବ୍ୟବସାୟିକ ଅନୁଷ୍ଠାନର ପରିଚାଳନା ଓ ପ୍ରଶାସନିକ କାର୍ଯ୍ୟ କରିବା ପାଇଁ ଉଚ୍ଚତମ କ୍ଷେତ୍ରରେ ଏହାର ସଦୁପଯୋଗ ହୋଇପାରୁ ନାହିଁ। ମହିଳାଟିଏ ପାଖରେ ସକଳ ଆର୍ଥିକ କ୍ଷମତା ଥାଇ ସୁଦ୍ଧା ସେ ତା'ର ଅର୍ଜିତ ଅର୍ଥକୁ ନିଜ ଇଚ୍ଛାରେ ବିନିଯୋଗ କରିପାରୁନାହିଁ। ତା'ର ପୈତୃକ ଅଂଶର କାହାକୁ ସାହାଯ୍ୟ କରିବାକୁ ଚାହିଁଲେ ଶାଶୁଘର ଲୋକେ ପ୍ରତିବନ୍ଧକ ସାଜୁଛନ୍ତି। ଏପରିକି ବୃଦ୍ଧ ପିତାମାତା ଅସୁସ୍ଥ କିମ୍ବା ଅସହାୟ ଥିଲେ କିମ୍ବା ପୁଅବୋହୂଙ୍କ ଦ୍ୱାରା ଅତ୍ୟାଚାରିତ ହେଉଥିଲେ ସେ ନିଜେ ସେମାନଙ୍କୁ ପାଖରେ ରଖି ସେବାସୁଶ୍ରୁଷା କରିପାରୁ ନାହିଁ। କନ୍ୟାର୍ଜିତ ଧନରେ କିମ୍ବା କନ୍ୟାର ଶାଶୁଘରେ ପିତାମାତା ପ୍ରତିପୋଷଣ ହେବାକୁ ଆମ ସାମାଜିକ ପ୍ରଥା, ପରମ୍ପରା

ବିରୋଧ କରେ। ଝିଅ ଧନ ଖାଇବା ମହାପାପ ବୋଲି ପରିଗଣିତ ହୁଏ। ଝିଅ ଦେଇଥିବା ଘରେ ପିତାମାତା ଖାଦ୍ୟ ଖାଇ ଋଣୀ ହେବାକୁ ଚାହାଁନ୍ତିନି। ଶଙ୍ଖପାଣି ଲେଉଟେ ନାହିଁ। ଝିଅ ଘରକୁ କେବଳ ଯାଏ; କିଛି ଫେରେ ନାହିଁ। ଏମିତି କେତେ କଥା।

ସ୍ତ୍ରୀ ଧନରେ ଅୟସ କରିବା ଗୋଷ୍ଠୀ ବି ଅଛନ୍ତି ସମାଜରେ। ଆଦିବାସୀ ସଂପ୍ରଦାୟରେ ନାରୀମାନେ ପରିଶ୍ରମୀ ଓ କଷ୍ଟସହିଷ୍ଣୁ। ସେମାନଙ୍କ ସମାଜରେ ଯୌତୁକ ପ୍ରଥା ନାହିଁ। ବରଂ ଝୋଲାଟଙ୍କା (କନ୍ୟା ସୁନା) ବାବଦକୁ ବରପିତା କନ୍ୟାପିତାକୁ କିଛି ଅର୍ଥ ଦେଇଥାଏ। କିନ୍ତୁ ବିବାହ ପରେ ସ୍ତ୍ରୀଲୋକଟି ପରିବାରର ମୁଖ୍ୟ ରୋଜଗାରୀ ମଣିଷ। ତା ହାତରେ ଥାଏ କଞ୍ଚା ପଇସା। ଯାବତୀୟ ଗୃହକାର୍ଯ୍ୟ ସମ୍ପନ୍ନ କରିସାରି ସେ ବଣରୁ ଫଳମୂଳ ଆଦି ବନ୍ୟଜାତ ଦ୍ରବ୍ୟ ସଂଗ୍ରହ କରି ବଜାରରେ ବିକାକିଣା କରିଥାଏ। ଛୋଟକାଟର ବେପାର ବଣିଜ କରି ପରିବାର ଚଳେଇ ଥାଏ। ଅଧିକାଂଶ ପୁରୁଷ ନିକମ୍ମା, ଆଳସ୍ୟପରାୟଣ ଓ ନିଶାଗ୍ରସ୍ତ। ସେମାନଙ୍କ ପ୍ରତିପୋଷଣ ସହ ନିଶାପାଣି ଖର୍ଚ୍ଚ ମଧ୍ୟ ନାରୀ ବହନ କରିଥାଏ। ଏଠାରେ ସ୍ତ୍ରୀ ଧନକୁ ନିର୍ବିବାଦରେ ପୁରୁଷ ଖର୍ଚ୍ଚ କରିଥାଏ। ଏଥିରେ ସାମାଜିକ ଲଜ୍ଜା, ସଂକୋଚ ନଥାଏ। ଏହା ତାଙ୍କର ଜୀବନଶୈଳୀ।

ନାରୀମାନେ ଚାକିରି କରିବା ଦ୍ୱାରା ପୁରୁଷମାନଙ୍କ ବେକାର ସମସ୍ୟା ବୃଦ୍ଧି ପାଉଛି ବୋଲି ଜଣେ ମନ୍ତ୍ରୀଙ୍କ ବିବାଦୀୟ ମନ୍ତବ୍ୟ ନିକଟ ଅତୀତରେ ବହୁଚର୍ଚ୍ଚିତ ହୋଇଥିଲା। ବେକାର, ବେରୋଜଗାରମାନେ ଏବେ ଚାକିରିଆ ସ୍ତ୍ରୀ ବିବାହ କରିବାକୁ ଇଚ୍ଛା ପ୍ରକାଶ କରୁଛନ୍ତି। ଏହିମାନେ ହିଁ କର୍ମଜୀବୀ ମହିଳାଙ୍କର ସବୁଠାରୁ ବଳି ବଡ଼ ଦୁଃଖ। ଏମାନେ ସ୍ତ୍ରୀ ଧନରେ ବଞ୍ଚନ୍ତି ସତ, ପ୍ରତିବଦଳରେ ସ୍ତ୍ରୀ ପତ୍ରି ସନ୍ଦେହ, ଅବିଶ୍ୱାସ ଓ ନ୍ୟୁନବୋଧତା ଦ୍ୱାରା ବିଚରା ମହିଳାଟିର ଜୀବନକୁ ଦୁର୍ବିସହ କରି ଦିଅନ୍ତି। ସ୍ତ୍ରୀମାନେ ସମ୍ମାନିତ ହୁଅନ୍ତୁ। ଅର୍ଜିତ ହେଉ କି ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ, ସ୍ତ୍ରୀ ଧନର ସଦୁପଯୋଗ ହେଉ। ସ୍ତ୍ରୀ ଧନ କେବଳ ଅୟସ ପାଇଁ ନୁହେଁ, ତା'ର ମଧ୍ୟ ସମାଜ ପାଇଁ ମହତ୍ତ୍ୱ ରହିଛି - ଏକଥା ସମସ୍ତେ ହୃଦୟଙ୍ଗମ କରିବା ଉଚିତ୍।



# ପତିତାଶ୍ରମ କାହିଁକି ?

ରାମଚନ୍ଦ୍ର ଜାଣିଥିଲେ ସୀତା ନିଷ୍କଳଙ୍କ । ହୋମଶିଖା ପରି ପବିତ୍ର । କିନ୍ତୁ ଜଣେ ଅଧେ ପରଛିଦ୍ରାନ୍ୱେଷୀ ପ୍ରଜାଙ୍କ ଅନୁରଞ୍ଜନ ପାଇଁ ସେ ତାଙ୍କୁ ପରିତ୍ୟାଗ କରିଥିଲେ । ଅଯୋଧ୍ୟାର ରାଜବଧୂ ସୀତା ଆଶ୍ରୟ ନେଇଥିଲେ ଋଷି ବାଲ୍ମିକୀଙ୍କ ଆଶ୍ରମରେ । ଦୁଷ୍ମନ୍ତ ମଧ ଶକୁନ୍ତଳାଙ୍କ ଗର୍ଭସ୍ଥ ସନ୍ତାନର ପିତୃତ୍ୱକୁ ଅସ୍ୱୀକାର କରିବା ପରେ ସେ ଆଜନ୍ମ ପରିପାଳିତ କଣ୍ୱ ମୁନିଙ୍କ ଆଶ୍ରମକୁ ଫେରିବା ଉଚିତ୍ ମଣି ନଥିଲେ; ଆଉଜଣେ ଋଷିଙ୍କ ଆଶ୍ରମରେ ଆଶ୍ରୟ ନେଇଥିଲେ । କାରଣ ଯାହା ହେଉନା କାହିଁକି, ଜଣେ ମିଥ୍ୟା ଅପବାଦ ଆଶଙ୍କାରେ ପରିତ୍ୟକ୍ତା ହୋଇଥିଲା ବେଳେ ଆଉ ଜଣେ ପ୍ରତାରିତା ହୋଇଥିଲେ । ଦୁହେଁ ଆଶ୍ରୟ ନେଇଥିଲେ ଋଷି ଆଶ୍ରମରେ । ଷୋଡଶ ଶତାବ୍ଦୀ ବେଳକୁ ଆମର ଗୁଡ଼ାଏ ସାମାଜିକ ବିବର୍ତ୍ତନ ହୋଇ ସାରିଲାଣି । ନାରୀମାନେ ଅନେକାଂଶରେ ଆତ୍ମବିଶ୍ୱାସ ଫେରି ପାଇଲେଣି । ତେଣୁ ବଳରାମ ଦାସ ଲକ୍ଷ୍ମୀଙ୍କ ମୁଖରେ କହୁଛନ୍ତି ସେ ଯଦି ପିତାଘର ଯିବେ, କଳିଯୁଗରେ ପୁରୁଷମାନେ ନାରୀଙ୍କୁ ଖୋଜିବେ ନାହିଁ । ସେହି ହେତୁ ଜଗନ୍ନାଥଙ୍କ ଦ୍ୱାରା ପରିତ୍ୟକ୍ତା ହୋଇ ସେ ଅତି ନିକଟରେ ଥିବା ନିଜ ପିତ୍ରାଳୟରେ (ସମୁଦ୍ର) କିମ୍ବା ଅନ୍ୟ କେଉଁଠି ଆଶ୍ରୟ ନେଇ ନାହାଁନ୍ତି । ନିଜ ଶକ୍ତି ସାମର୍ଥ୍ୟ ବଳରେ ନିଜପାଇଁ ସୁଦୃଢ଼ ବାସଗୃହ ନିର୍ମାଣ କରିପାରିଛନ୍ତି ଓ ତାଙ୍କ ପ୍ରତି ଜଗନ୍ନାଥ ଓ ବଳଭଦ୍ର ଯେଉଁ ଅନ୍ୟାୟ କରିଥିଲେ, ତା'ର ଉଚିତ୍ ଶାସ୍ତି ଦେଇପାରିଛନ୍ତି । ଏ ପ୍ରସଙ୍ଗରେ ଆମ ପାଇଁ ସୀତା କିମ୍ବା ଶକୁନ୍ତଳା ନୁହଁନ୍ତି, ବରଂ ଲକ୍ଷ୍ମୀ ହିଁ ହେଉଛନ୍ତ ଆଦର୍ଶ; ପ୍ରେରଣାର ଉତ୍ସ ।

ନାରୀ ପତିତା ହେଲେ ତା'ପାଇଁ ପିତାଗୃହ ଓ ପତିଗୃହ - ଉଭୟର ଦ୍ୱାର ବନ୍ଦ ହୋଇଯାଏ । ପତିଗୃହର ଲୋକେ ଘୃଣା ଓ ଅସୂୟାରେ ଏବଂ ପିତାଗୃହର ଲୋକେ ଲୋକଲଜ୍ଜା ଭୟରେ ତାକୁ ପରିତ୍ୟାଗ କରନ୍ତି । ସେ ରାସ୍ତାକଡ଼ରେ ବୁଲିଲେ ତା ପ୍ରତି ବିପଦ ଆହୁରି ବଢ଼ିଯାଏ । ସେତେବେଳେ ତା ପାଇଁ ଗୋଟିଏ ନିର୍ଭୟ ଆଶ୍ରୟସ୍ଥଳ ଆବଶ୍ୟକ ହୁଏ - ତାହା ଋଷି ଆଶ୍ରମ ହେଉ କି ସମ୍ଭ୍ରାନ୍ତ ଧନୀ, ଜମିଦାର ଓ ରାଜା ମହାରାଜାଙ୍କର ଅନ୍ତଃପୁର । ପୂର୍ବେ ସାମାଜିକ ସ୍ତରରେ ଅନେକ ଦୁଃସ୍ଥ, ଅସହାୟ ମହିଳାଙ୍କର ଥଇଥାନ ହୋଇଯାଉଥିଲା । ଏପରିକି ସମ୍ଭ୍ରାନ୍ତ ବଂଶର କନ୍ୟାମାନଙ୍କ ବିବାହ

କାଳରେ ପୋଇଲି ରୂପରେ ଏମାନଙ୍କୁ କନ୍ୟାର ଶାଶୁଘରକୁ ପଠାଯାଉଥିଲା। ଏବେ କିନ୍ତୁ ପତିତା, ଅସହାୟା ମହିଳାମାନଙ୍କ ପାଇଁ ସରକାରୀ ଓ ବେସରକାରୀ ସ୍ତରରେ ସ୍ୱତନ୍ତ୍ର ଆଶ୍ରୟସ୍ଥଳୀ ଓ ଆଶ୍ରମମାନ ପ୍ରତିଷ୍ଠା ହେଉଛି। ସେଗୁଡ଼ିକୁ ପତିତାଶ୍ରମ ବା ସର୍ଟ୍ ଷ୍ଟେ ହୋମ୍ (ସ୍ୱଳ୍ପକାଳ ରହଣିସ୍ଥଳ) ଆଦି କୁହାଯାଉଛି। ସେଠାରେ ସେମାନଙ୍କୁ ମାଗଣାରେ ରହିବା, ଖାଇବା ବ୍ୟବସ୍ଥା ସହ ଆତ୍ମନିର୍ଭରଶୀଳ ହେବାପାଇଁ ତାଲିମ୍ ମଧ୍ୟ ଦିଆଯାଉଛି, ଯେପରି ଏଠାରୁ ଗଲା ପରେ ସେମାନେ ପୁଣି ପେଟ ପୋଷିବା ପାଇଁ ବାରଦ୍ୱାର ନ ହୁଅନ୍ତି ଓ ଅସାମାଜିକ ଲୋକେ ସେମାନଙ୍କୁ ଶୋଷଣ ନ କରନ୍ତି। କିନ୍ତୁ ଯେହେତୁ ଏମାନଙ୍କର ପାରିବାରିକ ସୁରକ୍ଷା ନଥାଏ, ତେଣୁ ଏମାନେ ପୁଣି ଧୂର୍ତ୍ତ ଓ ଅସାମାଜିକମାନଙ୍କ ଜାଲରେ ଫସି ଯାଆନ୍ତି।

ଆମ ସମାଜରେ ପୁରୁଷମାନଙ୍କ ପାଇଁ ପତିତ ଆଶ୍ରମ ନାହିଁ କିମ୍ବା ସେମାନେ ପରିବାରଚ୍ୟୁତ ହୁଅନ୍ତି ନାହିଁ। ପୁରୁଷକୁ ପତିତ ବୋଲି କହି ଭ୍ରୂକୁଞ୍ଚିତ କରାଯାଏ ନାହିଁ। ଏ ଶବ୍ଦ ନାରୀମାନଙ୍କ ପାଇଁ ବହୁଳ ବ୍ୟବହାର ହୋଇଥାଏ। ପୁରୁଷର ଦୁଷ୍କର୍ମ ହେତୁ ନାରୀ ପୀଡ଼ିତା ହୁଏ; ପତିତା ହୁଏ। କିନ୍ତୁ ଆମ ସମାଜର ବିଧି ବ୍ୟବସ୍ଥା ଏପରି ଯେ ପୀଡ଼ିତା ନାରୀକୁ ସମାଜ ଘୃଣା ଦୃଷ୍ଟିରେ ଦେଖେ। ପରିବାର ଲୋକଲଜ୍ଜା ଭୟରେ ତାକୁ ଗ୍ରହଣ କରେନାହିଁ। ପୀଡ଼ିତାଟି ଯେଉଁ ମୁହୂର୍ତ୍ତରେ ନିଜ ଲୋକମାନଙ୍କର ସାହାଯ୍ୟ ସହାନୁଭୂତି ଆବଶ୍ୟକ କରୁଥାଏ, ତା ପାଖରୁ ସେତିକିବେଳେ ସେମାନେ ଦୂରେଇ ଯାଆନ୍ତି। ଅଘଟଣଟି ଯଦି ବାହାରେ ପ୍ରଘଟ ହୋଇନଥାଏ, ସାମାଜିକ ପ୍ରତିଷ୍ଠା କ୍ଷୁଣ୍ଣ ହେବା ଆଶଙ୍କା କରି ପରିବାର ଲୋକେ ପୀଡ଼ିତାକୁ ମୁହଁ ବନ୍ଦ ରଖିବା ପାଇଁ ନିର୍ଦ୍ଦେଶ ଦେଇଥାନ୍ତି। ଅନେକ ସମୟରେ ତ ସମସ୍ୟାର ସମାଧାନ ପାଇଁ ବଳାତ୍କାରୀ ସହ ପୀଡ଼ିତାର ବିବାହ ମଧ୍ୟ କରି ଦିଆଯାଇଥାଏ। ଆଶଙ୍କା ଥାଏ ଯେ ଝିଅଟିଏ ଥରେ ବଳାତ୍କାରର ଶିକାର ହେଲେ ସେ ପତିତା ହୋଇଗଲା। ତାକୁ ଆଉ କେହି ବିବାହ କରିବେ ନାହିଁ। ଏପରିକି ଦୁଷ୍କର୍ମ ପୀଡ଼ିତା ଝିଅଟିର ପରିବାରର ଅନ୍ୟ ଅବିବାହିତ ପୁଅଝିଅଙ୍କ ବିବାହ ମଧ୍ୟ ସମସ୍ୟା ହୋଇପଡ଼େ। କେତେକ ସମ୍ପ୍ରଦାୟରେ ଦୁଷ୍କର୍ମକାରୀକୁ ନୁହେଁ ବରଂ ଦୁଷ୍କର୍ମର ଶିକାର ହୋଇଥିବା ଝିଅଟିର ପରିବାରକୁ ବାସନ୍ଦ କରାଯାଇଥାଏ। ତା' ଘରକୁ ନିଆଁପାଣି ବନ୍ଦ କରାଯାଇଥାଏ।

ସମାଜରେ ସବୁ ବର୍ଗର ଲୋକେ ଝିଅବୋହୂଙ୍କ ଇଜ୍ଜତକୁ ପରିବାର ଆବ୍ରୁ ବା ଇଜ୍ଜତ ବୋଲି ଗ୍ରହଣ କରିଥାନ୍ତି। ସେଥିରେ ଏତେଟିକେ ଆଞ୍ଚ ଆସିଲେ ସେମାନେ ବ୍ୟତିବ୍ୟସ୍ତ ହୋଇପଡ଼ନ୍ତି। ଏହି ହେତୁ ଅନର କଲିଂ ପରି ଅପରାଧମାନ ହୋଇଥାଏ। ଆମ ସମାଜରେ ତଥାକଥିତ ଉଚ୍ଚଶିକ୍ଷିତମାନେ ଏହି ମାନସିକତାରୁ ମୁକ୍ତ ହୋଇ

ନଥିବାବେଳେ ରାଜସ୍ଥାନର ସେଇ ଦଳିତ ମହିଳା ପୀଡ଼ିତା ଭଉଁରୀ ଦେବୀର ନିର୍ଭୀକ ଉଚ୍ଚାରଣ ସମସ୍ତଙ୍କର ପ୍ରଣିଧାନ ଯୋଗ୍ୟ। ସେ ଦୃଢ଼ ସ୍ୱରରେ କହିଥିଲା - ମୋର ଏଥିରେ ଲଜ୍ଜିତ ହେବାର କ'ଣ ଅଛି ! ଲଜ୍ଜା ତ ସେଇମାନଙ୍କୁ ଲାଗିବା କଥା, ଯେଉଁମାନେ ମୋ ସହ ଏହି ଅପରାଧ କରିଛନ୍ତି। ଏହି ମହିଳାଟିର ବିଚାର ସହ ଯଦି ଆମ ସମସ୍ତଙ୍କର ବିଚାର ମିଶିଯାଆନ୍ତ, ତେବେ ପତିତା ଆଶ୍ରମର ଆବଶ୍ୟକତା ହୋଇନଥାନ୍ତା କି ପୀଡ଼ିତାମାନେ ଆତ୍ମହତ୍ୟା କରିନଥାନ୍ତେ କି ସଂକୁଚିତା ହୋଇନଥାନ୍ତେ। ଏପରିକି ଅପକର୍ମକାରୀ ନ୍ୟାୟାଳୟରେ ଦୋଷୀ ସାବ୍ୟସ୍ତ ହୋଇ, ଜେଲ ଜୋରିମାନା ଭୋଗି ସାରି ସମାଜରେ ଗର୍ବୋନ୍ନତ ହୋଇ ଚାଲୁଥିବାବେଳେ ପୀଡ଼ିତାଟି ନ୍ୟାୟାଳୟରେ ନ୍ୟାୟ ପାଇ ସୁଦ୍ଧା ବିଷଣ୍ଣବୋଧରେ ବଞ୍ଚେ। ଏ ପ୍ରକାର ସାମାଜିକ ଦୃଷ୍ଟିକୋଣର ପରିବର୍ତ୍ତନ ନହେବା ପର୍ଯ୍ୟନ୍ତ ଆମ ସମାଜରେ ପୀଡ଼ିତାଶ୍ରମ ବା ସର୍ଟ୍ ଷ୍ଟେ ହୋମ୍‌ର ଆବଶ୍ୟକତା ବଳବତ୍ତର ହୋଇ ରହିଥିବ।

କୌଣସି କାରଣରୁ ନାରୀଟି ଯଦି ଜୀବନରେ ଅଘଟଣର ଶିକାର ହୁଏ, ଯେଉଁଥିପାଇଁ ସେ ଆଦୌ ଦାୟୀ ନୁହେଁ, ସେଥିପାଇଁ ସେ ସମାଜରେ ଘୃଣିତା ଓ ନିନ୍ଦିତା ହେବ କାହିଁକି ? ସିଏ କାହିଁକି ଲୁଚିଛପି ଲୋକଲୋଚନ ଆଢୁଆଳରେ ବଞ୍ଚିବ ? ଏବେ ପୁଣି ପୀଡ଼ିତାମାନଙ୍କର ନାମ ଗଣମାଧ୍ୟମରେ ପ୍ରଚାର ଉପରେ ନିଷେଧାଦେଶ ରହିଛି। ଏସବୁ ଦ୍ୱାରା ପୀଡ଼ିତାକୁ ଆହୁରି ସଂକୁଚିତା ହେବାକୁ ବାଧ କଲାପରି ମନେହୁଏ। ଦିନ ଥିଲା ଯେତେବେଳେ ନାରୀମାନଙ୍କୁ ସେମାନଙ୍କ ପରିବାର ସୁରକ୍ଷା ଦେଇ ପାରୁନଥିଲା ! ମଧ୍ୟଯୁଗୀୟ ବୈଦେଶିକୀ ଲୋଲୁପ ଦୃଷ୍ଟିରୁ ନାରୀମାନଙ୍କୁ ବଞ୍ଚାଇବା ପାଇଁ ସମାଜପତିମାନେ ବାଲ୍ୟ ବିବାହ, ସତୀଦାହ ଆଦି ପ୍ରଥା ପ୍ରଚଳନ କରିଥିଲେ। 'ଦେଲା ନାରୀ ହେଲା ପାରି' କହି କନ୍ୟାଟିକୁ ବିବାହ ଦେଇ ପିତାମାତା ଦାୟିତ୍ୱମୁକ୍ତ ହେଉଥିଲେ। କିନ୍ତୁ ଏବେ ସେ ଯୁଗ ଆଉ ନାହିଁ। ସମାଜରେ କନ୍ୟାମାନଙ୍କ ପ୍ରତି ଥିବା ଗୁଡ଼ାଏ ପ୍ରତିକୂଳ ମାନସିକତାରେ ପରିବର୍ତ୍ତନ ଆସିଲାଣି। ପୁରୁଷ ଓ ନାରୀଙ୍କ ଭିତରେ ଆଉ ବେଶୀ କିଛି ପାର୍ଥକ୍ୟ ନାହିଁ। ତେଣୁ ଦୁଷ୍କର୍ମକାରୀ ପୁରୁଷ ଯଦି ଲଜ୍ଜା ସରମ ତ୍ୟାଗ କରି ବୁଲିପାରୁଛି, ପୀଡ଼ିତା ନାରୀ କାହିଁକି ପତିତା ଆଖ୍ୟା ପାଇ ଘରକୋଣରେ ଲୁହ ଗଡ଼େଇବ ? ଏବେ ବି ଆମ ସମାଜରେ ଏମିତି ସୁପୁରୁଷ ଜନ୍ମ ନେଇ ନାହାନ୍ତି, ଯିଏ ସ୍ୱତଃପ୍ରବୃତ୍ତ ହୋଇ ଦୁଷ୍କର୍ମପୀଡ଼ିତା ଝିଅଟିକୁ ବିବାହ କରିବାର ଉଦାରତା ପ୍ରଦର୍ଶନ କରିବ।

ନିଜକୁ ସଦାସର୍ବଦା ଅପକର୍ମକାରୀଙ୍କ କବଳରୁ ବଞ୍ଚାଇବା ପାଇଁ ପ୍ରୟାସ କରୁଥିବା ନାରୀଟିଏ ଯଦି ତଥାପି ଅପକର୍ମର ଶିକାର ହୁଏ, ପ୍ରଥମେ ତା'ର ପରିବାରର ଲୋକମାନେ

ତା ପ୍ରତି ସହାନୁଭୂତିଶୀଳ ହେବାର ଆବଶ୍ୟକତା ରହିଛି। ଶାଶୁଘର ହେଉ କି ବାପଘର - ଉଭୟଙ୍କର ଶ୍ରଦ୍ଧା ସମବେଦନାରେ ସେ ପୁଣି ସ୍ୱାଭାବିକ ଜୀବନ ବଞ୍ଚି ପାରନ୍ତା। କିନ୍ତୁ ଆମ ସମାଜର ଅଧିକାଂଶ ପରିବାରରେ ସେୟା ହୁଏନାହିଁ। ନିଜର ମାନସମ୍ମାନ ହାନି ଆଶଙ୍କାରେ ପ୍ରଥମେ ନିଜ ପରିବାର ତାକୁ ନିରାଶ୍ରୟ କରିଦିଅନ୍ତି। ବୁଝିହୁଏ ନାହିଁ, ନାରୀଟି ଅସାମାଜିକ ଲୋକଙ୍କ ଆକ୍ରମଣର ଶିକାର ହେଲେ ପରିବାରର ମାନସମ୍ମାନ କ୍ଷୁଣ୍ଣ ହୁଏ କେମିତି। ସେମିତି ହେଲେ ତ ଦୁନିଆର ସବୁଠାରୁ ଅମର୍ଯ୍ୟାଦାସମ୍ପନ୍ନ ପରିବାର ହେଉଛି ଅଯୋଧ୍ୟାର ରାଜା ଦଶରଥଙ୍କ ପରିବାର ଓ କୁରୁବଂଶର ପଣ୍ଡୁପୁତ୍ରମାନଙ୍କ ପରିବାର। ଯେଉଁ ପରିବାରର ଜଣେ ନାରୀ ରାକ୍ଷସ ରାବଣ ଦ୍ୱାରା ଅପହୃତା ହୋଇଥିବା ବେଳେ ଅନ୍ୟଜଣଙ୍କୁ ରାଜସଭାରେ ବିବସ୍ତ୍ର କରିବାକୁ ପ୍ରଚେଷ୍ଟା କରାଯାଇଥିଲା। କିନ୍ତୁ ଆମେ ଏ ଦୁଇ ପରିବାରଙ୍କୁ ସବୁଠାରୁ ବେଶୀ ମର୍ଯ୍ୟାଦା ଦେଇ କହୁ, ମର୍ଯ୍ୟାଦାପୁରୁଷ ରାମଚନ୍ଦ୍ର ଓ ଧର୍ମରାଜ ଯୁଧିଷ୍ଠିର।

ମହାତ୍ମାଗାନ୍ଧିଙ୍କୁ ଥରେ ଗୋଟିଏ ବୃଦ୍ଧାଶ୍ରମର ଉନ୍ମୋଚନ କରିବାକୁ କେତେଜଣ ଭଦ୍ରବ୍ୟକ୍ତି ଅନୁରୋଧ କରିଥିଲେ। ସେ କିନ୍ତୁ ଏହାକୁ ଅଗ୍ରାହ୍ୟ କରିଦେଇ କହିଥିଲେ, ଯେଉଁଦିନ ସବୁ ବୃଦ୍ଧାଶ୍ରମ ବନ୍ଦ ହେବ, ସେଦିନ ମୋତେ କହିବ। ମୁଁ ସେହି ଉତ୍ସବରେ ଯୋଗଦେବି। ପତିତାଶ୍ରମ ସମ୍ପର୍କରେ ମଧ୍ୟ ସେହି ଏକାକଥା କୁହାଯାଇପାରେ। ପତିତାଶ୍ରମ ପ୍ରଗତିର ଚିହ୍ନ ନୁହେଁ। ବରଂ ସଭ୍ୟତାର ଦୁର୍ଗତିର ଚିତ୍ର ବହନ କରେ - ପାରିବାରିକ ସମ୍ପର୍କର ଦୁର୍ଗତି; ସାମାଜିକ ସଂସ୍କାରର ଦୁର୍ଗତି ଓ ମାନବିକତାର ଦୁର୍ଗତି।



# କନ୍ୟାଶ୍ରମର କଳଙ୍କ

କଣ୍ୱମୁନୀଙ୍କ ଆଶ୍ରମରେ ପରିପାଳିତ ଶକୁନ୍ତଳା ଓ ରାଜା ଦୁଷ୍ମନ୍ତଙ୍କ ମଧ୍ୟରେ ଗଢ଼ିଉଠିଥିଲା ଆବେଗିକ ସଂପର୍କ। ସେ ସଂପର୍କର ସ୍ୱାଭାବିକ ପରିଣତିରେ ଶକୁନ୍ତଳା ଅନ୍ତସତ୍ତ୍ୱା ହେଲେ। ଋଷିଙ୍କ ଦୃଷ୍ଟି ଉହାଡ଼ରେ ଏହା ରହିପାରିନଥିଲା, ସତ୍ୟ ଉଦ୍‌ଘାଟନ କରି ଋଷି ଶକୁନ୍ତଳାଙ୍କୁ ଋଷିକୁମାରଙ୍କ ସହ ରାଜା ଦୁଷ୍ମନ୍ତଙ୍କ ନିକଟକୁ ପ୍ରେରଣ କରିଥିଲେ। କିନ୍ତୁ ରାଜା ଦୁଷ୍ମନ୍ତ ଶକୁନ୍ତଳାଙ୍କ ଗର୍ଭସ୍ଥ ସନ୍ତାନର ପିତୃତ୍ୱକୁ ଅସ୍ୱୀକାର କରିଥିଲେ। ଯୁଗଯୁଗ ଧରି ଏହାହିଁ ଆଶ୍ରମ ପରିପାଳିତା କନ୍ୟାମାନଙ୍କର ଭାଗ୍ୟ। ଦୁର୍ବାସା ଋଷିଙ୍କର ଅଭିଶାପ ଶକୁନ୍ତଳାଙ୍କର ଦାୟିତ୍ୱହୀନତା ଆଦି କାବ୍ୟିକ ଉପଚାରକୁ ବାଦଦିଆଗଲା ପରେ ଅବଶିଷ୍ଟ ଯାହା ରହିଲା ତାହା ସାଂପ୍ରତିକ ପରିଭାଷାରେ ପୁରୁଷର ଲମ୍ପଟତା ଓ ପ୍ରତାରଣାଛଡ଼ା ଆଉ କିଛି ନୁହେଁ। ତତ୍କାଳୀନ ସମାଜରେ ଏ ପ୍ରକାର ପ୍ରତାରଣା ପାଇଁ କିଛି ପ୍ରତିବିଧାନ ନଥିଲା, ବିଚରା ଶକୁନ୍ତଳାମାନଙ୍କର ଭାଗ୍ୟ ଅନିର୍ଦ୍ଦିଷ୍ଟ ପଥରେ ଗଡ଼ିଚାଲୁଥିଲା। ଏବେ ସୁଦ୍ଧା କନ୍ୟାଶ୍ରମଗୁଡ଼ିକ ଏପ୍ରକାର କଳଙ୍କରୁ ମୁକ୍ତ ନୁହେଁ। ନାରୀ ଓ ପୁରୁଷର ସହଯୋଗିତା ଓ ସହଭାଗିତାରେ ଗୋଟିଏ ସମତୁଲ ସମାଜ ଗଠନ ଆଜିର ଆହ୍ୱାନ। ଏଥିପାଇଁ ଯେତେସବୁ ପରିଯୋଜନା। କିନ୍ତୁ ଏହି ଯୋଜନାର ଅନ୍ତରାଳରେ ଅହରହ ପୀଡ଼ିତା କନ୍ୟାମାନଙ୍କର ସୁରକ୍ଷା ଓ ସ୍ୱାଧୀକାର ପାଇଁ କୌଣସି ସ୍ଥାୟୀ ଯୋଜନା ହୋଇପାରୁନାହିଁ।

ଅନ୍ୟୁନ ଛ'ସାତ ବର୍ଷ ତଳେ ନବରଙ୍ଗପୁର ଜିଲ୍ଲାର ଏକ କନ୍ୟାଶ୍ରମରେ ସପ୍ତମ ଶ୍ରେଣୀର ଛାତ୍ରୀଟିଏ ଅନ୍ତଃସତ୍ତ୍ୱା ଥିବାର ଚାଞ୍ଚଲ୍ୟକର ସମ୍ବାଦ ପରିବେଷଣ ହୋଇଥିଲା। ଅନୁସନ୍ଧାନ ପରେ ଜଣାପଡ଼ିଲା ଜଣେ ନୁହେଁ, ଏକାଧିକ କନ୍ୟା ଅନ୍ତସତ୍ତ୍ୱା। ଏହା ପରେ ପରେ ରାଜ୍ୟର ଅନ୍ୟସ୍କୁଲମାନଙ୍କରୁ ମଧ୍ୟ ବହୁ ଚାଞ୍ଚଲ୍ୟକର ତଥ୍ୟ ବାହାରକୁ ଆସିଲା। ପ୍ରଧାନଶିକ୍ଷକ ଛାତ୍ରୀମାନଙ୍କୁ ଯୌନପୀଡ଼ନ ଦେଉଥିଲେ। ସଂପୃକ୍ତ ଅପରାଧୀମାନଙ୍କୁ କଠୋର ଦଣ୍ଡରେ ଦଣ୍ଡିତ କରାଯାଉଥିଲା, ଘଟଣାଗୁଡିକ ସେତେବେଳେ ଯେଉଁପରି ରାଜ୍ୟବ୍ୟାପୀ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା ବୋଧ ହେଉଥିଲା କନ୍ୟାଶ୍ରମ କନ୍ୟାମାନେ

ଏଥର ବିପଦମୁକ୍ତ ହେବେ; ଛାତ୍ରୀମାନେ ନିରାପଦରେ ଶିକ୍ଷାଗ୍ରହଣ କରିପାରିବେ। କିନ୍ତୁ ତାହା ଭ୍ରମ ପ୍ରମାଣିତ ହେଲା, ଲଜ୍ଜା ସମ୍ଭ୍ରମତାର ସକଳ ସୀମା ଅତିକ୍ରମ ହେଲା, ଆଶ୍ରମର ସ୍ନାନାଗାରରେ ନାବାଳିକା ଛାତ୍ରୀମାନେ ସନ୍ତାନ ପ୍ରସବ କରିବାର ସମ୍ବାଦମାନ ଶୁଣିବାକୁ ପଡ଼ିଲା।

ପ୍ରଥମରୁ କନ୍ୟାଶ୍ରମଗୁଡ଼ିକ ବିତର୍କ ବଳୟରେ ଥିଲା। ତାହା କିନ୍ତୁ ଯୌନ ନିପୀଡ଼ନ ପାଇଁ ନୁହେଁ, ବରଂ ଶିକ୍ଷୟିତ୍ରୀମାନେ ଛାତ୍ରୀମାନଙ୍କୁ ଯାବତୀୟ ଗୃହକାର୍ଯ୍ୟରେ ନିୟୋଗ କରିବାର ଅଭିଯୋଗ ହେଉଥିଲା। ଅଧ୍ୟୟନ ସମୟରେ ବାସନମଜା, କପଡ଼ାକଚା, ପିଲାଧରିବା ଆଦି କାର୍ଯ୍ୟରେ ବ୍ୟସ୍ତଥିବାରୁ ଆଶ୍ରମ ସ୍କୁଲମାନଙ୍କରେ ପାସ୍ ହାର ନିମ୍ନମାନର ହେଉଛି ବୋଲି ବିଶେଷଜ୍ଞମାନେ ମତଦେଇଥିଲେ। ଏହାର ନିରାକରଣ ପାଇଁ ଆଇନ୍ ପ୍ରଣୟନ ହେଲା। ଫଳତଃ ସମସ୍ୟାର କିଛି ପରିମାଣରେ ସୁଧାର ଆସିଲା। କନ୍ୟାଶ୍ରମମାନଙ୍କରେ ଖାଦ୍ୟପଦାର୍ଥର ମାନ ଉପରେ ସର୍ବଦା ଅଭିଯୋଗ ଲାଗି ରହିଥାଏ। ପଚା ପୋକରା, ଗମୁଆ ଅସ୍ୱାସ୍ଥ୍ୟକର ଖାଦ୍ୟ ପାଇଁ ଅନ୍ତେବାସୀମାନେ ଅସୁସ୍ଥ ହୋଇପଡ଼ିବାର ଦୃଷ୍ଟାନ୍ତ ରହିଛି। ନିମ୍ନମାନର ଖାଦ୍ୟର ପ୍ରତିବାଦ କରି ଛାତ୍ରୀମାନେ ଆଶ୍ରମ ଛାଡ଼ି ଚାଲିଯାଇଛନ୍ତି। ଜିଲ୍ଲା ପ୍ରଶାସନ ପାଖରେ ସାମୁହିକ ଭାବରେ ଛାତ୍ରୀମାନେ ଅଭିଯୋଗ ବି କରିଛନ୍ତି। ପୁଷ୍ଟିକର ଖାଦ୍ୟ ଛାତ୍ରୀମାନଙ୍କୁ ନଦେଇ ଅର୍ଥ ତୋଷରପାତ ଅଭିଯୋଗରେ ଶିକ୍ଷକ ଶିକ୍ଷୟିତ୍ରୀମାନେ ଦଣ୍ଡିତ ମଧ୍ୟ ହୋଇଛନ୍ତି।

ଆଶ୍ରମ ସ୍କୁଲମାନଙ୍କରେ ଛାତ୍ରୀମାନଙ୍କର ଆତ୍ମହତ୍ୟା ପରି ସ୍ପର୍ଶକାତର ସମ୍ବାଦ ମଧ୍ୟ ଗଣମାଧ୍ୟମରେ ପ୍ରସାରିତ ହୋଇଥାଏ। ଦଉଡ଼ି କିମ୍ବା ଓଢ଼ଣୀରେ ଫାଶୀ ଦେଇ ମରିବା, ଟ୍ରେନ୍ ଲାଇନ୍‌ରେ, କୂଅପୋଖରୀକୁ ଡେଇଁପଡି ଛାତ୍ରୀମାନେ ଆତ୍ମହତ୍ୟା କରିବାର ଅଭିଯୋଗ ହୋଇଥାଏ। ଅନେକ ଛାତ୍ରୀ ନିଖୋଜ ହୋଇଯାଆନ୍ତି ଯେ ସେମାନଙ୍କର କୌଣସି ପତ୍ତା ମିଳେନାହିଁ। ଏସବୁ ତଦନ୍ତ ହୁଏ, ଅନେକ ତଥ୍ୟ ବାହାରକୁ ଆସେନାହିଁ। ଯାହାବି ଆସେ ତାହା ଅର୍ଦ୍ଧସତ୍ୟ। ଏହାଛଡ଼ା ରୋଗ ବେମାରୀରେ ପଡ଼ି ଚିକିତ୍ସା ଅବହେଳାରୁ ଛାତ୍ରୀମାନେ ମୃତ୍ୟୁବରଣ କରିଥିବା ଅଭିଯୋଗରୁ ବି ମୁକ୍ତ ନହେଁ। ବେଳେବେଳେ ଆଶ୍ରମ ସ୍କୁଲମାନଙ୍କରୁ ବି ସଂକ୍ରାମକ ରୋଗକୁ ନିୟନ୍ତ୍ରଣାଧୀନ କରିବାରେ ସରକାର ନାକେଦମ୍ ହୋଇଯାଆନ୍ତି। ତେବେ ଏସବୁ ଅଭିଯୋଗ ସବୁ ଏବେ ବଳିପଡ଼ିଛି, କନ୍ୟାଶ୍ରମମାନଙ୍କରେ ନାବାଳିକା ଛାତ୍ରୀମାନଙ୍କର ସନ୍ତାନ ପ୍ରସବ ସମସ୍ୟା। ଏ ସମସ୍ୟା ପ୍ରକୃତରେ ଯୋଜନାର ବିଫଳତା ନୁହେଁ, ବରଂ ସଂପୃକ୍ତ କର୍ମଚାରୀମାନଙ୍କର ଦାୟିତ୍ୱହୀନତା । କନ୍ୟାଶ୍ରମମାନଙ୍କରେ ଛାତ୍ରୀମାନଙ୍କ ସହ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର

କେବଳ ଶ୍ରେଣୀ ଗୃହର ସଂପର୍କ ନଥାଏ। ପଂକ୍ତିଭୋଜନ, ସାମୁହିକ ପ୍ରାର୍ଥନା, ସାମୁହିକ ପଠନ, ଅଭ୍ୟାସ, ଖେଳକୁଦ, ବଗିଚା କାମ ଆଦି ବିଭିନ୍ନ ପର୍ଯ୍ୟାୟରେ ଛାତ୍ରୀ ଓ ଶିକ୍ଷୟିତ୍ରୀମାନେ ଏକତ୍ରିତ ହୋଇଥାନ୍ତି। ଅଥଚ ୟୁନିଫର୍ମ ପିନ୍ଧୁଥିବା ନାବାଳିକା ଝିଅମାନେ ଅନ୍ତସତ୍ତ୍ୱା ହୋଇ ସନ୍ତାନ ପ୍ରସବ ପର୍ଯ୍ୟନ୍ତ କଥାଗଲା ତାହା କେମିତି ଅଭିଜ୍ଞ ଶିକ୍ଷୟିତ୍ରୀମାନଙ୍କ ଦୃଷ୍ଟି ଉହାଡ଼ରେ ରହିଗଲା ? ପ୍ରତି ମାସରେ କନ୍ୟାଶ୍ରମର ଛାତ୍ରୀମାନଙ୍କ ସ୍ୱାସ୍ଥ୍ୟ ପରୀକ୍ଷା ଏମ୍.ବି.ବି.ଏସ୍ ଡାକ୍ତରଙ୍କ ଦ୍ୱାରା ହୋଇଥାଏ। ସେମାନଙ୍କ ପାଖରୁ ବି ଏ ତଥ୍ୟ କେମିତି ଅଣଦେଖା ହୋଇପାରିଲା ? ସବୁଠୁଁ ଉଦ୍‌ବେଗଜନକ ବିଷୟ ହେଲା ଗୋଟିଏ ଘଟଣା ଘଟିବା ପରେ ସୁଦ୍ଧା ଆଶ୍ରମ ଗୁଡ଼ିକରେ ବିଧିବଦ୍ଧ ତଦନ୍ତ ହୋଇପାରିଲା ନାହିଁ। କ୍ରମାଗତ ଗୋଟାକ ପରେ ଗୋଟାଏ ଘଟଣା ଘଟିଚାଲିଲା। ଏହା ନିଶ୍ଚୟ ପରିବେଶ ଓ ପରିସ୍ଥିତି ପ୍ରତି ଆମର ଦାୟିତ୍ୱହୀନ ନିଦର୍ଶନ। ଏ ଉଦାସ ପଣର ଅନ୍ତ ହେଉ। ଏ ସାମାଜିକ ସମସ୍ୟାକୁ ଦୂରୀଭୂତ କରିବା ପାଇଁ ଆମର ସାମୁହିକ ଉଦ୍ୟମର ଆବଶ୍ୟକତା ରହିଛି।



# ସା ବିଦ୍ୟା ଯା ନିଯୁକ୍ତୟେ

ଭାରତୀୟ ଜୀବନଧାରାରେ ଜ୍ଞାନ ସହ ବୈରାଗ୍ୟର ଏକ ଅନ୍ତରଙ୍ଗ ସମ୍ପର୍କ ଥିଲା। ସରଳ ଜୀବନ ଓ ଉଚ୍ଚ ଚିନ୍ତନ ଭାରତୀୟମାନଙ୍କର ଜୀବନଦର୍ଶନ ଥିଲା। ପିତାଙ୍କର ମୃତ୍ୟୁ ପରେ ଉପୁଜି ଥିବା ପରିବାର ଆର୍ଥିକ ସଙ୍କଟରେ ବିବେକାନନ୍ଦ ବିଚଳିତ ହୋଇ ପଡ଼ିଥିଲେ। ଶ୍ରୀ ରାମକୃଷ୍ଣ ପରମହଂସଙ୍କ ନିର୍ଦ୍ଦେଶରେ ମା' କାଳୀଙ୍କୁ ଏହାର ସମାଧାନ ପାଇଁ କିଛି ମାଗିବାକୁ ଯାଇଥିଲେ। କିନ୍ତୁ ତୁଚ୍ଛ ଆର୍ଥିକ ଜିନିଷ ତାଙ୍କୁ ମାଗିବା ପାଇଁ ବିବେକାନନ୍ଦଙ୍କ ଜିଭ ଲେଉଟି ନାହିଁ। ସେ ମାଗିଛନ୍ତି ଜ୍ଞାନ,ଭକ୍ତି ଓ ବୈରାଗ୍ୟ। ଶେଷରେ ପରମହଂସ ତାଙ୍କୁ କହିଛନ୍ତି,ତୋ ପରିବାରକୁ କେବେ ବି ବଗଡ଼ା ଅନ୍ନର ଅଭାବ ରହିବ ନାହିଁ। ପ୍ରକୃତ ଜ୍ଞାନୀ ଗୁଣୀମାନେ ଅର୍ଥ ଉପାର୍ଜନ ପଛରେ ଧାଆନ୍ତି ନାହିଁ। ଜ୍ଞାନ ହିଁ ସେମାନଙ୍କର ଧାନ ମନ୍ଦିର ଓ ମହାଧନ। ସେଥିରେ ତାଙ୍କର ପରିବାର ଅପୋଷା ରହେ ନାହିଁ।

ବିଭିନ୍ନ ଶାସ୍ତ୍ର ଅଧ୍ୟୟନରେ ପାରଦର୍ଶିତା ହାସଲ କରିଥିବା ଜଣେ ବ୍ୟକ୍ତି ରାଜାଙ୍କ ପାଖରେ ଅଭିଯୋଗ କରିଥିଲେ, ତାଙ୍କ ପରି ଜ୍ଞାନୀଗୁଣୀ ଲୋକଙ୍କୁ ରାଜା ଅବହେଳା କରୁଛନ୍ତି। ତେଣୁ ପ୍ରତିଦିନ ରାଜସଭାରେ ଗୀତାପାଠ କରିବା ପାଇଁ ତାଙ୍କୁ ନିଯୁକ୍ତି ଦିଆଯାଉ। ସେଥିପାଇଁ ସେ ନିଜର ପାରିଶ୍ରମିକ ମଧ୍ୟ ନିର୍ଦ୍ଧାରଣ କରିଦେଲେ। ରାଜା କହିଲେ, ତମେ ଆଉ ଏକବର୍ଷ ପର୍ଯ୍ୟନ୍ତ ଭଲ ଭାବରେ ଗୀତା ପଢ଼, ତା' ପରେ ନିଯୁକ୍ତି ପାଇବ। କିଞ୍ଚିତ୍ ଅପମାନିତ ହୋଇ ସେ ଫେରିଲେ ଓ ଏକବର୍ଷ ପରେ ଫେରିଆସି ନିଯୁକ୍ତି ମାଗିଲେ। ରାଜା ଏଥର ଆଉ ଛଅମାସ ସମୟ ଦେଲେ ଓ ଗୀତାକୁ ଆହୁରି ତନ୍ନ ତନ୍ନ କରି ପଢ଼ିବାକୁ କହିଲେ। ଛଅମାସ ପରେ ବ୍ୟକ୍ତି ଜଣକ ପୁଣି ଦେଖା କଲେ ରାଜାଙ୍କୁ। ରାଜା ପୁଣି ଏକମାସ ସମୟ ଦେଲେ ଓ ଗୀତା ତତ୍ତ୍ୱକୁ ଭଲ ଭାବରେ ଅନୁଧ୍ୟାନ କରିବାକୁ ନିର୍ଦ୍ଦେଶ ଦେଲେ। ଏକମାସ ପରେ ବ୍ୟକ୍ତି ଜଣକୁ ଦେଖି ଏଥର ରାଜା କହିଲେ, ଆଉ ସାତଦିନ କାଳ ତମେ ଆହୁରି ଭଲ ଭାବରେ ଗୀତା ପଢ଼ ଓ ତା'ପରେ ରାଜସଭାରେ ଗୀତା ଆଲୋଚନା କର। ତା' ହାତକୁ ନିଯୁକ୍ତି ପତ୍ରଟି ମଧ୍ୟ ବଢ଼େଇ ଦେଲେ। କିନ୍ତୁ ଆଶ୍ଚର୍ଯ୍ୟର କଥା, ସାତଦିନ ଅତିକ୍ରାନ୍ତ ହେଲେ ସୁଦ୍ଧା ବ୍ୟକ୍ତି

ଜଣକ ଆଉ ଆସିଲେ ନାହିଁ। ଏଥର ନିଜେ ରାଜା ତାଙ୍କ ପାଖକୁ ଅଗ୍ରୀମ ଏକହଜାର ସ୍ୱର୍ଣ୍ଣମୁଦ୍ରା ଧରି ଗଲେ। କିନ୍ତୁ ଲୋକ ଜଣକ ବିନମ୍ରତାର ସହ ନିଯୁକ୍ତି ପତ୍ର ଓ ସ୍ୱର୍ଣ୍ଣମୁଦ୍ରାକୁ ଫେରାଇ ଦେଇ କହିଲେ, 'କ୍ଷମା କରିବେ ମହାରାଜ। ଗୀତା ମୋ ଜ୍ଞାନଚକ୍ଷୁ ଖୋଲିଦେଇଛି।' ମୋର ଆଉ ନିଯୁକ୍ତିର ଆବଶ୍ୟକତା ନାହିଁ। କିନ୍ତୁ ରାଜା ଉପଲବ୍ଧି କଲେ ଯେ ରାଜସଭାରେ ଗୀତାପାଠ କରିବା ପାଇଁ ସେ ହିଁ ଉପଯୁକ୍ତ ବ୍ୟକ୍ତି।

ଯେତେଦିନ ପର୍ଯ୍ୟନ୍ତ ସମାଜରେ ଜ୍ଞାନର ମହତ୍ତ୍ୱ ଥିଲା, ତା' ପାଖରେ ଧନ ଅର୍ଜନର ଆବଶ୍ୟକତା ନଥିଲା। ଆର୍ଥିକ ସମସ୍ୟା ଉତ୍କଟ ହୋଇ ଆମ ପାଖରେ ଠିଆ ହେଉ ନଥିଲା। ମଣିଷ ପାଖରେ ଖୁସି ଥିଲା। ଆତ୍ମସନ୍ତୋଷ ଥିଲା, ଶାନ୍ତି ଥିଲା; ମଣିଷପଣିଆ ବି ଥିଲା। ଯେଉଁ ମୁହୂର୍ତ୍ତରୁ ଜ୍ଞାନକୁ ଧନ ଅର୍ଜନର ମାଧ୍ୟମ ବୋଲି ଗ୍ରହଣ କରାଗଲା, ଜ୍ଞାନରୁ ଗରିମା ଚାଲିଗଲା, ଆବେଗର ଅପମୃତ୍ୟୁ ହେଲା। ମଣିଷ ଯନ୍ତ୍ର ପାଲଟିଗଲା। ତା'ର ସବୁ ସୁଖ ଅନୁଭବ ଅପସରି ଗଲା। ଶାନ୍ତି ବ୍ୟାହତ ହେଲା। ଏବେ ସମଗ୍ର ବିଶ୍ୱ ଆଗରେ ଏ ସମସ୍ୟା ଉତ୍କଟ ହୋଇ ଠିଆ ହୋଇଛି। ମାନବ ସମାଜରୁ ସୁଖ ହଜିଯାଉଛି ବୋଲି ବୁଦ୍ଧିଜୀବୀମାନେ ଚିନ୍ତିତ।

କୁହାଯାଏ, ଲକ୍ଷ୍ମୀଙ୍କୁ ଯିଏ ଇଷ୍ଟଦେବୀ ବୋଲି ଗ୍ରହଣ କରେ, ସେ ମୂର୍ଖ ହୋଇଯାଏ। ତାଙ୍କୁ ଯିଏ ସଖୀ ରୂପରେ ଗ୍ରହଣ କରେ, ସେ କୁବେର ପାଲଟିଯାଏ। ତାଙ୍କୁ ଯିଏ ଦାସୀ ରୂପରେ ଗ୍ରହଣ କରେ ସେ ଈଶ୍ୱର ପାଲଟି ଯାଏ। ଐଶ୍ୱର୍ଯ୍ୟପୁରୁଷ ବିଷ୍ଣୁ ଜ୍ଞାନ ଓ ଧନ, ଉଭୟ ବିଭୁତିରେ ବିଭୂଷିତ। ଜ୍ଞାନଦାତ୍ରୀ ସରସ୍ୱତୀ ଓ ଧନଦାତ୍ରୀ ଲକ୍ଷ୍ମୀ ତାଙ୍କର ସେବିକା- 'ଖଗ ଆସନେ ଖଗପତି, ଖଟନ୍ତି ଲକ୍ଷ୍ମୀ ସରସ୍ୱତୀ।' କିନ୍ତୁ ଲକ୍ଷ୍ମୀ ସର୍ବଦା ତାଙ୍କ ପାଦ ତଳେ ଖଟୁଥିବା ବେଳେ ସରସ୍ୱତୀ ରହନ୍ତି ତାଙ୍କ କଣ୍ଠ ପ୍ରଦେଶରେ ଅଥବା ଜିହ୍ୱାଗ୍ରରେ (ପ୍ରକାରାନ୍ତରେ ଭିନ୍ନ ପୁରାଣରେ ସରସ୍ୱତୀଙ୍କୁ ବ୍ରହ୍ମାଙ୍କର ପତ୍ନୀ ଅଥବା କନ୍ୟା ରୂପରେ ପରିକଳ୍ପନା କରାଯାଇଥାଏ)। ଆମ ପୋଥି ପୁରାଣ ଓ ଅନୁଭବ କୁହେ- ଲକ୍ଷ୍ମୀ ସରସ୍ୱତୀଙ୍କର କେବେ ପଡ଼େନାହିଁ, ସବୁବେଳେ ଅପଡ଼। ଅସାଧାରଣ ଜ୍ଞାନୀ ମଣିଷ ପଠାଣି ସାମନ୍ତଙ୍କ ସମ୍ପର୍କରେ ରାଧାନାଥ ରାୟ ଲେଖିଛନ୍ତି- 'ଲକ୍ଷ୍ମୀଙ୍କ ସପତ୍ନୀ ହେବାରୁ ବରଦା ଦାରିଦ୍ର୍ୟ ତୁମର ସଙ୍ଗୀ ହେଲା ସଦା'। ଦାରିଦ୍ର୍ୟର ପଙ୍କ ଭିତରେ ଯେଉଁ ପ୍ରତିଭାର ପଦ୍ମ ଫୁଟେ, ତାହା ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟ ଭିତରେ ସମ୍ଭବ ହୁଏନାହିଁ। କାଳ ବକ୍ଷରେ ପ୍ରତିଭା ଅମର ରହେ, ପ୍ରାଚୁର୍ଯ୍ୟ ନୁହେଁ। ପ୍ରତିଭା ଓ ପ୍ରାଚୁର୍ଯ୍ୟ ଦୁହେଁ ଆଜନ୍ମ ଶତ୍ରୁ। କ୍ୱଚିତ୍ ଭାଗ୍ୟବାନ୍ ଦୁଇଟିଯାକ ହାସଲ କରିଥାନ୍ତି। ଯେଉଁମାନେ ପାରିଥାନ୍ତି, ସେମାନେ ଭଗବାନଙ୍କ ସମକକ୍ଷ ହୋଇଯାଆନ୍ତି।

ଗ୍ରୀକ୍ ପ୍ରବାଦଟିଏ ଅଛି- ଜ୍ଞାନ ଓ ଧନ ଗୋଟିଏ ଥଳିରେ ରହି ପାରନ୍ତି ନାହିଁ।

ନିଜେ ମୂର୍ଖ ହୋଇଥିବା ହେତୁ ନ୍ୟୂନବୋଧତା ଓ ହୀନମନ୍ୟତାରେ ସଢୁଥିବା ଧନୀକ ଜଣେ ତାଙ୍କ ପାଖରେ ଚାକିରି କରୁଥିବା ବିଶ୍ୱବିଦ୍ୟାଳୟ ଡିଗ୍ରୀଧାରୀ ଜଣେ ଜ୍ଞାନୀ ଲୋକଙ୍କୁ ପଚାରିଲେ, - 'ଜ୍ଞାନ ବଡ଼ ନା ଧନ ?'

ତତ୍‌କ୍ଷଣାତ୍ ବ୍ୟକ୍ତି ଜଣକ ଉତ୍ତର ଦେଲେ, - 'ଜ୍ଞାନ'

ଉତ୍ତରରେ ଅସନ୍ତୁଷ୍ଟ ଓ ଅସହିଷ୍ଣୁ ହୋଇ ଧନୀକ ଜଣକ କହିଥିଲେ - ' ତେବେ ମୋ ପାଖକୁ କାହିଁକି ତମେ ଆସିଛ ?'

ଜ୍ଞାନୀ ଜଣକ କହିଲେ, - 'ଜ୍ଞାନ ବଳରେ ମୁଁ ଧନର ମୂଲ୍ୟ ବୁଝିଛି, ଅଥଚ ତମେ ଧନ ବଳରେ ଜ୍ଞାନର ମହତ୍ତ୍ୱ ବୁଝିବାରେ ଅସମର୍ଥ।'

ବିଷ୍ଣୁଙ୍କ ସଂସାର ଉଭୟ ଜ୍ଞାନ ଓ ଧନରେ ସମୃଦ୍ଧ। ପ୍ରତୀକାତ୍ମକ ଭାବରେ ଦୁଇ ଦେବୀ (ମହିଳା) ଏହାର ଅଧିଷ୍ଠାତ୍ରୀ ଦେବୀ । କିନ୍ତୁ ଧନ ଅଧିଷ୍ଠାତ୍ରୀଙ୍କ ଅପେକ୍ଷା ଜ୍ଞାନ ଅଧିଷ୍ଠାତ୍ରୀ ଅଧିକ ବିଶ୍ୱସ୍ତ ଓ ଭରସାଯୋଗ୍ୟ। ଧନ ଅଧିଷ୍ଠାତ୍ରୀଙ୍କ ଉପରେ ଆସ୍ଥା ସ୍ଥାପନ କରାଯାଇ ପାରେନା। ସେ କେତେବେଳେ କୁଆଡ଼େ ଯାଆନ୍ତି ଆସନ୍ତି, ତା'ର ଖବର ବିଷ୍ଣୁଙ୍କ ପାଖରେ ମଧ୍ୟ ନଥାଏ। ସେ ଚଞ୍ଚଳା-ସ୍ଥିର ହୋଇ ରହିପାରନ୍ତି ନାହିଁ। ସେ ଯେତେ ଶୀଘ୍ର ସନ୍ତୁଷ୍ଟ ହୁଅନ୍ତି, ସେତେ ଶୀଘ୍ର ରୁଷ୍ଟ ବି ହୋଇଯାଆନ୍ତି। କେତେବେଳେ କାହାକୁ ରାଜଶ୍ରୀ ମଣ୍ଡିତ କରନ୍ତି ତ ପୁଣି ପର ମୁହୂର୍ତ୍ତରେ ରାସ୍ତାକଡ଼ର ଭିକାରୀ। କିନ୍ତୁ ଜ୍ଞାନର ଅଧିଷ୍ଠାତ୍ରୀ ଧନର ଅଧିଷ୍ଠାତ୍ରୀଙ୍କର ସମ୍ପୂର୍ଣ୍ଣ ବିପରୀତ। ତାଙ୍କୁ ସନ୍ତୁଷ୍ଟ କରିବା ଏତେ ସହଜ ନୁହେଁ। ଜଣେ ସାଧକଙ୍କର ଜୀବନବ୍ୟାପୀ ସାଧନା ବି ଏଥିପାଇଁ କମ୍ ପଡ଼ିଯାଏ। ତାଙ୍କୁ ଆୟତ୍ତ କରିବା ଅତ୍ୟନ୍ତ କଠିନ ବ୍ୟାପାର। ମାତ୍ର ଥରେ ସେ ସନ୍ତୁଷ୍ଟ ହୋଇଗଲେ, ଜୀବନସାରା ଆଉ ବିମୁଖ ହୁଅନ୍ତି ନାହିଁ। କିନ୍ତୁ ଆମେ ସବୁ ସହଜ ମାର୍ଗୀ। ସାମ୍ପ୍ରତିକ ଜୀବନଶୈଳୀ ଆମଠାରୁ ଧୈର୍ଯ୍ୟ ଓ ସାଧନା କରିବାର ଶକ୍ତି ଛଡ଼େଇ ନେଇଛି। ଆମ ପାଖରେ କାଳିଦାସଙ୍କ ସାଧନା କାହିଁ ଯେ ଆମେ ସରସ୍ୱତୀଙ୍କ ବରପୁତ୍ର ହୋଇପାରିବା ? ଲକ୍ଷ୍ମୀଙ୍କ ଦ୍ୱାରା ବାରମ୍ବାର ପ୍ରତାରିତ ହେଲେ ସୁଦ୍ଧା ମଣିଷ ତାଙ୍କ ପିଛା ଛାଡ଼େନାହିଁ। ଏବେ ତ ସରସ୍ୱତୀଙ୍କ ନିବାସମାନ ଲକ୍ଷ୍ମୀଙ୍କ ବିଳାସ ସ୍ଥଳ ହୋଇ ସାରିଲାଣି। ଶିକ୍ଷା ଅନୁଷ୍ଠାନମାନ ଜ୍ଞାନୀ ଗୁଣୀ ଶିକ୍ଷାବିତ୍‌ଙ୍କ ଦ୍ୱାରା ଚାଲୁନାହିଁ। ଏହା ପଣ୍ୟ ରୂପେ ପରିଗଣିତ ହୋଇ ସାରିଲାଣି। ବ୍ୟବସାୟିକ କୌଶଳ ଜାଣିଥିବା ଚତୁର ଧୂର୍ତ୍ତ ବ୍ୟକ୍ତିଙ୍କ ଦ୍ୱାରା ଚାଲୁଛି ଶିକ୍ଷାୟତନ ଓ ଶିକ୍ଷା କାର୍ଯ୍ୟକ୍ରମ। ବିଦ୍ୟା ଅର୍ଜନ କରିବାକୁ ଶ୍ରଦ୍ଧାବାନ୍ ଓ ସଂଯତେନ୍ଦ୍ରିୟ ହେବାର ଆବଶ୍ୟକତା ପଡୁନାହିଁ। ଆଗ୍ରହ, ଶ୍ରଦ୍ଧା, ସାଧନା ନଥାଇ ଅର୍ଥ ବଳରେ ବହୁ ଉଚ୍ଚ ଡିଗ୍ରୀ ହାସଲ କରାଯାଇପାରୁଛି। ଶିକ୍ଷା ଅନୁଷ୍ଠାନରେ ପ୍ରବେଶ

କରିବା ପୂର୍ବରୁ କର୍ମକର୍ତ୍ତାମାନେ ନିଯୁକ୍ତିର ଲୋଭ ଦେଖାଉଛନ୍ତି। ଯେଉଁ ଶିକ୍ଷାରେ ନିଯୁକ୍ତି ସୁଯୋଗ ଅଧିକ, ସେହି ଶିକ୍ଷା ଗ୍ରହଣ କରିବା ପାଇଁ ଅଭିଭାବକମାନେ ଶିକ୍ଷାର୍ଥୀମାନଙ୍କୁ ବାଧ୍ୟ କରୁଛନ୍ତି। ସେ ଶିକ୍ଷା ନିଜ ଜୀବନ ପାଇଁ, ନିଜ ମାଟି ପାଇଁ, ନିଜ ଦେଶ ପାଇଁ କାମରେ ଲାଗୁ କି ନଲାଗୁ, ସେଥିପାଇଁ କେହି ଚିନ୍ତା କରୁ ନାହାନ୍ତି। ଶିକ୍ଷାଦ୍ୱାରା ମାନବିକତା ପଛେ ମରିଯାଉ, କିନ୍ତୁ ନିଯୁକ୍ତିର ସୁଯୋଗ ସୃଷ୍ଟି ହେଉ। ଆମେ ସବୁ ଏହି ପର୍ଯ୍ୟାୟରେ ଉପନୀତ ହୋଇଛେ, ଯେଉଁଠି 'ସର୍ବେ ଭବନ୍ତୁ ସୁଖୀନଃ...' ନୁହେଁ 'ସର୍ବେ ଭବନ୍ତୁ ଧନୀକଃ' ହୋଇଛି ଆମ ସମୟର ଆଭିମୁଖ୍ୟ।

ବିଦ୍ୟାର ପରିଭାଷା ଥିଲା 'ସା ବିଦ୍ୟା ଯା ବିମୁକ୍ତୟେ'। ଅଜ୍ଞାନ ରୂପକ ଅନ୍ଧକାରରୁ, ଦାସତ୍ୱ ରୂପକ ଶୃଙ୍ଖଳରୁ ଯାହା ମୁକ୍ତି ଦିଏ, ତାହା ବିଦ୍ୟା। ଏହା ଆମ ଦେବବାଣୀ। କିନ୍ତୁ ଏବେ ଆମ ଶିକ୍ଷା ଆମକୁ ଆଉ ଗୋଟିଏ ନୂତନ ଦାସତ୍ୱ ଆଡ଼କୁ ଟାଣି ନେଉଛି। ତାହା କେତେବେଳେ ବୈଦେଶିକ ରାଷ୍ଟ୍ର ଓ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ପାଖରେ ତ ପୁଣି କେତେବେଳେ ଅର୍ଥ ପାଖରେ। ଧନୀ ହେବାର ମୋହରେ ଆମେ ବିଦ୍ୟାର ବିଭାଗ ଚୟନ କରୁଛୁ। ନିଶ୍ଚିତ ନିଯୁକ୍ତି ହୋଇଛି ଆମ ଶିକ୍ଷାର ସ୍ଲୋଗାନ୍। 'ସା ବିଦ୍ୟା ଯା ନିଯୁକ୍ତୟେ' ହୋଇଛି ଆମ ଶିକ୍ଷାର ମାନଦଣ୍ଡ।

ଏ ପ୍ରକାର ଶିକ୍ଷା ମଣିଷକୁ ବିଭ୍ରାନ୍ତ ଓ ସାମାଜିକ ମୂଲ୍ୟବୋଧକୁ ବିଭ୍ରାଷ୍ଟ କରିବ ନାହିଁ ତ ଆଉ କ'ଣ କରିବ ? ଏଭଳି ସ୍ଥିତିରେ ମାନବ ପ୍ରଜାତିର ସୁଖ ଅନ୍ୱେଷଣ ଏକ ବିଫଳ ପ୍ରୟାସ ମାତ୍ର।



# ଚେଙ୍କ ଚିକିତ୍ସା

ମନୋବିଜ୍ଞାନୀ ଚିକିତ୍ସକମାନେ କହନ୍ତି, ଶରୀରରେ ଗୋଟିଏ ଯନ୍ତ୍ରଣାଠାରୁ ଆଉ ଗୋଟିଏ ଯନ୍ତ୍ରଣାର ତୀବ୍ରତା ଅଧିକ ହେଲେ ମସ୍ତିଷ୍କ ଛୋଟ ଯନ୍ତ୍ରଣାକୁ ଭୁଲି ବଡ଼ ଯନ୍ତ୍ରଣା ପ୍ରତି ସ୍ପର୍ଶକାତର ରହେ। ଏଥିପାଇଁ ସେକ ଚିକିତ୍ସା ଅତ୍ୟନ୍ତ ଫଳପ୍ରଦ ଚିକିତ୍ସା। ଏଥିରେ ସିଧାସଳଖ ନିଆଁକୁ ଶରୀରରେ ଦିଆଯାଏ ନାହିଁ। ଗରମ ପାଣି, ଲୁଣପୁଡ଼ା କିମ୍ବା ଇଟା କି ପଥରକୁ ଗରମ କରି ତା'ର ଉତ୍ତାପକୁ ଆକ୍ରାନ୍ତ ସ୍ଥାନରେ ଦିଆଯାଏ। ପାଦ ତଳର ବ୍ୟଥାକୁ ଦୂର କରିବା ପାଇଁ ଗରମ ଚୁଲି ଝିଙ୍କାରେ ପାଦ ଥୋଇବା ପାଇଁ ମାଆ ଜେଜେମା'ମାନେ କହିଥାନ୍ତି। ବୋଡ଼ାଜାତୀୟ ବିଷାକ୍ତ ସର୍ପ ଦଂଶନରେ ଆକ୍ରାନ୍ତ ସ୍ଥାନ ଫୁଲିଯାଇ ଫାଟିଯାଏ। ଏଥିରୁ ଉପଶମ ପାଇଁ ଆୟୁର୍ବେଦ ଶାସ୍ତ୍ର ମତରେ ଆକ୍ରାନ୍ତ ସ୍ଥାନରେ ମଞ୍ଜି କଦଳୀପତ୍ର ପକାଇ ତା' ଉପରେ ଜଳନ୍ତା ନୁଖୁରା ସଳିତାରେ ସେକ ଦେଇଥାନ୍ତି। କାଳୁପଡ଼ା ସେକ ସାରା ଭାରତ ବିଖ୍ୟାତ। ଆୟୁର୍ବେଦୀୟ ପଦ୍ଧତିରେ ଔଷଧୀୟ ପତ୍ର ଫୁଲକୁ ବ୍ୟବହାର କରି ଆକ୍ରାନ୍ତ ସ୍ଥାନରେ ସେକ ଦିଆଯାଇଥାଏ। ଏହି ପଦ୍ଧତିମାନଙ୍କରେ ଅଗ୍ନିର ଦାହିକା ଶକ୍ତିକୁ ନିୟନ୍ତ୍ରଣକୁ ଆଣି ରୋଗୀ ଶରୀରରେ ପ୍ରୟୋଗ କରାଯାଇଥାଏ। ଏହାଦ୍ୱାରା ଯନ୍ତ୍ରଣାରୁ ସାମୟିକ ଉପଶମ ହୋଇଥାଏ। ଏଲୋପାଥିକ୍ ଡାକ୍ତରମାନେ ଏହି ପଦ୍ଧତିଦ୍ୱାରା ରୋଗ ସମ୍ପୂର୍ଣ୍ଣ ଦୂରୀକରଣ ହେବା ସମ୍ପର୍କରେ ସନ୍ଦେହ ପ୍ରକାଶ କରନ୍ତି। ସେକ ଚିକିତ୍ସାରେ ଶରୀର ଅଗ୍ନିର ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସେନାହିଁ। ତେଣୁ ଜଳାପୋଡ଼ା କିମ୍ବା ଫୋଟକା ହୋଇ ଶରୀରର ତନ୍ତୁଗୁଡ଼ିକ ନଷ୍ଟ ହୁଏନାହିଁ। ଚିକିତ୍ସା ପରବର୍ତ୍ତୀ ସଙ୍କଟରେ ରୋଗୀ ଆକ୍ରାନ୍ତ ହୁଏନାହିଁ। କିନ୍ତୁ ଚେଙ୍କ ଚିକିତ୍ସା ଅତ୍ୟନ୍ତ ମାରାତ୍ମକ। ଅଗ୍ନିର ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସୁଥିବାରୁ ଶରୀରର କେତେକ ତନ୍ତୁ ପୋଡ଼ି ନଷ୍ଟ ହୋଇଯାଏ। ଆଉ ନୂଆ ତନ୍ତୁ ସୃଷ୍ଟି ହୁଏନାହିଁ। ପୋଡ଼ା ଦାଗଟା ବି ଲିଭେ ନାହିଁ। ପୋଡ଼ି ଯାଇଥିବା ଜାଗାକୁ ପ୍ଲାଷ୍ଟିକ୍ ସର୍ଜରୀଦ୍ୱାରା ହିଁ ସ୍ୱାଭାବିକ ଅବସ୍ଥାକୁ ଅଣାଯାଇଥାଏ। ପୂର୍ବରୁ କେତେକ ଆଦିବାସୀ ସମ୍ପ୍ରଦାୟ ଶରୀରର କିଛି ଅଂଶ ଖଣ୍ଡିଆ ଖାବରା ହୋଇଗଲେ ତାକୁ ଯୋଡ଼ିବା ପାଇଁ ଏହିପରି ସାମାନ୍ୟ ଅଗ୍ନିର ବ୍ୟବହାର କରୁଥିଲେ। କିନ୍ତୁ ଏହା ଆଦୌ ନିରାପଦ ନୁହେଁ। ସଂକ୍ରମିତ ହୋଇ କ୍ଷତଟି ଅତ୍ୟନ୍ତ ବିପଜ୍ଜନକ ପରିସ୍ଥିତି ସୃଷ୍ଟି କରିଥାଏ।

ଫକୀର ମୋହନ ସେନାପତିଙ୍କ ରେବତୀ ଗଳ୍ପର ନାୟକ ବାସୁଦେବ କପାଳରେ ଏମିତି ଏକ ପୋଡ଼ାଦାଗ ଥିଲା। ପିଲାଦିନେ ତାକୁ ପିହୁଳା ମାରୁଥିଲା। ତା' ମାଆ ତା' ମୁଣ୍ଡରେ ଲୁହାକଣ୍ଟାକୁ ଗରମ କରି ଚେଙ୍କ ଦେଇଥିଲା। ସେଇ ଚିହ୍ନଟି ତା' ମୁହଁକୁ ବେଶ୍ ମାନୁଥିଲା ବୋଲି ମଧ ଲେଖକ ଗଳ୍ପରେ ଲେଖିଥିଲେ। ଏଥିରୁ ଜଣାପଡ଼େ, କେବଳ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ନୁହେଁ, ଉପକୂଳବର୍ତ୍ତୀ ଅଞ୍ଚଳମାନଙ୍କରେ ମଧ ଏଇ ପ୍ରଥା ପ୍ରଚଳିତ ଥିଲା, କିନ୍ତୁ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ପରି ବ୍ୟାପକ ନଥିଲା। ସମୟକ୍ରମେ ଏ ଅନ୍ଧବିଶ୍ୱାସ ଅପସରି ଗଲା।

କିନ୍ତୁ ଶିକ୍ଷାଦୀକ୍ଷାରେ ଅନଗ୍ରସର ପଛୁଆ ଅଞ୍ଚଳମାନଙ୍କରେ ଚେଙ୍କ ଚିକିତ୍ସା ଏବେ ବି ବଳବତ୍ତର ରହିଛି। କେବଳ ଚେଙ୍କ ଚିକିତ୍ସା ନୁହେଁ, ଆଦିବାସୀମାନେ ଅତି ମାତ୍ରାରେ ଏହିପରି ଗୁଡ଼ାଏ ଅନ୍ଧବିଶ୍ୱାସ ଓ କୁସଂସ୍କାରରେ ବୁଡ଼ି ରହିଛନ୍ତି। ସେହି ପାରମ୍ପରିକ କୁପ୍ରଥା ହେତୁ ଅହେତୁକ ଦୁର୍ଗତିର ଶିକାର ହେଉଥିଲେ ସୁଦ୍ଧା ସେମାନେ ସହଜରେ ଏହାକୁ ପରିତ୍ୟାଗ କରନ୍ତି ନାହିଁ। ଜୀବନକୁ ବାଜି ଲଗାଇ ସେମାନେ ସଂସ୍କୃତି, ପରମ୍ପରାକୁ ବଞ୍ଚେଇ ରଖିଥାନ୍ତି। ଏବେ ଗଣମାଧ୍ୟମମାନଙ୍କରେ ବହୁ ଚର୍ଚ୍ଚିତ ହେଉଥିବା ଚେଙ୍କ ଚିକିତ୍ସା ସେହି ବହୁ ପ୍ରଚଳିତ କୁପ୍ରଥାର ପରିଣତି। ପାରମ୍ପରିକ ପଦ୍ଧତିରେ ଶିଶୁକୁ ନିରୋଗ ରଖିବାର ବ୍ୟାକୁଳତା ଯେ ଶିଶୁର ଜୀବନ ପ୍ରତି ଘାତକସିଦ୍ଧ ହୁଏ, ତାହା ସେମାନେ ଜାଣି ପାରନ୍ତି ନାହିଁ। ସଭ୍ୟ ଭାଷାରେ ଆମେ ଏହାକୁ ଶିଶୁ ନିର୍ଯାତନା କହୁ। କିନ୍ତୁ ସେମାନେ ଅଜ୍ଞତା ହେତୁ ଏପରି କରିଥାନ୍ତି।

ଶିଶୁଟି ଭୂମିଷ୍ଠ ହେବାର ୧୯ ଦିନ କିମ୍ବା ୨୧ ଦିନରେ ସେମାନେ ତା ନାଭି ଚାରିପଟେ ଏକ ପ୍ରକାର ଚେଙ୍କ ଦେଇଥାନ୍ତି। ଏହି ଚେଙ୍କ ଦେବାଦ୍ୱାରା ଅନାସି ଗଜରୀ (ନିମୋନିଆ) ହୁଏନାହିଁ ବୋଲି ସେମାନଙ୍କର ବିଶ୍ୱାସ। ଖଣ୍ଡେ କାଠରେ ସାପ ଜିଭ ଆକୃତିର ଚାରିଖଣ୍ଡ ସରୁ ଲୁହା ଲାଗିଥାଏ। ଏହାକୁ ସ୍ଥାନୀୟ ଭାଷାରେ କୁହାଯାଏ ଚୁବ୍‌କୀ ଡାଙ୍ଗ। ଏହି ଚୁବ୍‌କୀ ଡାଙ୍ଗ ଦ୍ୱାରା ଶିଶୁର ନାଭି ଚାରିପଟେ ଏକ ନିର୍ଦ୍ଦିଷ୍ଟ ଶିରାରେ ଚେଙ୍କ ଦିଆଯାଇଥାଏ। ପ୍ରଥମେ ଶିଶୁର ନାଭି ଚାରିପଟେ ଥଣ୍ଡା ପାଉଁଶ ବୋଳି ଦିଆଯାଏ। ଏହାପରେ ଚୁବ୍‌କୀ ଡାଙ୍ଗକୁ ଗରମ କରି ସେଥିରେ ସାମାନ୍ୟ ଚେଙ୍କ ଦିଆଯାଇଥାଏ। କେହିକେହି ଚୁବ୍‌କୀ ଡାଙ୍ଗ ବ୍ୟବହାର ନକରି ରଥ ଦଉଡ଼ିକୁ ଗରମ କରି ସେଥିରେ ଚେଙ୍କ ଦେଇଥାନ୍ତି। ଏଠାକାର କଥିତ ଭାଷାରେ ଏହାକୁ 'ଲାଛିବା' ବୋଲି କହନ୍ତି। ଏହି କାର୍ଯ୍ୟ ଅଭିଜ୍ଞ ସ୍ତ୍ରୀଲୋକ ଅଥବା ଦିଶୋରୀମାନଙ୍କ ଦ୍ୱାରା ହୋଇଥାଏ। ନବଜାତ ଶିଶୁର ଅନ୍ୟାନ୍ୟ ସଂସ୍କାର ସହ ଏ ପ୍ରକ୍ରିୟାକୁ ମଧ ସେମାନେ ସଂସ୍କାର ବୋଲି ଗ୍ରହଣ

କରିଥାନ୍ତି। ଏବେ ଏଥିରେ ଆହୁରି କେତେ ବିକୃତି ମିଶିଗଲାଣି। ଚୁବ୍‌କୀ ଡାଙ୍ଗ ବଦଳରେ ଚୁଡ଼ି କିମ୍ବା ହଳଦୀ ଖଣ୍ଡକୁ ଗରମ କରି ଶିଶୁର ପେଟକୁ ଲାଛି ଦିଆହେଉଛି। ଆହୁରି ଦିଶାରୀମାନେ ଶିଶୁର ପେଟରେ କଳାଶିରାର ସନ୍ଧାନ କରନ୍ତି। ଏହା ମଧ୍ୟ କୌଣସି ରୋଗର ଲକ୍ଷଣ ବୋଲି ସେମାନେ କହିଥାନ୍ତି। ଏପରି ଶିଶୁର ପେଟରେ ସେହି କଳାଶିରା ଉପରେ ଦିଶାରୀମାନେ ଲାଛିଥାନ୍ତି।

ଆଦିବାସୀ ସମ୍ପ୍ରଦାୟ କେତେକ ପାରମ୍ପରିକ ବିଶ୍ୱାସ ପାଖରେ ବନ୍ଧା ପଡ଼ି ଯାଇଥାଏ। ସୂକ୍ଷ୍ମ ଅନୁଧ୍ୟାନ କଲେ ଜଣାଯାଏ, ନବଜାତ ଶିଶୁର ସ୍ୱାସ୍ଥ୍ୟ ସୁରକ୍ଷା ପାଇଁ ଏନ୍ତୁଡ଼ିଶାଳର ପରିଷ୍କାର ପରିଚ୍ଛନ୍ନତା ସହ ମାଆର ଖାଦ୍ୟପଦାର୍ଥ ଓ ଆଚରଣ ଉଚ୍ଚାରଣ ଏଥିସହ ଜଡ଼ିତ। ଅନ୍ୟାନ୍ୟ ସବୁ ସମାଜ ପରି ଏମାନଙ୍କ ପାରମ୍ପରିକ ବିଶ୍ୱାସ ମଧ୍ୟ ଅନ୍ଧବିଶ୍ୱାସ ବିଜଡ଼ିତ ହୋଇ ବିକୃତ ରୂପ ନେଇଛି। ଏ ଅଞ୍ଚଳରେ ପ୍ରଚଳିତ ପ୍ରବାଦଟିଏ ଅଛି - 'ମାଆ ଛୁଞ୍ଚି ଖାଇଲେ ଶିଶୁର ମଳରେ ତାହା ଶାବଳ ହୋଇ ବାହାରିବ।' ତେଣୁ ମାଆକୁ ଅତ୍ୟନ୍ତ ସଂଯମୀ ଜୀବନଯାପନ କରିବାକୁ ହୋଇଥାଏ; ତପସ୍ୱିନୀର ଜୀବନ ପରି। ଏଥିପାଇଁ କଠୋର ସାଧନା ଓ ନିଷ୍ଠାର ଆବଶ୍ୟକତା ରହିଛି। ଏ ଚେତନା ପ୍ରତ୍ୟେକ ସମାଜରେ ପ୍ରଚଳିତ। ସଦ୍ୟଜାତ ଶିଶୁ ସ୍ତନ୍ୟପାନ କରୁଥିବା କାଳରେ ପିତାମାତା ସହବାସ କଲେ ମାଆର ପୀଡ଼ା ଶିଶୁ ଦେହକୁ ଯାଏ ଓ ସେ ଅସୁସ୍ଥ ହୁଏ; ଶିଶୁକୁ ଥଣ୍ଡା ଛାଡ଼େ ନାହିଁ ବୋଲି ସେମାନଙ୍କର ବିଶ୍ୱାସ। ଏହି ଅସୁସ୍ଥତାକୁ କୁହାଯାଏ ଅନାସି ଗଜରୀ। ସେଥିପାଇଁ ଶିଶୁ ପେଟରେ ଲାଛି ଦିଆଯାଇଥାଏ।

ଶିଶୁଟି ଜନ୍ମ ହେବାପରେ ତାକୁ ଏନ୍ତୁଡ଼ି ନିଆଁରେ ସେକିବା ପ୍ରଥା ସବୁ ଅଞ୍ଚଳରେ ରହିଛି, ଯାହା ଫଳରେ ଗୁଡ଼ାଏ ରୋଗ ଜୀବାଣୁ ନିଆଁର ଉତ୍ତାପରେ ମରିଯାଆନ୍ତି। ଆଦିବାସୀମାନେ ବହୁଦିନ ଧରି ଏନ୍ତୁଡ଼ି ନିଆଁରେ ଶିଶୁକୁ ସେକିଥାନ୍ତି। ଶିଶୁ ସମ୍ବନ୍ଧରେ ସେମାନଙ୍କ ମଧ୍ୟରେ ଆହୁରି ଗୋଟିଏ ବଡ଼ କୁସଂସ୍କାର ରହିଛି। ସେମାନ ସବୁ ଶିଶୁକୁ ସେକନ୍ତି ନାହିଁ। କେତେକ ଶିଶୁକୁ ସେମାନେ ଥଣ୍ଡା ଚିକିତ୍ସା କରନ୍ତି। ଏହି ଶିଶୁମାନଙ୍କ ତାଳୁ ଉପରେ ସେମାନେ ଦୁଇ ବା ତିନୋଟି ଗଜା ଆକୃତି ଥିବା ଆବିଷ୍କାର କରିଥାନ୍ତି। ଯଦି ଦୁଇଟି ଗଜା ଥାଏ, ତା'ହେଲେ ପିଲାକୁ ଦୁଇଥର ଓ ତିନୋଟି ଗଜା ଥିଲେ ତିନିଥର ଦିନକୁ ଗାଧୋଇ ଦିଅନ୍ତି। ଏପରି ପିଲାକୁ ନିଆଁରେ ନ ସେକି ଭୂଇଁରେ ସେକିଥାନ୍ତି। ଶିଶୁଟିକୁ କୋଳରେ ଶୁଆଇ ଯେମିତି ହାତ ପାପୁଲିରେ ନିଆଁରୁ ଉତ୍ତାପ ଆଣି ଶିଶୁକୁ ସେକାଯାଏ, ସେମିତି ଭୂଇଁରେ ପାପୁଲି ଛୁଆଁଇ ଶିଶୁ ଦେହସାରା ସେକନ୍ତି। ଶିଶୁର ବ୍ୟାୟାମ ହୁଏ। ତା'ର ପେଟରୋଗ ବି ଅଧା ଭଲ ହୋଇଯାଏ। ଏଥିରେ

କେତେ ବିଶ୍ୱାସ ଅଛି, କେତେ ଅନ୍ଧବିଶ୍ୱାସ ଅଛି, ତାହା କଳି ହୁଏନାହିଁ। କିନ୍ତୁ ସେଇ ବିଶ୍ୱାସର ଅନ୍ଧଗଳି ଭିତରୁ ବାହାରି ଆସିବା ପାଇଁ ଶିଶୁଟି ନାକେଦମ୍ ହୋଇଯାଏ। ଦିଅଁ ଗଢୁ ଗଢୁ ମଣିଷ ମାଙ୍କଡ଼ ଗଢ଼ିଦିଏ।

ଏବେ ଯେଉଁ ଚେଙ୍କ ଚିକିତ୍ସା ଉତ୍କଟ ସମସ୍ୟା ହୋଇ ଠିଆ ହୋଇଛି, ତା'ର ସମ୍ମୁଖୀନ ହେବା ପାଇଁ କେବଳ ଗଣମାଧ୍ୟମମାନଙ୍କରେ ପ୍ରଚାର ପ୍ରସାର ଯଥେଷ୍ଟ ନୁହେଁ। ଯେଉଁମାନେ ଏହି ଅନ୍ଧବିଶ୍ୱାସର ବଶବର୍ତ୍ତୀ, ସେମାନଙ୍କ ପାଖରେ ଟିଭି ନଥାଏ କିମ୍ବା ସେମାନେ ଖବରକାଗଜ ପଢ଼ନ୍ତି ନାହିଁ। ସେଇଥିପାଇଁ ତ ଟିଭି ଓ ଖବରକାଗଜରେ ବାରମ୍ବାର ଚେଙ୍କ ଚିକିତ୍ସାରେ ଶିଶୁ ମୃତ ଓ ଦିଶାରୀ ଗିରଫ ପରି ସମ୍ବାଦ ପ୍ରଚାର ହେଉଥିବା ବେଳେ ଗୋଟିକ ପରେ ଗୋଟିଏ ନୂଆ ନୂଆ ଶିଶୁ ଚେଙ୍କ ଘଟଣା ଦୃଷ୍ଟି ସମ୍ମୁଖକୁ ଆସିବାରେ ଲାଗିଛି। ସେମାନଙ୍କ ପରମ୍ପରା ସହ ଯେଉଁ ଅନ୍ଧବିଶ୍ୱାସ ଜଡ଼ିତ, ତାକୁ ଦୂର କରିବା ସେଇମାନଙ୍କ ଦ୍ୱାରା ସମ୍ଭବ ହେବ, କଣ୍ଟାକୁ କଣ୍ଟାରେ କାଢ଼ିଲା ପରି। ଯେଉଁ ଆଦିବାସୀ ଭାଇ ଭଉଣୀମାନେ ଏଇ ଅଜ୍ଞାନତାରୂପୀ ରାକ୍ଷସକୁ ଜୟ କରି ସାରିଲେଣି, ସମାଜର ମୁଖ୍ୟସ୍ରୋତରେ ସାମିଲ ହୋଇ ସାରିଲେଣି, ଏ ସାମାଜିକ ବ୍ୟାଧିକୁ ଦୂର କରିବାପାଇଁ ସେହିମାନେ ଅଣ୍ଟା ଭିଡ଼ିଲେ ସମସ୍ୟାର ସମାଧାନ ସହଜ ହେବ।



# ପୀଡ଼ିତାଙ୍କ ପ୍ରତି ଆମ ସାମାଜିକ ଦୃଷ୍ଟିକୋଣ

ଭାରତୀୟ ଦର୍ଶନ ଶାରୀରିକ ପବିତ୍ରତା ଅପେକ୍ଷା ଚେତନାଗତ ପବିତ୍ରତା ଉପରେ ଗୁରୁତ୍ୱ ଦେଇଆସିଛି। ଅହଲ୍ୟା, ଦ୍ରୌପଦୀ, କୁନ୍ତୀ, ତାରା ଓ ମନ୍ଦୋଦରୀ ପରିସ୍ଥିତିର ଶରବ୍ୟ ହୋଇ ଯୌନ ଶୁଦ୍ଧତା ରକ୍ଷା କରିପାରିନାହାଁନ୍ତି। ଏକାଧିକ ପୁରୁଷଙ୍କ ପାଖରେ ଶରୀର ସମର୍ପଣ କରିଛନ୍ତି। ତଥାପି ସେମାନେ ସତୀ, ପ୍ରାତଃ ସ୍ମରଣୀୟ। ସତୀଙ୍କ ତାଲିକାର ଉର୍ଦ୍ଧ୍ୱରେ ରହିବାକୁ ସ୍ୱୀକୃତି ଏମାନଙ୍କୁ ମିଳିଛି। ସତୀତ୍ୱ ଏକ ଚେତନା, ତାହା ଆଦୌ ତୁଚ୍ଛ ଶରୀର ପର୍ଯ୍ୟାୟବାଚୀ ନୁହେଁ। ମନ ଦୃଢ଼ କଲେ ଗାଡ଼ିଆ ଗଙ୍ଗା ବୋଲି ଆମ ଭାରତୀୟ ଦର୍ଶନ କହେ। ନିବୃତ୍ତି ନିପୀଡ଼ିତ ମଣିଷ ଚେତନା ସ୍ତରରେ ବିଷୟ ବାସନା ପ୍ରତି ଆସକ୍ତି ଥିଲେ ତାର ନିବୃତ୍ତି ଯେପରି ପାପାଚାର ପର୍ଯ୍ୟାୟବାଚୀ ଠିକ୍ ସେହିପରି ପ୍ରବୃତ୍ତି ପରିଚାଳିତ ନିବୃତ୍ତିମନସ୍କ ମଣିଷ ଯେକୌଣସି ସଂଯତେନ୍ଦ୍ରୀୟ ଯୋଗୀ ଋଷିଙ୍କ ଠାରୁ କମ୍ ପୂଣ୍ୟମୟ ନୁହେଁ।

ଶାରୀରିକ ଶୁଚିତା ପାଇଁ ସକଳ ଅନୁଶାସନ ସତ୍ତ୍ୱେ ଆମ ସଂସ୍କୃତି ଆତ୍ମାର ପବିତ୍ରତାକୁ ସ୍ୱୀକାର କରିଛି, ଶରୀରକୁ ନୁହେଁ। ଆମ ଦର୍ଶନ ଆତ୍ମଦର୍ଶୀ। ଆତ୍ମିକ ବିଦ୍ୟା ପାଇଁ ଶରୀରଟା କେବଳ ସାଧନ ମାତ୍ର। ଆମ ଦର୍ଶନ ଶରୀର ସର୍ବସ୍ୱ ନୁହେଁ। ଆମ ସଂସ୍କୃତି ମୃତ୍ୟୁକୁ ଶରୀର ତ୍ୟାଗ - ଦେହ ଛାଡ଼ିବା ଭଳି ଭାବ ପ୍ରକାଶ କଲାବେଳେ ପାଶ୍ଚାତ୍ୟ ଦର୍ଶନରେ ମୃତ୍ୟୁକୁ 'ଗିଭ୍' ଅଫ୍ ଦ ସୋଲ୍ ଶରୀର ଆତ୍ମାକୁ ପରିତ୍ୟାଗ କଲା ବୋଲି କୁହାଯାଇଥାଏ। ଆମ ସଂସ୍କୃତିରେ ଶରୀରକୁ ଦାହ ସଂସ୍କାର କରି ଆତ୍ମାର ସଦ୍‌ଗତି ନିମନ୍ତେ କ୍ରିୟାକାର୍ଯ୍ୟ କରୁଥିବାବେଳେ ପାଶ୍ଚାତ୍ୟ ସଂସ୍କୃତି ମଣିଷର ମୃତ୍ୟୁ ପରେ ଶରୀରକୁ ସୁଗନ୍ଧିତ ଦ୍ରବ୍ୟାଦି ଦ୍ୱାରା ସୁରକ୍ଷିତ କରିଥାଏ। ଆତ୍ମାକୁ ଅପବିତ୍ର ବୋଲି ଧରାଯାଇ ଶରୀର ଠାରୁ ଦୂରେଇ ରଖିବା ପାଇଁ ଯଥାସାଧ୍ୟ ବ୍ୟବସ୍ଥା କରାଯାଇଥାଏ। ସେମାନଙ୍କ ବିଶ୍ୱାସ, ମୃତ୍ୟୁପରେ ଆତ୍ମା ସର୍ବଦା ଶରୀରରେ ପ୍ରବେଶ କରିବାପାଇଁ ସୁଯୋଗ ଖୋଜୁଥାଏ। ତେଣୁ ଶରୀରକୁ କଫିନ୍ ଭିତରେ ଅଥବା ନିବୁଜ କୋଠରୀ ଭିତରେ

ସାଇତି ରଖାଯାଇଥାଏ । କିନ୍ତୁ ଆମ ସଂସ୍କୃତି ଶରୀର ଉପରେ ଗୁରୁତ୍ୱ ଦିଏ ନାହିଁ । ଏସବୁ ସତ୍ତ୍ୱେ ଆମର ଅନ୍ଧ ବିଶ୍ୱାସ ଓ ଅଜ୍ଞାନତା ଆମ ସଂସ୍କୃତିର ମହନୀୟ ଦିଗକୁ ଉପଲବ୍ଧି କରିପାରୁନାହିଁ । ପାଶ୍ଚାତ୍ୟ ଭୋଗବାଦୀ ଚେତନାର ଅନ୍ଧାନୁକରଣ ଆମକୁ ଦେହ ସର୍ବସ୍ୱ କରିଛି । ଆମ ଶାସ୍ତ୍ର ସଂହିତାର ସକଳ ମହନୀୟତାକୁ ସେ ଉପେକ୍ଷା କରିଛି । ମଧ୍ୟଯୁଗୀୟ ବୈଦେଶିକ ଶାସକମାନଙ୍କ ପ୍ରଭାବ ଆମ ସମାଜରେ ନାରୀମାନଙ୍କର ଯେଉଁ କ୍ଷତିସାଧନ କରିଗଲା ତାହା ଏକବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ସୁଦ୍ଧା ପରିପୂରଣ ହୋଇ ପାରିଲା ନାହିଁ। ମଧ୍ୟଯୁଗ ହିଁ ନାରୀମାନଙ୍କୁ ଦେହ ସର୍ବସ୍ୱ କରିଦେଲା । ତା'ର ଯୌନ ପବିତ୍ରତା ରଖିବା ପାଇଁ ସମାଜରେ ବିଭିନ୍ନ ପ୍ରକାର କାଇଦା କଟକଣା ଜାରି ହେଲା । କୌଣସି କାରଣ ବଶତଃ ଯଦି ତା ଶରୀର କେଉଁଠି ଲୁଣ୍ଠିତ ହେଲା ସେ ସର୍ବସ୍ୱ ହରାଇଲା ବୋଲି ତାଚ୍ଛଲ୍ୟ କରାଗଲା ।

ନାରୀମାନଙ୍କ ପ୍ରତି ସମାଜର ମଧ୍ୟଯୁଗୀୟ ମାନସିକତାର ପରିବର୍ତ୍ତନ ପାଇଁ ବହୁତ ଉଦ୍ୟମ ହୋଇଛି । ସେମାନଙ୍କ ସର୍ବାଙ୍ଗୀନ ଉନ୍ନତି ପାଇଁ ବିଭିନ୍ନ ସରକାରୀ ଯୋଜନା ପ୍ରଣୟନ ହେଉଛି, ସେଚ୍ଛାସେବୀ ଅନୁଷ୍ଠାନମାନେ ନାରୀ ସୁରକ୍ଷା ଓ ସ୍ୱାଧିକାର ପାଇଁ ପ୍ରହରୀ ସଦୃଶ୍ୟ ସଦା ଜାଗ୍ରତ ହୋଇ ରହିଛନ୍ତି । କେନ୍ଦ୍ର ଓ ରାଜ୍ୟ ମହିଳା କମିଶନ ନାରୀମାନଙ୍କର ଆପତ୍ତି ଅଭିଯୋଗ ଶ୍ରବଣ ପାଇଁ ଉତ୍କର୍ଣ୍ଣ ହୋଇ ରହିଛନ୍ତି । ସର୍ବୋପରି ମାନବାଧିକାର କମିଶନର ସକଳପ୍ରକାର ପୀଡ଼ନର ପ୍ରତିକାର ନିମନ୍ତେ ହସ୍ତକ୍ଷେପ କରିବାର ଅଧିକାର ରହିଛି । ଏସବୁ ସତ୍ତ୍ୱେ ନାରୀ ସମାଜର ପାରମ୍ପରିକ ବଳୟ ଭିତରୁ ମୁକୁଳି ପାରିନାହିଁ । ସାମାଜିକ ରୀତି ନୀତି ଆଚାର ବ୍ୟବହାରର ଯୂପକାଷ୍ଠରେ ସେ ସମ୍ପୂର୍ଣ୍ଣ ପେଶି ହୋଇଯାଇଛି । ଯେଉଁ ସାମାଜିକ କାର୍ଯ୍ୟକଳାପ ପୁରୁଷର ପୌରୁଷ ବୋଲି ଧରାଯାଏ, ନାରୀ ପାଇଁ ତାହା ଅପରାଧ । ପାରମ୍ପରିକ ପରିଭାଷାରେ ପୁରୁଷକୁ ପିତଳ ହାଣ୍ଡି ଓ ନାରୀମାନଙ୍କୁ ମାଟିହାଣ୍ଡି ବୋଲି କୁହାଯାଏ । ଗୋଟିଏକୁ ଧୋଇ ଦେଲେ ଉଜ୍ଜ୍ୱଳ ହୋଇଯିବାବେଳେ ଅନ୍ୟଟିକୁ ଛୁଇଁଲେ ଅପବିତ୍ର ହୋଇଯାଏ ବୋଲି ବଦ୍ଧମୂଳ ଧାରଣା ଏବେବି ଅକ୍ଷୁଣ୍ଣ ହୋଇରହିଛି । ସାମାଜିକ ଶୃଙ୍ଖଳା, ସଂସ୍କୃତି ପରମ୍ପରାର ସୁରକ୍ଷା ନାରୀର କର୍ତ୍ତବ୍ୟ, ଅଥଚ ପୁରୁଷଟିଏ ଏସବୁକୁ ଭଗ୍ନ କରିବାରେ ସର୍ବନିମ୍ନ ସୁଯୋଗ ଟିକକ ହାତଛଡ଼ା କରିନାହିଁ । ଏଥିପାଇଁ ପୁରୁଷମାନଙ୍କପାଇଁ କୌଣସି ଦଣ୍ଡ ବିଧାନ ନଥିବା ସ୍ଥଳେ ମହିଳାଙ୍କୁ ନାନାପ୍ରକାର ସାମାଜିକ ଲାଞ୍ଛନା ଭୋଗ କରିବାକୁ ହୋଇଥାଏ । ପରିବାରକୁ ଅବହେଳା କରି ପୁରୁଷଟିଏ ସମାଜସେବା, ସାହିତ୍ୟସେବା ଅଥବା ରାଜନୀତି କ୍ଷେତ୍ରରେ ଉତ୍ସର୍ଗୀକୃତ ହୋଇ କାର୍ଯ୍ୟ କରେ ତାହା ପୁରୁଷର ମହାନତା ବୋଲି ପରିଗଣିତ

ହୋଇଥିବାବେଳେ ନାରୀଟିଏ ଠିକ୍ ସେହିଭଳି କାମକଲେ ସମାଜ ତାକୁ ବରଦାସ୍ତ କରିପାରେ ନାହିଁ। ବହୁ ପ୍ରତିଭାମୟୀ ମହିଳାଙ୍କର ବିବାହ ପରେ ପ୍ରତିଭା ଅପଚୟ ହୋଇଥାଏ। ସେମାନଙ୍କ ପ୍ରଥମ ଧ୍ୟାନ ହୁଏ ପରିବାର। ତା'ପରେ ନିଜର ବ୍ୟକ୍ତିଗତ ପ୍ରତିଭାର ବିକାଶ। ଆମ ସମାଜରେ ନାରୀମାନେ ଏପ୍ରକାର ଢ଼ାଞ୍ଚାରୁ ମୁକୁଳି ପାରନ୍ତି ନାହିଁ। ଯେଉଁମାନେ ଏ ସାମାଜିକ ବିଧିବିଧାନକୁ ଅସ୍ୱୀକାର କରନ୍ତି ସେମାନଙ୍କ ସଂଖ୍ୟା ଅତ୍ୟନ୍ତ ସୀମିତ।

ଏହି ପରିପ୍ରେକ୍ଷୀରେ ଆମେ ଦୁଷ୍କର୍ମର ଶିକାର ହୋଇଥିବା ପୀଡ଼ିତାଙ୍କ କଥା ଚିନ୍ତା କରିବା। ବିଚାରାଳୟ ଏମାନଙ୍କ ସପକ୍ଷରେ ରାୟ ଦେଲେ ସୁଦ୍ଧା ସେମାନଙ୍କୁ ସାମାଜିକ ନ୍ୟାୟ ମିଳେ ନାହିଁ। ସେ ସମାଜରେ ଦୟନୀୟ ହୋଇ ବଞ୍ଚେ। ଅବିବାହିତ ହୋଇଥିଲେ ତା ବିବାହ ପାଇଁ ସମସ୍ୟା ହୋଇପଡ଼େ। ବିବାହିତା ହୋଇଥିଲେ ପରିବାର ଲୋକେ ମର୍ଯ୍ୟାଦାହାନୀ ଆଶଙ୍କାରେ ପୀଡ଼ିତାକୁ ଗ୍ରହଣ କରିପାରନ୍ତି ନାହିଁ। ପତିତା ଆଶ୍ରମ ହୁଏ ତା'ର ବାସସ୍ଥାନ। ଅଦାଲତର ରାୟ ତା' ପାଇଁ ବୃଥା ହୋଇପଡ଼େ। ଅଭିଯୁକ୍ତ କିଛିଦିନ ସଜା କାଟି ହୁଏତ ଘର ସଂସାର କରି ଖୁସିରେ ରହେ। କିନ୍ତୁ ପୀଡ଼ିତାଟି କେଉଁ କୂଳର ହୋଇପାରେ ନାହିଁ। ତା'ର ପ୍ରତିଭା, ଦକ୍ଷତା, ବ୍ୟକ୍ତିତ୍ୱ ସବୁକିଛି ତୁଚ୍ଛ ହୋଇଯାଏ। ଫଳରେ ପୀଡ଼ିତାଟି ମୃତ୍ୟୁ କାମନା କରେ। ଆମ ସାହିତ୍ୟ, ଇତିହାସ, ସମସାମୟିକ ମନୋରଞ୍ଜନ ମାଧ୍ୟମ ସିନେମା ଥିଏଟର, ଅପେରା ଆଦିରେ ପୀଡ଼ିତାର ନିଶ୍ଚିତ ପରିଣତି ମୃତ୍ୟୁ ବୋଲି ପ୍ରଦର୍ଶିତ ହୋଇଥାଏ। ଏପ୍ରକାର ଲେଖା ଉପରେ କଟକଣା ଜାରି କରିବା ଜରୁରୀ। ଏଗୁଡ଼ିକ ମହିଳାମାନଙ୍କୁ ଯଥେଷ୍ଟ ପ୍ରଭାବିତ କରିଥାଏ। ଜୀବନରେ କେବେ ଯଦି ଏପ୍ରକାର ଦୁର୍ଘଟଣା ଘଟେ ତେବେ ନିଜକୁ ଅପବିତ୍ର ଭାବି ସେ ଆତ୍ମହତ୍ୟା କରେ।

ପାଠକମାନଙ୍କର ସ୍ମରଣ ଥିବା ରାଜସ୍ଥାନର ଜଣେ ପୀଡ଼ିତା ମହିଳା ବନ୍‌ଓ୍ୱାରୀ ଦେବୀ କଥା। ସେ ନିଜେ ସମାଜର ନିମ୍ନବର୍ଗର ଅଶିକ୍ଷିତ ମହିଳାଟିଏ। କିନ୍ତୁ ସମାଜର ଭ୍ରାନ୍ତ ମାନସିକତାକୁ ଆହ୍ୱାନ ଦେଇ କହିଥିଲେ, ମୋ ପ୍ରତି ଯେଉଁମାନେ ଦୁଷ୍କର୍ମ କରିଛନ୍ତି ସେହିମାନେ ଦୋଷୀ ଓ ପତିତ - ମୁଁ ନୁହେଁ। ତାଙ୍କର ଏ କ୍ରାନ୍ତିକାରୀ କଥା ଅନ୍ୟ ଉଚ୍ଚବର୍ଗକୁ ପ୍ରଭାବିତ କଲାପରି ମନେ ହେଲା ନାହିଁ। ପୀଡ଼ିତାଙ୍କୁ ଆମେ ଦୟା ଅନୁକମ୍ପା ପ୍ରଦର୍ଶନ କରି ଚାଲିଲୁ। ଆମ ଦୟାର୍ଦ୍ର ଦୃଷ୍ଟିରେ ସେ ଆହୁରି ଦୁର୍ବଳ ହୋଇପଡ଼ିଲା। ବଞ୍ଚିବା ପାଇଁ ଅନ୍ୟର ସାହାରା ଖୋଜିଲା। ତା ଆତ୍ମ ବିଶ୍ୱାସ ଭୁଷୁଡ଼ି ପଡ଼ିଲା। ଅଥଚ ବନଓ୍ୱାରୀ ଦେବୀ ଉଚ୍ଚବର୍ଗ ଲୋକଙ୍କ ଦ୍ୱାରା ନିନ୍ଦିତ ଭର୍ତ୍ସିତ ହେଲେ ସୁଦ୍ଧା ତା'ର

ଆତ୍ମବିଶ୍ୱାସ ସମାଜକୁ ନୂତନ ଆହ୍ୱାନ ଦେଇଛି। ମର୍ଯ୍ୟାଦାର ସହିତ ବଞ୍ଚିବା ପାଇଁ ପ୍ରୋତ୍ସାହନ ଦେଇଛି। ଆମ ଚିରାଚରିତ ମାନସିକତାକୁ ବ୍ୟଙ୍ଗ, ବିଦ୍ରୂପ କରିଛି। ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଢ଼ି ସେ ଏବେ ଅନେକ ଦୁଃସ୍ଥ ଅସହାୟ ମହିଳାମାନଙ୍କର ପ୍ରେରଣାଦାତ୍ରୀ ହୋଇପାରିଛନ୍ତି। ଆମ ଦର୍ଶନ ପରମ୍ପରା ନାରୀର ଶାରୀରିକ ଶୁଦ୍ଧତା ଉପରେ ଗୁରୁତ୍ୱାରୋପ କରିଛି। ସତୀତ୍ୱ ନାରୀର ଶକ୍ତି। ଏହାକୁ ଆମେ ଅସିଦ୍ଧ ବୋଲି କହୁନାହୁଁ। କିନ୍ତୁ ଏହା ନାରୀ ପାଇଁ ସର୍ବଶେଷ ବକ୍ତବ୍ୟ ନୁହେଁ। ଶରୀର ପରେ ନାରୀର ଗୋଟିଏ ବ୍ୟକ୍ତିତ୍ୱ ଅଛି, ଆତ୍ମା ଅଛି। ଦୁର୍ଘଟଣାବଶତଃ ଯଦି ସେ ଦୁଷ୍କର୍ମର ଶିକାର ହେଲା, ତାର ସର୍ବସ୍ୱ ଲୁଣ୍ଠିତ ହୋଇଗଲା, ତା ଜୀବନ ନଷ୍ଟ ହୋଇଗଲା, ଏଭଳି ମତ ମନ୍ତବ୍ୟ ଓ ମାନସିକତାଠାରୁ ଆମେ କ୍ଷାନ୍ତ ରହିବା ନିହାତି ଜରୁରୀ।



# ଗଣମାନସିକତା ଓ ଗଣଦାୟିତ୍ୱ

ଗଣମନସ୍ତତ୍ତ୍ୱ ବଢ଼ିଲା ନଈର ସୁଅ ପରି। ଅମଡ଼ା ମାଡ଼ିଯାଏ। ସେଥିପାଇଁ ନୀତି ନିୟମ, ତର୍କ ବିତର୍କ ଓ ଶାସ୍ତ୍ରସମ୍ମତ ସୀମା ସରହଦ ନାହିଁ। ଏ ମନସ୍ତତ୍ତ୍ୱରେ ଏକଦା ସର୍ବୋଚ୍ଚ ମାନ୍ୟତା ଦିଆଯାଇଥିବା ଓ ଦେବତାର ଆସନରେ ବସା ଯାଇଥିବା ବ୍ୟକ୍ତିଙ୍କୁ ପରବର୍ତ୍ତୀ ସମୟରେ ତାଙ୍କର କବର ଖୋଳି ବାହାର କରି ସର୍ବସାଧାରଣରେ ଭର୍ତ୍ସନା କରାଯିବାର ଦୃଷ୍ଟାନ୍ତ ବିଶ୍ୱରେ ବିରଳ ନୁହେଁ। ଭରସା କରିହୁଏ ନାହିଁ ଏ ଅନ୍ଧମୁହାଁଣୀକୁ। ଦୁନିଆର ସର୍ବଶ୍ରେଷ୍ଠ ବିଦ୍ୱାନ ଓ ବୁଦ୍ଧିଜୀବୀ ମଣିଷ ବି ବେଳେବେଳେ ଅସହାୟ ହୋଇ ପଡ଼ନ୍ତି ଏ ମାନସିକତା ନିକଟରେ।

ବର୍ଟ୍ରାଣ୍ଡ ରସେଲ ତାଙ୍କ ସମୟର ଅଦ୍ୱିତୀୟ ଜ୍ଞାନୀ ଓ ଗୁଣୀ। ତାଙ୍କର ମାନବବାଦୀ ଚିନ୍ତାଧାରା ବିଶ୍ୱ ମହାଯୁଦ୍ଧକୁ ବିରୋଧ କରୁଥିଲା। ଜନତାଙ୍କ ମଧ୍ୟରେ ଯୁଦ୍ଧ ବିରୋଧୀ ଭାବଧାରା ସୃଷ୍ଟି କରିବା ପାଇଁ ସେ ଆପ୍ରାଣ ଚେଷ୍ଟା କରିଥିଲେ। ଏଥିପାଇଁ ସେ ତତ୍କାଳୀନ ସରକାର ଚର୍ଚ୍ଚିଲ୍‌ଙ୍କ ରୋଷର ଶିକାର ହେବା ସଙ୍ଗେ ସଙ୍ଗେ ଜନତାଙ୍କଦ୍ୱାରା କମ୍ ନିନ୍ଦିତ ଓ ଭର୍ତ୍ସିତ ହୋଇନଥିଲେ। ଏପରିକି ଇଂଲଣ୍ଡର ସମସ୍ତ ପତ୍ରପତ୍ରିକା ତାଙ୍କର ଲେଖା ଛାପିବା ବନ୍ଦ କରି ଦେଇଥିଲେ। ନିରୁପାୟ ରସେଲ୍ ମାନସିକ ଚାପ ପ୍ରଶମନ ପାଇଁ ମାଇଲ୍ ମାଇଲ୍ ରାସ୍ତା ଚାଲୁଥିଲେ। ଥରେ ଏକ ଥିଏଟର୍ ସାମ୍ନାରେ ଯାଉଥିବା ବେଳେ ସେ ଦେଖିଲେ ହଲ୍‌ରୁ ବାହାରି ଦର୍ଶକମାନେ ଆଖିରୁ ଲୁହ ପୋଛୁଛନ୍ତି। ଅନୁସନ୍ଧାନ କରି ସେ ଜାଣିଲେ ଯେ ସେଠାରେ ଅଭିନୀତ ହେଉଥିଲା ଏକ ଗ୍ରୀକ୍ ଟ୍ରାଜେଡି ଯେଉଁଥିରେ ଏକ ଶିଶୁକୁ ନିର୍ଦ୍ଦୟ ଭାବରେ ହତ୍ୟା କରାଯାଇଥିଲା। ବ୍ୟଥିତ ହୋଇ ରସେଲ୍ ମନ୍ତବ୍ୟ ଦେଇଥିଲେ- 'ଗୋଟିଏ ନାଟକର ଅଭିନୟ ଦେଖି ଯେଉଁମାନଙ୍କର ହୃଦୟ ଏପରି ବିଗଳିତ ହୋଇଯାଏ, ସେମାନେ ଶହଶହ ଶିଶୁଙ୍କୁ ହତ୍ୟା କରୁଥିବା ଏକ ସରକାରକୁ ନିର୍ବିକାର ଭାବରେ ସମର୍ଥନ କରୁଛନ୍ତି କିପରି ?

ଜନତାଙ୍କ ତରବାରୀରେ ବେଳେବେଳେ ଦୁଇପଟେ ଧାର ତ ବେଳେବେଳେ ସେ ତରବାରୀ ସମ୍ପୂର୍ଣ୍ଣ ଦନ୍ଥୁଡ଼ା। ଯେତେ ଶାଣ ଦେଲେ ବି ସେଥିରେ ଧାର ହୁଏନାହିଁ। କେତେବେଳେ ନିଦାବିଷ୍ଣୁ ପରି ସକଳ ଅନ୍ୟାୟ ଅତ୍ୟାଚାରକୁ ନିର୍ବିକାର ଭାବରେ

ସେମାନେ ସହ୍ୟ କରିଯାଆନ୍ତି ତ କେତେବେଳେ ଏତେ ଟିକେ ଅନ୍ୟାୟ ଅତ୍ୟାଚାରରେ ପ୍ରତିକ୍ରିୟାଶୀଳ ହୋଇ ଖଣ୍ଡପ୍ରଳୟ କରି ବସନ୍ତି। ମଞ୍ଚ ଉପରେ ଅଭିନୟ କରୁଥିବା ନାୟିକାର ଦୁଃଖରେ ଦ୍ରବୀଭୂତ ହୋଇ ଯାଉଥିବା ମଣିଷଟା ଅଭିନୟ ଶେଷରେ ନିଜେ ପାଲଟିଯାଏ ଅତ୍ୟାଚାରୀ। ନାରୀଟିଏ ଅତ୍ୟାଚାରିତ ହେଉଥିବା ଦେଖିଲେ ସେ ମଧ୍ୟ ବାଟ ଭାଙ୍ଗି ଚାଲିଯାଏ।

ସରକାରଙ୍କ ଦୟା ଓ ଅନୁକମ୍ପାର ପ୍ରାର୍ଥୀ ହେବା ଏ ଯୁଗରେ ଜନତାଙ୍କର ଆଉ ଏକ ବିଳାସ। ନିଜର ଦୁର୍ଗତି ପାଇଁ ସେ ସରକାର ଉପରେ ଦୋଷ ଲଦିଦିଏ। ସରକାରଙ୍କ ସାହାଯ୍ୟ ସହଯୋଗ ବିନା ଜନତା କିଛି କରିପାରେ ନାହିଁ ବୋଲି ସେମାନଙ୍କର ଧାରଣା। ଦିନ ଥିଲା, ଏ ଜାତି ନିଜ ଦାରିଦ୍ର୍ୟକୁ ଗୋପନ ରଖିବା ଶିଖିଥିଲା। ମୁହଁରେ ଆଣ ବୋଳି ବସାଦହି ଖାଇଛି ବୋଲି କହୁଥିଲା। ଏହା ଯେତେ ହାସ୍ୟାସ୍ପଦ ହେଲେ ସୁଦ୍ଧା ଏଥିରେ ମଣିଷର ସ୍ୱାଭିମାନ ଥିଲା; ଆତ୍ମସମ୍ମାନ ଥିଲା। ନିଜ ଦାରିଦ୍ର୍ୟକୁ ସେମାନେ ନିଲାମ କରୁନଥିଲେ। ଅନ୍ୟର ଦୟା ଦକ୍ଷିଣାରେ ବଞ୍ଚିବା ପାଇଁ ପସନ୍ଦ କରୁନଥିଲେ। ଦାରିଦ୍ର୍ୟ ଭିତରେ ବି ମଥା ଟେକି ବଞ୍ଚି ରହୁଥିଲେ। ଦେଶରେ ଜାତୀୟ ବିପର୍ଯ୍ୟୟ ସମୟରେ ଜନତାଙ୍କ ପାଇଁ ଅନ୍ନଛତ୍ର ଖୋଲା ଯାଉଥିଲା; ରିଲିଫ୍ କ୍ୟାମ୍ପମାନ ବସୁଥିଲା। କିନ୍ତୁ ଏ ଜାତି ସହଜରେ ରିଲିଫ୍ କ୍ୟାମ୍ପରେ ଆଶ୍ରୟ ନେଉନଥିଲା। କଣ୍ଠାଗ୍ରତ ପ୍ରାଣ ନହେବା ପର୍ଯ୍ୟନ୍ତ ଅନ୍ନଛତ୍ରର ଅନ୍ନ ଛୁଉଁ ନଥିଲା। ଅକର୍ତ୍ତବ୍ୟରେ ପଡ଼ି କେହି ଅନ୍ନଛତ୍ରରେ ପଶିଥିଲେ, ସେ ପ୍ରାୟଶ୍ଚିତ କରୁଥିଲା। ଲୋକେ ତାକୁ ସାମାଜିକ ବାସନ୍ଦ କରୁଥିଲେ। ଏବେ କିନ୍ତୁ ସେ ସ୍ୱାଭିମାନ ଆଉ ଆତ୍ମସମ୍ମାନ କଡ଼ାକରେ ନାହିଁ। ଏବେ ରିଲିଫ୍ ବଣ୍ଟନ କେନ୍ଦ୍ରରେ ଦରିଦ୍ରଙ୍କ ଅପେକ୍ଷା ସ୍ୱଚ୍ଛଳଙ୍କ ଭିଡ଼ ବେଶୀ। ଖାଦ୍ୟ ସୁରକ୍ଷାର ହିତାଧିକାରୀ ରୂପେ ବିଧାୟକ, ମେୟର, ଜିଲ୍ଲା ପରିଷଦ ସଭ୍ୟ ଓ ସରପଞ୍ଚ, ଅଧ୍ୟାପକ ଓ ସରକାରୀ ଅଫିସରମାନେ ନିଜ ପ୍ରାର୍ଥିତ୍ୱ ଦିଅନ୍ତି। ଲୋକ ଚରିତ୍ର ଏବେ ବଦଳି ଯାଇଛି। ନିଜ ଦାରିଦ୍ର୍ୟକୁ ବିଜ୍ଞାପିତ କରିବାର ପ୍ରତିଯୋଗିତା ଆମ ଭିତରେ ତୀବ୍ର। ବ୍ୟାଙ୍କ୍ ଆଦି ଋଣ ପ୍ରଦାନକାରୀ ସଂସ୍ଥାର ଖାତାରେ ଧନୀ ଋଣ ଗ୍ରହୀତାଙ୍କ ତାଲିକା ବେଶୀ। କୋଟି କୋଟି ଟଙ୍କା ଋଣ କରି ଦେବାଳିଆ ଘୋଷିତ ହେବାରେ ବି ଆମ ଲୋକମାନେ ଗୌରବ ଅନୁଭବ କରନ୍ତି। ବିଳାସମୟ ଜୀବନଯାପନ କରନ୍ତି। ସତେ ଯେମିତି ଚାର୍ବାକ୍‌ଙ୍କ ନୀତି– 'ଋଣଂ କୃତ୍ୱା ଘୃତଂ ପିବେତ୍'କୁ ଏମାନେ ଅକ୍ଷରେ ଅକ୍ଷରେ ପାଳନ କରିବାକୁ ଶପଥ ନେଇଛନ୍ତି ! କଳେବଳେ କୌଶଳେ ବିପିଏଲ୍ କାର୍ଡ୍ ଖଣ୍ଡେ ହାସଲ କରିବା ପାଇଁ ଆମେ ଆମ ଘରର କନ୍ଥା କୁରୁଡ଼ି ଆଣି ବାହାରେ ପ୍ରଦର୍ଶନ କରୁ। ଆମର

ଅମୂଲ୍ୟ ରତ୍ନକୁ ସବୁ ସାତ ସିନ୍ଦୁକରେ ସାଇତି ଥାଉ। ଦାରିଦ୍ର୍ୟର ସୀମାରେଖା ତଳେ ରହିବା ଯେପରି ଆମର ପୌରୁଷ। ଭୋଗସର୍ବସ୍ୱ ମାନସିକତା ଉପରେ ପ୍ରତିଷ୍ଠିତ ଏହି ପ୍ରବୃତ୍ତି। ତ୍ୟାଗର ଭିତ୍ତିଭୂମିରେ ପ୍ରତିଷ୍ଠିତ ଆମ ଜାତୀୟ ଚରିତ୍ରର ମହନୀୟତାକୁ ଏହା ଯେ କ୍ଷୁଣ୍ଣ କରୁଛି, ସେକଥା କେହି ଚିନ୍ତା କରନ୍ତି ନାହିଁ।

ମଧ୍ୟାହ୍ନ ଭୋଜନର ମୋହ ଦେଖାଇ ଯେଉଁଠି ଶିକ୍ଷାର ବିକାଶ କଥା ଚିନ୍ତା କରାଯାଏ, ପୁଣି ସେଇ ଶିଶୁଙ୍କ ମଧ୍ୟାହ୍ନ ଭୋଜନ ପାଇଁ ଉଦ୍ଦିଷ୍ଟ ଡାଲି, ଚାଉଳ, ଅଣ୍ଡା ଉପରେ ସମସ୍ତଙ୍କ ଲୋଲୁପ ଦୃଷ୍ଟି ନିବଦ୍ଧ ଥାଏ, ସେ ଜାତିର ମୂଲ୍ୟବୋଧ ଯେ ରସାତଳଗାମୀ, ସେକଥା ଆଉ ବୁଝାଇ କହିବା ଆବଶ୍ୟକ ନାହିଁ। ଇଣ୍ଟରନ୍ୟାସନାଲ୍ ଟ୍ରାନ୍ସପ୍ୟାରେନ୍ସି ସଂସ୍ଥାର ସର୍ଭେ ଅନୁଯାୟୀ ଆମ ଦେଶ ଦୁର୍ନୀତି ତାଲିକାର ସର୍ବାଗ୍ରେ ରହିଛି। ଦୁର୍ନୀତି କରିବା, ଦୁର୍ନୀତି ସହିଯିବା ଓ ଦୁର୍ନୀତିକୁ ପ୍ରୋତ୍ସାହିତ କରିବାରେ ଆମେ ଦକ୍ଷ। ଏସବୁ ଆଉ ଧର୍ତ୍ତବ୍ୟ ଅପରାଧ ବୋଲି ଆମେ ମନେ କରୁନାହୁଁ; ଏହାକୁ ଲଜ୍ଜାଜନକ ବୋଲି ଆମେ ମଣୁନାହୁଁ। ଏହା ମଧ୍ୟ ଏକ ଗଣମାନସିକତା। ଭିଜିଲାନ୍ସ ଜାଲରେ ଛନ୍ଦିହୋଇ ପଡୁଥିବା ବ୍ୟକ୍ତିଙ୍କର ସାମାଜିକ ପ୍ରତିଷ୍ଠା ବୃଦ୍ଧି ପାଉଛି। ଅନ୍ନଛତ୍ରରେ ପଶିଥିବା ଲୋକ ଭଳି ଆମେ ତାଙ୍କୁ ସାମାଜିକ ବାସନ୍ଦ କରୁନାହୁଁ। ଦରକାର ପଡ଼ିଲେ ସେଇ ପରିବାରରୁ ଝିଅ ଆଣିବା ଅଥବା ଝିଅ ଦେବାର ସର୍ବନିମ୍ନ ସୁଯୋଗଟିକକୁ ମଧ୍ୟ ଆମେ ହାତଛଡ଼ା କରୁନାହୁଁ। ଦୁର୍ନୀତି ରାକ୍ଷସ ଆମ ଚେତନାକୁ ଏପରି କବଳିତ କରି ସାରିଲାଣି ଯେ ସେଥିରୁ ମୁକ୍ତି ପାଇବା ପାଇଁ ଆମକୁ ପୁଣି ଏକ ସ୍ୱାଧୀନତା ସଂଗ୍ରାମ ଲଢ଼ିବାର ଆବଶ୍ୟକତା ଅନୁଭବ ହେଲାଣି। ପାର୍ଥକ୍ୟ ଏତିକି ଯେ, ଆମ ସ୍ୱାଧୀନତା ସଂଗ୍ରାମ ବାହ୍ୟଶକ୍ତି ପାଖରୁ ମୁକ୍ତି ଉଦ୍ଦେଶ୍ୟରେ ଥିଲା, କିନ୍ତୁ ଏ ସଂଗ୍ରାମ ହେବ ଆମ ଚେତନା ଭିତରେ ପକ୍ଷଚ୍ଛାୟା ବିସ୍ତାର କରିଥିବା ଦୁର୍ନୀତି ରାକ୍ଷସ ବିରୁଦ୍ଧରେ। ଅପରକୁ ଦୁର୍ନୀତିଗ୍ରସ୍ତ ସାବ୍ୟସ୍ତ କରିବାକୁ ଅଣ୍ଟା ଭିଡୁଥିବା ବେଳେ ଆମେ ନିଜେ ବି ଦୁର୍ନୀତି ମାନସିକତାରୁ ମୁକ୍ତ ନୋହୁ। ଦୁର୍ନୀତି ବିରୋଧରେ ସ୍ୱର ଉତ୍ତୋଳନ କରିବା ମୂଳରେ ସମାଜକୁ ଦୁର୍ନୀତିମୁକ୍ତ କରିବାର ଉଦ୍ଦେଶ୍ୟ ନଥାଏ। ବରଂ ଥାଏ ଏକ ଈର୍ଷାପ୍ରଣୋଦିତ ମାନସିକତା। ଆମ ଆଖପାଖର ଲୋକଟା ଆମ ଦୃଷ୍ଟି ସମ୍ମୁଖରେ ଏତେଗୁଣ ସମ୍ପତ୍ତିର ଅଧିକାରୀ ହୋଇଗଲା, ଅଥଚ ଆମେ ଯଥା ପୂର୍ବଂ ତଥା ପରଂ!

ଜନତାଙ୍କ ଭିତରେ ଯୁଦ୍ଧ ବିରୋଧୀ ମନୋଭାବ ସୃଷ୍ଟି କରିବାରେ ସଫଳ ହୋଇନଥିଲେ ରସେଲ୍। ଚର୍ଚ୍ଚିଲ୍ ଲୋକଙ୍କ ମନରେ ଯେଉଁ ବିଷମଞ୍ଜି ରୋପଣ କରିଥିଲେ,

ତାକୁ ଉତ୍ପାଟନ କରିବା ଏତେ ସହଜ ନଥିଲା। ବରଂ ରସେଲ୍ ଅପ୍ରିୟଭାଜନ ହୋଇଥିଲେ ଜନତା ଦରବାରରେ। ଏସବୁ ସତ୍ତ୍ୱେ ତାଙ୍କର ପ୍ରଜ୍ଞା, ବିଦ୍‌ବତ୍ତା ଓ ଉଚ୍ଚ ବିଚାରଧାରାକୁ ଜନତା ସମ୍ମାନ ଦେଉଥିଲେ। ଚର୍ଚ୍ଚିଲ୍‌ଙ୍କ ନୀତିରେ ଅସହାୟ ଓ ଜନତାଙ୍କ ଅନ୍ଧ ମାନସିକତାରେ ବ୍ୟଥିତ ହୋଇ ଦିନେ ରସେଲ୍ ଘୋଷଣା କଲେ ଯେ ସେ ପ୍ରମାଣ କରିଦେବେ ଈଶ୍ୱର ନାହାନ୍ତି। ଘଟଣାଟି ସେତେବେଳେ ଚମକୃତ କରିଥିଲା ଜନତାଙ୍କୁ। ନିର୍ଦ୍ଧାରିତ ଦିନ ପାଖେଇ ଆସିଲା। ମଞ୍ଚ ଚାରିପଟେ ଜନତା ଗୁଣ୍ଡ ହୋଇଗଲେ। ରସେଲ୍ ମଞ୍ଚକୁ ଉଠିଲେ। ଇଂଲଣ୍ଡର ଜନତା ଆଡ଼େ ଦୟାପୂର୍ଣ୍ଣ ଦୃଷ୍ଟିଟିଏ ବୁଲେଇ ଆଣି ସେ ଘୋଷଣା କଲେ- 'ଈଶ୍ୱର ନାହାନ୍ତି, କାରଣ ଚର୍ଚ୍ଚିଲ୍ ଅଛନ୍ତି।' ଏହାପରେ ସେ ମଞ୍ଚ ଉପରୁ ଓହ୍ଲାଇ ଚାଲି ଯାଇଥିଲେ। ତାଙ୍କ ଉଦ୍‌ଘୋଷଣର ଅର୍ଥ ଥିଲା- ଚର୍ଚ୍ଚିଲ୍‌ଙ୍କ ପରି ମାନବତା ବିରୋଧୀ ଶକ୍ତି ସକ୍ରିୟ ଥିବା ପର୍ଯ୍ୟନ୍ତ କେମିତି ବିଶ୍ୱାସ କରାଯିବ ଯେ ଈଶ୍ୱର ଅଛନ୍ତି ?

ଏବେ ଆମର ଠିକ୍ ସେହି ଅବସ୍ଥା। ଦେଶରେ ଗୋଟିଏ ସମସ୍ୟା ଯଦି ଆମକୁ ପ୍ରାଣାନ୍ତକ କରିଦିଏ, ତା'ର ମୂଳୋତ୍ପାଟନ କରିବାକୁ ପ୍ରଶାସନ ବିଫଳ ହୁଏ ଓ ସାଧାରଣ ଜନତା ଅତିଷ୍ଠ ହୁଅନ୍ତି, ତେବେ ଆମେ ବି କହିବା- ଈଶ୍ୱର ନାହାନ୍ତି କିମ୍ବା ତାଙ୍କର ଶଙ୍ଖଚକ୍ର ଗଦାପଦ୍ମ ନିଷ୍କ୍ରିୟ ହୋଇପଡ଼ିଛି। ଯଦି ଆମେ ଏଇ କଥା ଭାବିବା, ତା'ହେଲେ ଆମର ପରବର୍ତ୍ତୀ ପଦକ୍ଷେପ କ'ଣ ହେବ? ଆତ୍ମଜାଗୃତି ନିଶ୍ଚୟ। କାରଣ ଦୁଷ୍ଟଲୋକଙ୍କର କ୍ରିୟାକଳାପ ସମାଜକୁ ଯେତିକି ଆକ୍ରାନ୍ତ କରେନାହିଁ, ତା'ଠାରୁ ବେଶୀ କ୍ଷତି କରେ ଚେତନଶୀଳ ଲୋକଙ୍କର ନିଷ୍କ୍ରିୟତା। ଏଇ ନିଷ୍କ୍ରିୟତା ହିଁ ସମାଜ ପାଇଁ ଆତ୍ମଘାତୀ ହୋଇଥାଏ।



# ଲୋକଲଜ୍ଜା

'ଲୁକ୍' ଧାତୁରୁ ନିଷ୍ପନ୍ନ ହୋଇଛି 'ଲୋକ' ଶବ୍ଦ। ଲୋକୟତି ଇତି ଲୋକାଃ। ଯେଉଁମାନେ ଅବଲୋକନ କରିପାରନ୍ତି, ସେମାନଙ୍କୁ କୁହାଯାଏ ଲୋକ। ଅବଲୋକନ ଅର୍ଥ କେବଳ ଚର୍ମଚକ୍ଷୁର ଅବଲୋକନ କଥା କୁହାଯାଉ ନାହିଁ। ଚର୍ମଚକ୍ଷୁରେ ତ ସକଳ ପ୍ରାଣୀ ଜଗତ ଅବଲୋକନ କରନ୍ତି। କିନ୍ତୁ ସେମାନଙ୍କୁ ଲୋକ କୁହାଯାଏ ନାହିଁ। ମଣିଷ ଅନ୍ତଶ୍ଚକ୍ଷୁରେ ବି ଅବଲୋକନ କରିଥାଏ। ଏହି ଅନ୍ତଶ୍ଚକ୍ଷୁ ପାଇଁ ସେ ଇତର ପ୍ରାଣୀଠାରୁ ଭିନ୍ନ। ତେଣୁ ସେ ଲୋକ ପଦବାଚ୍ୟ। ଚର୍ମଚକ୍ଷୁର ଦେଖିବା କାର୍ଯ୍ୟକୁ ଦୃଷ୍ଟି କୁହାଯିବା ବେଳେ ଅନ୍ତଶ୍ଚକ୍ଷୁର ଦେଖିବା କାର୍ଯ୍ୟକୁ କୁହାଯାଏ ଦର୍ଶନ। ଏହି ଦର୍ଶନ ସାମାଜିକ ଚେତନାକୁ ଉର୍ଦ୍ଧ୍ୱଗାମୀ କରିଥାଏ; ସାମାଜିକ ଜୀବନକୁ ଶୃଙ୍ଖଳିତ କରିଥାଏ। ଏହି ଅନ୍ତଃଦର୍ଶନ ଲୋକ ଚରିତ୍ରକୁ ତର୍ଜମା କରିଥାଏ। ତାକୁ ନିନ୍ଦନୀୟ ଅଥବା ବନ୍ଦନୀୟ କରିଥାଏ। ଲୋକମାନଙ୍କଦ୍ୱାରା ଲକ୍ଷିତ ହେଉଥିବା ବ୍ୟକ୍ତିଟି ସମାଜରେ ସହଜ ଓ ସ୍ୱାଭାବିକ ଭାବରେ ବଞ୍ଚିପାରେ ନାହିଁ। ଲୋକଦୃଷ୍ଟି ସମାଜକୁ ନିୟନ୍ତ୍ରଣ କରିଥାଏ।

କିନ୍ତୁ ଶକ୍ତି ବେଳେବେଳେ ପଥ ହୁଡ଼ିଥାଏ। ଅନ୍ଧ ମୁହାଁଣୀ ପରି ସେ ଅମଡ଼ା ମାଡ଼ିଯାଏ। କାଉ କାନ ନେଇଗଲା ଶୁଣି ସେମାନେ କାନକୁ ନ ଦେଖି କାଉ ପଛରେ ଧାଇଁଥାନ୍ତି, ତାହା ପୁଣି ଦଳବଦ୍ଧ ହୋଇ; ବୁଧିଆ ଗଧର ମୃତ୍ୟୁରେ ରାଜାଠୁ ପ୍ରଜାଯାଏଁ ଧାଇଁବା ପରି। ଅନ୍ତଃଦୃଷ୍ଟିକୁ ଉପେକ୍ଷା କରି ସେ ପ୍ରାଧାନ୍ୟ ଦେଇଥାଏ ଚର୍ମଚକ୍ଷୁ ଉପରେ। ଏ ପ୍ରକାର ଲୋକ ପ୍ରବୃତ୍ତି ରାତାରାତି ଜଣେ ଭୟଙ୍କର ଅପରାଧୀକୁ ହିରୋ କରି ଦେଇଥାଏ ତ ଜଣେ ନିରପରାଧ ମଣିଷକୁ ଦୁର୍ଦ୍ଧର୍ଷ ଅପରାଧୀ ମଣିଷ ରୂପେ ସଜେଇ ଥାଏ। କିନ୍ତୁ ଈଶ୍ୱରଙ୍କୁ ଅଶେଷ ଧନ୍ୟବାଦ, ଏ ଲୋକମାନଙ୍କର ସ୍ମୃତିଶକ୍ତି ଅତ୍ୟନ୍ତ କ୍ଷୀଣ। ବାଳୁତ ଶିଶୁ ପରି ଗୋଟିଏ ପ୍ରସଙ୍ଗ ଉପରେ ହଇଚଇ ସୃଷ୍ଟି କରୁଥିବା ବେଳେ ଆଉ ଗୋଟାଏ ନୂଆ ପ୍ରସଙ୍ଗ ଜୁଟିଗଲେ ସେମାନେ ପ୍ରଥମ ପ୍ରସଙ୍ଗ ଛାଡ଼ି ଆଉ ଦ୍ୱିତୀୟ ପ୍ରସଙ୍ଗ ଉପରକୁ ଲମ୍ଫ ପ୍ରଦାନ କରନ୍ତି। ଘଟଣାର ସତ୍ୟାସତ୍ୟ ଅନୁସନ୍ଧାନ କରନ୍ତି ନାହିଁ। ତିନି ତୁଣ୍ଡରେ ଛେଳିଟି କୁକୁର ହୋଇ ଯାଇଥାଏ। ବିଚରା ଛେଳିଟି ଲୋକଲଜ୍ଜା ଭୟରେ କିପରି ମରଣାନ୍ତକ ଯନ୍ତ୍ରଣା ଭୋଗ କରେ, ସେକଥା କେହି ଚିନ୍ତା କରନ୍ତି

ନାହିଁ। ଲୋକ ଚରିତ୍ରର ଏହି ଦୁର୍ବଳତମ ଦିଗକୁ ଅସ୍ତ୍ର କରି କେତେକ ସଂସ୍ଥା, ସଂଗଠନ ବା ଅନୁଷ୍ଠାନ ବେଶ୍ ଫାଇଦା ଉଠାଇଥାନ୍ତି। ପରିସ୍ଥିତି ଅଣାୟତ୍ତ ହେବା ବେଳକୁ ଆଉ କିଛି ନଥାଏ। ଲୁକ୍ ଧାତୁରୁ ନିଷ୍ପନ୍ନ ହୋଇଥିବା ଲୋକ ସେତେବେଳକୁ ସମ୍ପୂର୍ଣ୍ଣ ଅନ୍ଧ ହୋଇ ସାରିଥାନ୍ତି। ଏହି ଅନ୍ଧମାନଙ୍କର ଅପବାଦ, ନିନ୍ଦା ଓ ଲାଞ୍ଛନାରୁ ବର୍ତ୍ତିବା ପାଇଁ କେତେକ ପୀଡ଼ିତ ବା ପୀଡ଼ିତା ଲୋକ ଲୋଚନ ଅନ୍ତରାଳରେ ରହିବାକୁ ଚାହାନ୍ତି ତ କେହି କେହି ଆତ୍ମହତ୍ୟା ମଧ୍ୟ କରି ପକାଇଥାନ୍ତି।

ରାମଚନ୍ଦ୍ର ଜାଣିଥିଲେ ସୀତା ସମ୍ପୂର୍ଣ୍ଣ ନିର୍ଦ୍ଦୋଷ। ସେ ହୋମଶିଖା ପରି ପବିତ୍ର। ଲଙ୍କାରୁ ଉଦ୍ଧାର କରି ତାଙ୍କୁ ଅଗ୍ନି ପରୀକ୍ଷା କରା ଯାଇଥିଲା। ତଥାପି ଲୋକ ତାଙ୍କ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି। ଏହା ଅନୁଭବ କରି ଏକ ନିର୍ଦ୍ଦୟ ପଦକ୍ଷେପ ନେଇଛନ୍ତି। ଅନ୍ତଃସତ୍ତ୍ୱା ସୀତାଙ୍କୁ ବନବାସ ପଠାଇଛନ୍ତି। ପୁଣି ଯେତେବେଳେ ତାଙ୍କୁ ଅଯୋଧ୍ୟାକୁ ଫେରାଇ ଆଣିବାର ମୁହୂର୍ତ୍ତ ଆସିଛି, ତାଙ୍କୁ ପୁଣିଥରେ ରାଜ୍ୟବାସୀଙ୍କ ସମ୍ମୁଖରେ ଅଗ୍ନି ପରୀକ୍ଷା ଦେବାପାଇଁ ନିର୍ଦ୍ଦେଶ ପ୍ରଦାନ କରିଛନ୍ତି ଯାହା ସୀତାଙ୍କ ଅସ୍ମିତାକୁ ଶକ୍ତ ଆଘାତ ଦେଇଛି। ପ୍ରତିବାଦ ସ୍ୱରୂପ ସେ ତ୍ୟାଗ ହିଁ କରିଛନ୍ତି, ଯାହାକୁ ପୁରାଣକାରମାନେ କହନ୍ତି- ବସୁଧା ବିଦୀର୍ଣ୍ଣ ହୋଇଗଲା, ମା' ବସୁନ୍ଧରା ଆସି ତାଙ୍କୁ କୋଳରେ ବସାଇ ପାତାଳକୁ ଚାଲିଗଲେ।

ଅସତୀକୁ ଅସତୀ କହିଲେ ସେ ହସି ହସି ଗଡ଼ିଯାଏ। କିନ୍ତୁ ସତୀକୁ ଅସତୀ କହିଲେ ସେ କାନ୍ଦି କାନ୍ଦି ମରିଯାଏ - ଏହା ଆମର ଲୋକମୁଖର ରୁଢ଼ିଟିଏ। କେତେ ସୁନ୍ଦର ତାତ୍ପର୍ଯ୍ୟ ବହନ କରେ ଏକଥା। ଯିଏ ଅପରାଧୀ, ତାକୁ ନିରପରାଧ କୁହ କିମ୍ୱା ଅପରାଧୀ କୁହ, ତା ପାଇଁ କିଛି ଫରକ ପଡ଼େନାହିଁ। ସିଏ ଫାଶୀଖୁଣ୍ଟରେ ଚଢ଼ିବା ପର୍ଯ୍ୟନ୍ତ ନିଜକୃତ ଦୁଷ୍କର୍ମ ଉପରେ ପରଦା ଢାଙ୍କିବାକୁ ଚେଷ୍ଟା କରୁଥାଏ। କିନ୍ତୁ ଯେଉଁମାନେ ନିର୍ଦ୍ଦୋଷ, ଯେଉଁମାନେ ଆତ୍ମମର୍ଯ୍ୟାଦା ପ୍ରତି ଅତି ମାତ୍ରାରେ ସଚେତନ, ସେମାନଙ୍କୁ ମିଥ୍ୟା ଅପବାଦ ଅତିଶୟ ପୀଡ଼ା ଦେଇଥାଏ। ସେମାନଙ୍କ ପାଇଁ ଲୋକଲଜ୍ଜା ମରଣଠାରୁ ବଳି ଯନ୍ତ୍ରଣାଦାୟକ। ସେମାନେ ସହ୍ୟ କରି ପାରନ୍ତି ନାହିଁ। ପୂରାପୂରି ଭାଙ୍ଗିତୁଟି ଯାଆନ୍ତି। ମାନସିକ ସନ୍ତୁଳନ ହରେଇ ବସନ୍ତି। ଦୁଃଖ, ଅପମାନ, କ୍ଷୋଭରେ ଆତ୍ମହତ୍ୟା କରି ପକାନ୍ତି। କିନ୍ତୁ ସେତେବେଳକୁ ଆଉ କିଛି ନଥାଏ। ଅନେକେ ଯୁକ୍ତି କରନ୍ତି ଯେ ପୀଡ଼ିତ କିମ୍ୱା ପୀଡ଼ିତାଟିଏ ଆତ୍ମହତ୍ୟା ନ କରି ନିଜର ନିର୍ଦ୍ଦୋଷପଣିଆ ପ୍ରମାଣ କରିବା ଉଚିତ ଥିଲା। ଆତ୍ମହତ୍ୟା ଭୀରୁମାନଙ୍କ ନିଷ୍ପତ୍ତି। ଯୁକ୍ତି ତ ଅକାଟ୍ୟ। କିନ୍ତୁ ସତୀକୁ ଅସତୀର ନିନ୍ଦା କେତେ ଅସହ୍ୟ, ଭୁକ୍ତଭୋଗୀ ହିଁ ଜାଣେ। ଥରେ ଜେଲ୍ ଯାଇଥିବା

ଲୋକଟି ପାଇଁ ଜେଲ୍, ଜୋରିମାନା ବଡ଼କଥା ନୁହେଁ। ଜେଲ୍‌ଟା ତା ପାଇଁ ମାମୁଁଘର ପାଲଟି ଯାଏ। ଯଦି ଉପଯୁକ୍ତ ପ୍ରମାଣ ପ୍ରଦର୍ଶନ କରି ନ ପାରି ନିରପରାଧ ବ୍ୟକ୍ତିଟିଏ ଜେଲ୍ ଯାଏ, ସେଠୁ ଫେରିବା ପରେ ମାନସିକ ସ୍ତରରେ ତା'ର ମୃତ୍ୟୁ ହିଁ ହୋଇ ସାରିଥାଏ। ଶରୀରରେ ପ୍ରାଣସତ୍ତାଟିଏ ଥାଏ ସିନା, ଜୀବନ ନଥାଏ। ଲୋକଲଜ୍ଜା ତାକୁ ଖଣ୍ଡବିଖଣ୍ଡିତ କରି ଦେଇଥାଏ। ଆତ୍ମମର୍ଯ୍ୟାଦା ସଚେତନ ମଣିଷଟିର ମନ ଏତେ ସମ୍ବେଦନଶୀଳ ଯେ ଲୋକଲଜ୍ଜାର ଭୟ ତାକୁ ବ୍ୟସ୍ତ ବିଚଳିତ କରି ଦେଇଥାଏ। ସେ ଅଭାବନୀୟ କାଣ୍ଡ କରି ବସେ। ପରୀକ୍ଷାରେ ଫେଲ୍ ହୋଇଥିବା ଖବର ଶୁଣି କୋମଳମତି ବାଳକ ବାଳିକା ମଧ୍ୟ ଆତ୍ମହତ୍ୟା କରି ପକାଇ ଥାନ୍ତି। କିନ୍ତୁ ବେଳେବେଳେ ମୃତ୍ୟୁ ପରେ କାହାର କାହାର ଠିକ୍ ଖବର ମିଳିଥାଏ, ସେମାନେ ଉତ୍ତୀର୍ଣ୍ଣ ହୋଇଥାନ୍ତି।

ସଂସ୍କୃତରେ ଉକ୍ତିଟିଏ ଅଛି- 'ଲଜ୍ଜାମେକଂ ପରିତ୍ୟଜ୍ୟ ତ୍ରିପୁର ବିଜୟୀ ଭବ।' 'ତ୍ରିପୁର ବିଜୟୀ ଭବ'ର ଏ ଯେଉଁ କୌଶଳ କଥାଟି କୁହାଯାଇଛି, ତାହା ଆଦୌ ବ୍ୟକ୍ତିର ସକାରାତ୍ମକ ଦିଗ କଥା କୁହେନାହିଁ। ନିଜ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପାଇଁ ଭୀରୁ କାପୁରୁଷ ନିର୍ଲଜଙ୍କ ପରି ଆତ୍ମମର୍ଯ୍ୟାଦାକୁ ତ୍ୟାଗ କରୁଥିବା ବ୍ୟକ୍ତିର ଜୀବନ ମୃତ୍ୟୁ ସହ ସମାନ। ସମାଜକୁ ଭୟ କରୁନଥିବା ଏମାନେ ସମାଜ ପାଇଁ ଅଭିଶାପ। ଅପର ପକ୍ଷେ ଲୋକଲଜ୍ଜା ପ୍ରତି ଅତି ମାତ୍ରାରେ ସ୍ପର୍ଶକାତର ହେଲେ ବ୍ୟକ୍ତି ନିଜକୁ ନିର୍ଦ୍ଦୋଷ ବୋଲି ପ୍ରମାଣିତ କରିବା ଦୁଃସାଧ୍ୟ ହୋଇପଡ଼େ। ଅତୀତରେ ପଶ୍ଚିମ ଓଡ଼ିଶାର ଜଣେ ଆଇଏଏସ୍ ଅଫିସର ତାଙ୍କ ସମ୍ପର୍କରେ ଏକ ଦୁର୍ନୀତିର ତଦନ୍ତ ସମୟରେ ନିଜ ପରିବାରବର୍ଗଙ୍କୁ ହତ୍ୟା କରି ନିଜେ ଆତ୍ମହତ୍ୟା କରିଥିବାର ମର୍ମନ୍ତୁଦ ସମ୍ବାଦ ଶୁଣିବାକୁ ମିଳିଥିଲା। ଏବେ ପାରଳା ରାଜପ୍ରାସାଦରେ ଘଟି ଯାଇଥିବା ହୃଦୟ ବିଦାରକ ଘଟଣାରେ ସାରା ରାଜ୍ୟବାସୀ ସ୍ତବ୍ଧ ହୋଇ ଯାଇଥିଲେ। ରାଜପ୍ରାସାଦର ମ୍ୟାନେଜର ଅନଙ୍ଗ ମଞ୍ଜରୀ ଭିନ୍ନକ୍ଷମ ଭଉଣୀ ସହ ଅନ୍ୟ ଦୁଇ ଭାଇଙ୍କ ଆତ୍ମହତ୍ୟା କରିବା ପୂର୍ବରୁ ଜନତା ତାଙ୍କୁ ନିନ୍ଦା କରିବାରେ ଶତଜିହ୍ୱ ଥିଲେ। କିନ୍ତୁ ସେମାନଙ୍କ ମୃତ୍ୟୁ ପରେ ସେମାନେ ଜିହ୍ୱାହୀନ ହୋଇ ପଡ଼ିଲେ। ସହସା ଅନ୍ୟ ପ୍ରସଙ୍ଗ ଚର୍ଚ୍ଚାରେ ଲିପ୍ତ ରହିଲେ। ତଦନ୍ତରୁ ଅଦ୍ୟାବଧି ଯାହା ଫଳାଫଳ ମିଳିଛି, ସେଥିରେ ସେମାନେ ଅର୍ଥ ହଡ଼ପ କରିଥିବାର କୌଣସି ପ୍ରମାଣ ମିଳିନାହିଁ।

ଲୋକଲଜ୍ଜାର ତୀର କେବଳ ପୀଡ଼ିତ କିମ୍ବା ପୀଡ଼ିତାଙ୍କ ମଧ୍ୟରେ ସୀମିତ ରହେନାହିଁ। ଆତ୍ମୀୟସ୍ୱଜନମାନେ ମଧ୍ୟ ଏଥିରେ ଭୀଷଣ ଜର୍ଜରିତ ହୁଅନ୍ତି।

ପୁତ୍ରକନ୍ୟାମାନଙ୍କ ଅପକୀର୍ତ୍ତିରେ ଲୋକଲଜ୍ଜା ଭୟରେ ପିତାମାତାଙ୍କ ଆତ୍ମହତ୍ୟା ଅଥବା ଦେଶାନ୍ତରୀ ହେବା ଖବର ଆମ ପାଖରେ ବିରଳ ନୁହେଁ। ପ୍ରେମରେ ପ୍ରତାରିତ ହୋଇ ଅବାଞ୍ଛିତ ମାତୃତ୍ୱ ଲାଭ କରିଥିବା କୁମାରୀମାନେ ଲୋକଲଜ୍ଜା ଭୟରେ ଆତ୍ମହତ୍ୟା ଛଡ଼ା ଅନ୍ୟ ବିକଳ୍ପ ଖୋଜି ପାଆନ୍ତି ନାହିଁ। ଦୁଷ୍କର୍ମ ପୀଡ଼ିତାମାନେ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ଥାଇ ସୁଦ୍ଧା ସାମାଜିକ ଲଜ୍ଜା ତାଙ୍କୁ ଅତିଷ୍ଠ କରେ। ସେମାନଙ୍କ ମଧ୍ୟରୁ ଅନେକେ ବି ଆତ୍ମହତ୍ୟା କରିବା ପାଇଁ ପ୍ରୟାସ କରିଥାନ୍ତି।

ସମାଜରେ ଯେତେସବୁ ଅନର କିଲିଂ ହେଉଛି, ସେସବୁ ମୂଳରେ ରହିଛି ଏହି ଲୋକଲଜ୍ଜା। ନିଭୃତରେ ଅନୈତିକ କାର୍ଯ୍ୟକଳାପରେ ଲିପ୍ତ ଥିବା ମଣିଷଟି ହଠାତ୍ କାହା ଚକ୍ଷୁରେ ଧରା ପଡ଼ିଗଲେ ଲୋକଲଜ୍ଜା ଭୟରେ ଆପଣାର ମଣିଷକୁ ହତ୍ୟା କରିବାକୁ ପଛଘୁଞ୍ଚା ଦିଏନାହିଁ।

ସବୁଠୁ ଦୁଃଖଦାୟକ ଘଟଣା, ପରିବାରର ମୁଖ୍ୟଙ୍କ ଅପକୀର୍ତ୍ତିରେ ଲୋକଲଜ୍ଜା ଭୟରେ ପରିବାରର ନିରୀହ ସଦସ୍ୟଙ୍କ ଆତ୍ମହତ୍ୟା। କର୍ପୋରେଟ୍ ମନ୍ତ୍ରଣାଳୟର ପୂର୍ବତନ ଡିଜି ବି.କେ. ବଂଶଲଙ୍କ ପରିବାରର ଏହି ମାନସିକତାରୁ କରୁଣ ପରିସମାପ୍ତି ଘଟିଛି। ଗତ ଦୁଇମାସ ତଳେ ତାଙ୍କ ପତ୍ନୀ ଓ କନ୍ୟା ଆତ୍ମହତ୍ୟା କରିଥିବା ବେଳେ ଏବେ ବି.କେ. ବଂଶଲ ଓ ତାଙ୍କ ପୁତ୍ରଙ୍କ ଆତ୍ମହତ୍ୟା ଆମକୁ ଚିନ୍ତା କରିବାକୁ ଖୋରାକ ଯୋଗାଇଛି। କାହାକୁ ଅପମାନିତ କରିବା ପାଇଁ ଆମେ କହୁ ଦୁବ ଘାସରେ ଦଉଡ଼ି ଦେଇ ମର, ପାଣି ଆଞ୍ଜୁଳାରେ ବୁଡ଼ି ମର, ଇତ୍ୟାଦି ଇତ୍ୟାଦି। ଲଜ୍ଜାରୁ ବର୍ତ୍ତିବା ପାଇଁ ମୃତ୍ୟୁ ଯେ ଏକମାତ୍ର ପନ୍ଥା, ଏ ପାରମ୍ପରିକ ବିଶ୍ୱାସରୁ ଆମକୁ ନିବର୍ତ୍ତିବାକୁ ହେବ। ସତ୍ୟ ପାଖରେ ପହଞ୍ଚିବାକୁ ଯେତିକି ଆତ୍ମଶକ୍ତି ଦରକାର, ସେତକ ତ.ସଞ୍ଚିବାକୁ ହେବ।



# ଭିକ୍ଷୁ ସଂସ୍କୃତି ଓ ଭିକ୍ଷୁକ ପ୍ରବୃତ୍ତି

ଭାରତୀୟ ଦର୍ଶନରେ ଭିକ୍ଷାଦାନ କରିବା ଏକ ମହତ କାର୍ଯ୍ୟ। ଦ୍ୱାରଦେଶରୁ ଭାଟ ଭିକ୍ଷୁଙ୍କୁ ଫେରସ୍ତ କରାଯାଏ ନାହିଁ। ଦାନ ଧ୍ୟାନ କରିବା ଆମ ଧର୍ମର ଏକ ଅବିଚ୍ଛେଦ୍ୟ ଅଙ୍ଗ। ଜନ୍ମୋତ୍ସବ, ବାହାବ୍ରତ, ଯାଗଯଜ୍ଞ, ଦେବ ଦର୍ଶନ, ଅନ୍ତ୍ୟେଷ୍ଟି କ୍ରିୟା ଓ ଶ୍ରାଦ୍ଧ ଆଦି କାଳରେ ଦାନ କରିବା ବିଧି ରହିଛି। ପୂର୍ବେ ଭିକ୍ଷୁମାନଙ୍କୁ ଦେବତାଙ୍କ ପରି ସମ୍ମାନ ପ୍ରଦର୍ଶନ କରାଯାଉଥିଲା। ସେମାନେ ଅସନ୍ତୁଷ୍ଟ ହେଲେ ପରିବାରର ଅମଙ୍ଗଳ ହୁଏ ବୋଲି ବିଶ୍ୱାସ ଥିଲା। ବେଳେବେଳେ ଭିକ୍ଷୁଙ୍କୁ ସନ୍ତୁଷ୍ଟ କରିବା ପାଇଁ ଗୃହସ୍ଥ ସର୍ବସ୍ୱାନ୍ତ ହୋଇ ପଡ଼ିବାର ଦୃଷ୍ଟାନ୍ତ ବି ଆମ ଶାସ୍ତ୍ର ପୁରାଣରେ ରହିଛି। ଏହାର ଅର୍ଥ ନୁହେଁ ଯେ ସେ ଯୁଗର ଲୋକେ ଦାରିଦ୍ର୍ୟକୁ ପ୍ରୋତ୍ସାହନ ଦେଉଥିଲେ। ଅପାତ୍ରରେ ଦାନ ନଦେବା ପାଇଁ ମଧ୍ୟ ସେତେବେଳେ ନିର୍ଦ୍ଦେଶ ଥିଲା। ତତ୍କାଳୀନ ଭିକ୍ଷାବୃତ୍ତି ମୂଳରେ ଏକ ଉଚ୍ଚ ଚିନ୍ତନ ଥିଲା। ଜ୍ଞାନୀଗୁଣୀ ବୁଦ୍ଧିଜୀବୀ ମୁନିରଷିମାନେ ଭିକ୍ଷାର୍ଥୀ ଥିଲେ। ବିଦ୍ୟାର୍ଥୀମାନେ ଭିକ୍ଷା କରି ନିଜ ଉଦର ପୋଷଣ କରୁଥିଲେ ଓ ଗୁରୁଙ୍କ ଦାୟିତ୍ୱ ବହନ କରୁଥିଲେ। ଭିକ୍ଷା ମାଗିବାର ମଧ୍ୟ ଏକ ନିୟମ ଥିଲା। ମଧ୍ୟାହ୍ନ ସମୟରେ ଭିକ୍ଷା କରାଯାଏ ନାହିଁ। ବୌଦ୍ଧ ଭିକ୍ଷୁମାନେ ଦିନକୁ ଜଣକ ଘରେ ଭିକ୍ଷା କରିଥାନ୍ତି। ସେଠୁ ଯାହା ପାଇଥାନ୍ତି, ତାହା ନ ସରିବା ପର୍ଯ୍ୟନ୍ତ ଆଉ ଭିକ୍ଷା କରନ୍ତି ନାହିଁ। ଅଲେଖପନ୍ଥୀମାନେ ସୁଦ୍ଧା କାହା ଘରେ ଦିନଟିଏରୁ ଅଧିକ ଅନ୍ନ ଭକ୍ଷଣ କରନ୍ତି ନାହିଁ। ମୁନିରଷି, ଧର୍ମଯାଜକମାନେ ପ୍ରବ୍ରଜ୍ୟା ସମୟରେ ଭିକ୍ଷା କରି ଉଦର ପୋଷଣ କରନ୍ତି। ଭିକ୍ଷାଥାଳ, କମଣ୍ଡଳୁ ଥାଏ ସେମାନଙ୍କର ସମ୍ପତ୍ତି। ସମାଜ କଲ୍ୟାଣ ପାଇଁ, ସମାଜକୁ ଦିଗ୍‌ଦର୍ଶନ ଦେବା ପାଇଁ ସେମାନେ ଅହରହ ଶାସ୍ତ୍ର ସଂହିତା ଆଦି ପଠନ, ମନନ, ଲିଖନରେ ବ୍ୟସ୍ତ ରହନ୍ତି। ପୂର୍ବରୁ ଲିଖିତ ପୋଥିସବୁକୁ ନକଲ କରି ସଂରକ୍ଷିତ କରନ୍ତି। ବୃକ୍ଷଲତା ଉପରେ ଗବେଷଣା କରି ନୂଆ ନୂଆ ଔଷଧପତ୍ର ବାହାର କରିବା, ଯଜ୍ଞ ଅନୁଷ୍ଠାନ, ପ୍ରବଚନ ଆଦି ବୌଦ୍ଧିକ ପ୍ରକ୍ରିୟାରେ ନିଜକୁ ନିୟୋଗ ରଖୁଥିବାରୁ ଖାଦ୍ୟ ଉତ୍ପାଦନ ଓ ତା'ର ରକ୍ଷଣାବେକ୍ଷଣ ତଥା ଖାଦ୍ୟ ପ୍ରସ୍ତୁତି ପାଇଁ ସମୟ ଦେଇ ପାରନ୍ତି ନାହିଁ। ରାଜା ଓ ଗୃହସ୍ଥମାନେ ସେମାନଙ୍କ ଦାୟିତ୍ୱ ନେଉଥିଲେ। ତେଣୁ ଭିକ୍ଷୁମାନେ

ଥିଲେ ସମ୍ଭ୍ରାନ୍ତ, ଗୁଣୀ ଓ ଜ୍ଞାନୀ। ସାଧନା ବଳରେ ସେମାନେ ମହାପ୍ରତାପୀ ମଧ୍ୟ ଥିଲେ। ସେମାନଙ୍କୁ ଅସମ୍ମାନ କଲେ ଅଭିଶାପ ବି ଦେଇ ଦେଉଥିଲେ।

କେନ୍ଦରା ବାଦକ, ଚକୁଳିଆ ପଣ୍ଡା ଓ ଜାନୁଘଣ୍ଟମାନେ ଭିକ୍ଷାର୍ଥୀ ସତ, କିନ୍ତୁ ସେମାନେ ହାତ ପାତି ଭିକ୍ଷା ମାଗନ୍ତି ନାହିଁ। ଚକୁଳିଆ ପଣ୍ଡାମାନେ ମଝି ଦାଣ୍ଡରେ ଗୀତ ଗାଆନ୍ତି ଓ ଜାନୁଘଣ୍ଟିଆମାନେ ଜାନୁରେ ଘଣ୍ଟ ବାନ୍ଧି ଗାଁ ଦାଣ୍ଡରେ ଚାଲିଥାନ୍ତି। ଗୃହିଣୀମାନେ ଗୀତ ଓ ଘଣ୍ଟଧ୍ୱନି ଶୁଣି ଭିକ୍ଷା ପ୍ରଦାନ କରିଥାନ୍ତି। ଭିକ୍ଷା କରିବା ଦ୍ୱାରା ସାଧକମାନଙ୍କର ଅହଙ୍କାର ଲୁପ୍ତ ହୁଏ; ଲୋଭ, ମୋହ, ଧନ ଠୁଳ କରିବାର ମାନସିକତା ସୃଷ୍ଟି ହୁଏନାହିଁ, ଯାହା ଫଳରେ ଆତ୍ମିକ ଉନ୍ନତି ଘଟିଥାଏ। ତେଣୁ ସାଧକମାନେ ବଞ୍ଚିବା ପାଇଁ ଏହି ମାର୍ଗକୁ ଚୟନ କରୁଥିଲେ। ସ୍ୱେଚ୍ଛାକୃତ ଦାରିଦ୍ର୍ୟ ବରଣ ବ୍ୟକ୍ତିତ୍ୱର ଏକ ମହନୀୟ ଦିଗ ବୋଲି ଗ୍ରହଣ କରା ଯାଉଥିଲା। ଧନ ଜ୍ଞାନ ଆହରଣରେ ବାଧକ ହେବାର ଆଶଙ୍କା କରି ସେମାନେ ସରଳ ନିରାଡ଼ମ୍ବର ଜୀବନ ଅତିବାହିତ କରୁଥିଲେ। ଜୀବନ ଧାରଣ ପାଇଁ ଯେତିକି ଆବଶ୍ୟକ, ସେତିକି ଖାଦ୍ୟ ଗ୍ରହଣ କରୁଥିଲେ। ଆତ୍ମସଂଯମରେ ବଳୀୟାନ ହୋଇ ପାରୁଥିଲେ।

ଅତୀତରେ ଆମ ଦେଶ ଧନଧାନ୍ୟରେ ପରିପୂର୍ଣ୍ଣ ଥିଲା। ଆମ ନଦୀମାନଙ୍କରେ କ୍ଷୀର ପ୍ରବାହିତ ହୁଏ ଓ ବୃକ୍ଷମାନଙ୍କରେ ସୁନା ଫଳେ, ଏମିତି ଧାରଣାମାନ ନେଇ ବିଦେଶୀମାନେ ଆମ ଦେଶକୁ ପ୍ରବେଶ କରିଥିଲେ। ବୌଦ୍ଧ ଯୁଗରୁ ତ ବିଦେଶୀମାନେ ଆମ ଦେଶରେ ପ୍ରବେଶ କରି ସାରିଥିଲେ। କିନ୍ତୁ ସେମାନେ ଆସିଥିଲେ ଜ୍ଞାନ ପାଇଁ। ମାତ୍ର ସହସ୍ର ବର୍ଷ ମଧ୍ୟରେ ପାର୍ଶି, ଆରବୀ, ଡଚ୍, ପର୍ତ୍ତୁଗୀଜ, ମୋଗଲ ଆଦି ବିଦେଶୀମାନେ ବାରମ୍ବାର ଆମ ଦେଶକୁ ଲୁଣ୍ଠନ କରି ଆମକୁ ନିଃସ୍ୱ କରିଦେଲେ। ନିଜ ନିଜ କଷ୍ଟାର୍ଜିତ ଧନରତ୍ନ ଦେଶାନ୍ତରୀ ହୋଇଯିବା ଦେଖି ଆମ ଲୋକମାନଙ୍କର ଧନ ଅର୍ଜନ କରିବାର ଆଗ୍ରହ ରହିଲା ନାହିଁ। ଯେଉଁ ଧନ ସଞ୍ଚୟ କରି ସେମାନେ ଦାନ ଧ୍ୟାନ ମାଧ୍ୟମରେ ଧର୍ମ ଅର୍ଜନ କରୁଥିଲେ, କେବେ କୌଶଳରେ ତ ଆଉ କେବେ ଜୋର ଜବରଦସ୍ତ ସେମାନଙ୍କଠୁ ଛଡ଼େଇ ନିଆଗଲା। ଫଳରେ ସେମାନେ ଆଳସ୍ୟ ପରାୟଣ ହୋଇ ଦୀନହୀନ ଭାବରେ ବଞ୍ଚିଲେ। କୌଳିକ ବୃତ୍ତି ଧ୍ୱଂସ ପାଇଲା। କାରିଗରୀ ନିପୁଣତା ମଧ୍ୟ ସେମାନଙ୍କ ହାତରୁ ଛଡ଼େଇ ନିଆଗଲା। ସର୍ବଭାରତୀୟ ସ୍ତରରେ ଏ ସଂକଟ ଆମ ରାଜ୍ୟକୁ ମଧ୍ୟ ଆକ୍ରାନ୍ତ କରିଥିଲା। ବିଦେଶୀମାନଙ୍କର ଦମନ ଲୀଳା ସହ ପ୍ରତିବେଶୀ ରାଜ୍ୟମାନଙ୍କର ଚଞ୍ଚକତା ଆମ ରାଜ୍ୟକୁ ଆହୁରି ଦୁଃସ୍ଥ କରି ଦେଇଥିଲା। ଚୋରକୁ ମାନ ମାରି ଖପରାରେ ଖାଇବା ପରି ଆମ ଲୋକମାନେ

ଦାରିଦ୍ର୍ୟ ବରଣ କଲେ। ଏହି କୃତ୍ରିମ ଦାରିଦ୍ର୍ୟ ଥିଲା ସେମାନଙ୍କର ଇଂରେଜମାନଙ୍କ ପ୍ରତି ନିରବ ବିଦ୍ରୋହ ଓ ପ୍ରଚ୍ଛନ୍ନ ପ୍ରତିଶୋଧ। ଦାନ ଖଇରାତ କରିବାର ପରମ୍ପରା ଶିଥିଳ ହୋଇ ପଡ଼ିଲା।

ଇଂରେଜମାନଙ୍କୁ ଦେଶରୁ ତଡ଼ିବା ପାଇଁ ପୁଣି ଯେତେବେଳେ ଆବଶ୍ୟକତା ପଡ଼ିଲା, ସେତେବେଳେ ସ୍ୱାଧୀନତା ସଂଗ୍ରାମୀମାନେ ଭିକ୍ଷା କଲେ। ପଇସାଏ ଅଧଲାଏ ପାଖରୁ ଲକ୍ଷ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଲୋକେ ସ୍ୱେଚ୍ଛାରେ ଦାନ କଲେ। ଗୃହ କଣରେ ଥିବା ଅପାଠୋଇ ଗୃହିଣୀମାନେ ମଧ୍ୟ ନିଜ ଦେହରୁ ଅଳଙ୍କାର ବାହାର କରି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ପ୍ରଦାନ କରିଥିଲେ। ଏହି ପରମ୍ପରା ବହୁଦିନ ପର୍ଯ୍ୟନ୍ତ ସମାଜରେ ମର୍ଯ୍ୟାଦାର ସହ ବଞ୍ଚି ରହିଥିଲା। ପଣ୍ଡିତ ମଦନ ମୋହନ ମାଲବ୍ୟ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟକୁ ଭିକ୍ଷା କରି ଶୁଭାରମ୍ଭ କରିଥିଲେ। ସ୍ୱାଧୀନତା ପରେ ସୁଦ୍ଧା ସ୍କୁଲ୍ କଲେଜ, ମଠ ମନ୍ଦିର, ଡାକ୍ତରଖାନା ପରି କୌଣସି ମହତ ଅନୁଷ୍ଠାନ ପ୍ରତିଷ୍ଠା ପାଇଁ ସ୍ୱେଚ୍ଛାସେବୀମାନେ ହୁଅନ୍ତୁ ବା ଜନସାଧାରଣ, ଭିକ୍ଷା କରି ପାଣ୍ଠି ସଂଗ୍ରହ କରୁଥିଲେ। ମୁଠି ଚାଉଳ ବ୍ୟବସ୍ଥା ଦ୍ୱାରା ଗୃହିଣୀମାନେ ପ୍ରତିଦିନ ରୋଷେଇ ହେଉଥିବା ଚାଉଳରୁ ମୁଠାଏ ରଖି ମହତ ଉଦ୍ଦେଶ୍ୟ ପାଇଁ ଦାନ କରୁଥିଲେ। ସାମୂହିକ କଲ୍ୟାଣ ପାଇଁ, ସମାଜର ମଙ୍ଗଳ ପାଇଁ ବ୍ୟକ୍ତିବିଶେଷ ଆନନ୍ଦରେ ଭିକ୍ଷା ଦେଉଥିଲେ। ଦାତା ଓ ଗ୍ରହୀତାଙ୍କ ମଧ୍ୟରେ ଭାବଗତ ସମ୍ପର୍କ ଥିଲା।

କିନ୍ତୁ ଏବେ ଭିକ୍ଷାର ସଂଜ୍ଞା ପରିବର୍ତ୍ତିତ ହୋଇ ଯାଇଛି। ଭିକ୍ଷୁକମାନେ ଭିକ୍ଷା କରି ପଇସା ଦେଣନେଣ କାରବାର କରୁଥିବାର ଦୃଷ୍ଟାନ୍ତ ବି ରହିଛି। ଶିଶୁମାନଙ୍କୁ ଅପହରଣ କରିନେଇ ସେମାନଙ୍କୁ ବିକଳାଙ୍ଗ କରି ଭିକ୍ଷାବୃତ୍ତିରେ ନିୟୋଗ କରୁଥିବା ଅସାମାଜିକ ଲୋକମାନେ ଅଛନ୍ତି। କେବଳ ଶାରୀରିକ ଦୁର୍ବଳ କି ଅକ୍ଷମ ନୁହନ୍ତି, କାମ ନ କରି ନିଷ୍କର୍ମା ହୋଇ, ଆଳସ୍ୟରେ ଦିନ ବିତାଉ ଥିବା ସୁସ୍ଥ ସବଳ ଶରୀରଧାରୀ ମଣିଷମାନେ ଭିକ୍ଷାବୃତ୍ତିକୁ ସହଜ ମାର୍ଗ ବୋଲି ଗ୍ରହଣ କରି ନେଇଛନ୍ତି। ବଡ଼ ବଡ଼ ସହରମାନଙ୍କରେ କର୍ମଜୀବୀ ଦମ୍ପତି ଆୟାମାନଙ୍କ ଦାୟିତ୍ୱରେ ନିଜ ସନ୍ତାନଙ୍କୁ ଛାଡ଼ିଥାନ୍ତି। କିନ୍ତୁ ଆୟାମାନେ ସେହି ଛୁଆମାନଙ୍କୁ ନେଇ ଭିକ୍ଷାବୃତ୍ତି କରିବା ପରି ଜଘନ୍ୟ ଦୃଶ୍ୟ ଦେଖିବାକୁ ମିଳୁଛି। ଷ୍ଟେସନ୍, ବସ୍‌ଷ୍ଟାଣ୍ଡ, ମନ୍ଦିର ଆଦି ଜନ ଗହଳି ସ୍ଥାନରେ ଅକ୍ଷମ ଭିକାରୀଙ୍କ ଅପେକ୍ଷା ସକ୍ଷମ ଭିକାରୀଙ୍କ ସଂଖ୍ୟା ବେଶୀ।

ସମାଜକୁ ଏବେ ଆଉ ଏକ ନବ୍ୟ ଭିକ୍ଷୁକବାଦ ଗ୍ରାସ କରିଛି। ଏ ଭିକ୍ଷୁକତାରେ ଆଉ ସମୂହ ସ୍ୱାର୍ଥ ଅଥବା ସମାଜ କଲ୍ୟାଣର ମହତ ପଣ ନାହିଁ। ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧି

ପାଇଁ କେତେକ ନିଜର ସ୍ୱାଭିମାନକୁ ନିଃସଂକୋଚରେ ବଳି ଦେଉଛନ୍ତି। ଏଥିପାଇଁ ସରକାରୀ ପ୍ରୋତ୍ସାହନ ମଧ୍ୟ କମ୍ ନାହିଁ। ଟଙ୍କିକିଆ ଚାଉଳ, ପାଞ୍ଚଟଙ୍କିଆ ଭୋଜନ, ଇନ୍ଦିରା ଆବାସ ଘର ଆଦି ଏନ୍ତୁଡ଼ିଶାଳରୁ ଅନ୍ତ୍ୟେଷ୍ଟି ପର୍ଯ୍ୟନ୍ତ ଯାବତୀୟ ସରକାରୀ ସାହାଯ୍ୟ ପାଇଁ ସେ ହାତ ପାତି ବସୁଛି। ଅନ୍ନଛତ୍ରରେ ଖାଇଲେ ଯେଉଁଠି ଏକଦା ମଣିଷ ଜାତି ହାରୁଥିଲା ଓ ପୁନଶ୍ଚ ପ୍ରାୟଶ୍ଚିତ କରି ଜାତି ହେଉଥିଲା, ଏବେ ସେଇ ମାଟିରେ ଅନ୍ନଛତ୍ରମାନଙ୍କରେ ଧୋବଧାଉଳିଆଙ୍କର ବି ଭିଡ଼। ରାସନ୍ କାର୍ଡ଼ଟିଏ ପାଇଁ ମେୟର ଓ ସରକାରୀ ଚାକିରିଆମାନେ ବି ଦୌଡ଼ରେ ସାମିଲ୍ ହେବା ପରି ଲଜ୍ଜାଜନକ ସ୍ଥିତି ଦେଖିବାକୁ ମିଳୁଛି। ବିପିଏଲ୍ କାର୍ଡ୍ କି ଜବ୍‌କାର୍ଡ୍ ଖଣ୍ଡେ ପାଇଁ ନିଜକୁ ଦରିଦ୍ର ସାବ୍ୟସ୍ତ କରିବାକୁ ହେଉଛି ନିର୍ଲଜ ପ୍ରତିଯୋଗିତା। ନିଜ ଶକ୍ତି ସାମର୍ଥ୍ୟକୁ ବିନିଯୋଗ କରି ଅର୍ଥ ଉପାର୍ଜନ କରିବାର ମାନସିକତା ଧୀରେ ଧୀରେ ଆମ ଲୋକଙ୍କ ପାଖରୁ ଦୂର ହୋଇଯାଉଛି। ଏହା ଗୋଟିଏ ସଭ୍ୟତା ଓ ସଂସ୍କୃତିକୁ ବିକୃତିରେ ପରିଣତ କରିବାର ପ୍ରାରମ୍ଭିକ ପ୍ରସ୍ତୁତି।



# ଅଙ୍ଗ ଦାନ ଓ ଅଙ୍ଗ ଛିନ୍ନ

ସ୍ୱର୍ଗ ରାଜ୍ୟରେ ଆତଙ୍କ ସୃଷ୍ଟି କରୁଥିବା ବୃତ୍ରାସୁରର ନିହତ ହେବାର ଉପାୟ ବିଷ୍ଣୁଙ୍କଠାରୁ ଶୁଣି ହତାଶ ହୋଇ ପଡ଼ିଥିଲେ ଦେବଗଣ । ଏମିତି ପୁଣ୍ୟାତ୍ମା କିଏ ଅଛନ୍ତି, ଯିଏ ସ୍ୱଇଚ୍ଛାରେ ନିଜର ଅସ୍ଥି ଦାନ କରିବେ ? ସେଇ ଅସ୍ଥିରେ ନିର୍ମିତ ଅସ୍ତ୍ରରେ ବୃତ୍ରାସୁର ବଧ ହେବ ! ଶେଷରେ ବିଷ୍ଣୁ ହିଁ ସନ୍ଧାନ ଦେଇଥିଲେ ଦଧିଚିଙ୍କର । ଇନ୍ଦ୍ରାଦି ଦେବଗଣଙ୍କ ଅନୁରୋଧରେ ସ୍ୱଇଚ୍ଛାରେ ଅଗ୍ନିକୁଣ୍ଡରେ ପ୍ରବେଶ କରି ଦେବତାମାନଙ୍କୁ ଋଷି ଦଧିଚି ଅସ୍ଥି ପ୍ରଦାନ କରିଥିଲେ । ସେଇ ଅସ୍ଥିରେ ତିଆରି ହୋଇଥିଲା ଇନ୍ଦ୍ରଙ୍କର ବଜ୍ର ଆଉ ସେଇ ବଜ୍ରରେ ବୃତ୍ରାସୁର ନିହତ ହୋଇଥିଲା ।

ଦଧିଚିଙ୍କର ଏ ଦୟା ଓ ଦାନର ପଟ୍ଟାନ୍ତର ନଥିଲା । ସେଇଥିପାଇଁ ତ ତାଙ୍କ ଶରୀରର ବିସର୍ଜନ ସ୍ଥଳ ଧଉଳି ପାହାଡ଼ର ପାଦଦେଶରୁ ବହି ଯାଇଛି ଦୟାନଦୀ ଋଷିଙ୍କ ଭସ୍ମାବଶେଷକୁ ଅନ୍ତର୍ଗର୍ଭିତ କରି । ଏ ପୌରାଣିକ ଆଖ୍ୟାନରେ ଓଡ଼ିଶା ମାଟି ଧନ୍ୟ ହୋଇଛି । ଯେତେ ପ୍ରକାର ଦାନ ଅଛି, ନିଜ ଶରୀର ଅଥବା ଶରୀରର କିଛି ଅଙ୍ଗ ଦାନ କରିବା ସବୁଠାରୁ ବଳି ମହତ ଦାନ । ରାଜା ଶିବି ଦାନ କରିଥିଲେ ନିଜ ଶରୀରର ଖଣ୍ଡ ଖଣ୍ଡ କରି ସମ୍ପୂର୍ଣ୍ଣ ମାଂସ ଖଣ୍ଡ । ବଦଳରେ ବାଜ କବଳରୁ କପୋତୀଟିର ଜୀବନ ରକ୍ଷା କରିଥିଲେ ।

କେବଳ ଅସ୍ଥି କିମ୍ବା ମାଂସ ନୁହେଁ, ଜଣେ ଅନ୍ୟ ଜଣଙ୍କୁ ଯୌବନ କିମ୍ବା ଆୟୁ ଦାନ କରିବାର ଦୃଷ୍ଟାନ୍ତ ଆମ ପୁରାଣ ଇତିହାସରେ ରହିଛି । ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀ ଗୋଟିଏ ଜିଦ୍‌ରେ ରାଜକୁମାରୀ ଶର୍ମିଷ୍ଠାଙ୍କୁ ଦାସୀ କରି ନେଇ ଯାଇଥିଲେ ପତି ଗୃହକୁ । ଶୁକ୍ରାଚାର୍ଯ୍ୟଙ୍କ ବାରଣ ସତ୍ତ୍ୱେ ଯଯାତି ଶର୍ମିଷ୍ଠାଙ୍କ ସହ ଅନୈତିକ ପ୍ରଣୟରେ ଲିପ୍ତ ରହିଲେ । ଫଳରେ ସେ ଶୁକ୍ରାଚାର୍ଯ୍ୟଙ୍କ କ୍ରୋଧର ଶିକାର ହୋଇ ଅକାଳ ବାର୍ଦ୍ଧକ୍ୟ ଭୋଗ କଲେ । ପୁତ୍ର ପୁରୁ ନିଜ ଯୌବନ ପିତାଙ୍କୁ ଅର୍ପଣ କରି ତାଙ୍କ ଜୀବନକୁ ସ୍ୱାଭାବିକ କରିଥିଲେ । ନିଜ ଆୟୁଷ ପ୍ରଦାନ କରି ବାବର ଅଳ୍ପାୟୁ ହୁମାୟୁନ୍‌ଙ୍କୁ ବଞ୍ଚାଇ ଥିଲେ ବୋଲି ଆମେ ଇତିହାସରେ ପଢ଼ିଛୁ । ଏସବୁ ଆଖ୍ୟାନ ଉପାଖ୍ୟାନରେ କିଛି କବି କଳ୍ପନା ଅଥବା ଅତିରଞ୍ଜନ ଥାଇପାରେ, ତଥାପି ଅତୀତରେ ଆମର ଅଙ୍ଗପ୍ରତ୍ୟଙ୍ଗ ଦାନ

ଓ ପ୍ରତିରୋପଣ ପରି କିଛି ପରମ୍ପରା ଓ ଜ୍ଞାନକୌଶଳ ଯେ ଥିଲା, ତାହା ଅସ୍ୱୀକାର କରିହେବ ନାହିଁ।

ସାମ୍ପ୍ରତିକ ମଣିଷର ଜୀବନଧାରଣ ପଦ୍ଧତି ତାକୁ ଅନେକ ରୋଗବ୍ୟାଧିର ବଳୟ ମଧ୍ୟରେ କବଳିତ କରି ରଖିଛି। କୁହାଯାଏ, ଅତୀତରେ ମଣିଷର ଜୀବନୀ ଶକ୍ତି ଅଖଣ୍ଡ ଶକ୍ତିଶାଳୀ ଥିଲା। ରୋଗବ୍ୟାଧି ତାକୁ ବେଶୀ ମାତ୍ରାରେ ଆକ୍ରାନ୍ତ କରିପାରୁ ନଥିଲା। ସତ୍ୟ ଯୁଗରେ ମଣିଷର ଜୀବନୀ ଶକ୍ତି ଅସ୍ଥିରେ ଥିଲା। ଶରୀରରୁ ମାଂସଖଣ୍ଡ ନିଃଶେଷ ହୋଇଗଲେ ବି ସେ ବଞ୍ଚି ରହୁଥିଲା। ତା' ପରବର୍ତ୍ତୀ ଯୁଗମାନଙ୍କରେ ମାଂସରେ ରହିଥିଲା ଜୀବନୀ ଶକ୍ତି। ଶରୀରରେ ମାଂସଖଣ୍ଡ ଥିବା ପର୍ଯ୍ୟନ୍ତ ତା' ଜୀବନୀ ଶକ୍ତି ଅକ୍ଷୁଣ୍ଣ ରହୁଥିଲା। ଦ୍ୱାପର ଯୁଗରେ ଜୀବନୀ ଶକ୍ତି ରକ୍ତରେ ଥିଲା। ଭୀଷ୍ମଙ୍କ ଅଙ୍ଗରୁ ଅଜସ୍ର ରକ୍ତସ୍ରାବ ହେଲେ ସୁଦ୍ଧା ସେ ମାସାଧିକ କାଳ ବଞ୍ଚିଥିଲେ। କିନ୍ତୁ ଏ ଯୁଗରେ ମଣିଷର ପ୍ରାଣସତ୍ତା ଶ୍ୱାସ ପ୍ରଶ୍ୱାସରେ ହିଁ ଅଟକି ରହିଛି। ରୋଗବ୍ୟାଧିର ଶିକାର ହୋଇ ଯନ୍ତ୍ରଣାରେ ଗୋଟାଏ ମୁହୂର୍ତ୍ତ ଶ୍ୱାସକ୍ରିୟା ଅଟକି ଗଲେ ସେ ମୃତ୍ୟୁମୁଖରେ ପଡୁଛି। ତେଣୁ ଏ ଯୁଗରେ ମଣିଷର ସବୁଠାରୁ ବଡ଼ ଶତ୍ରୁ ହୋଇଛି ବ୍ୟାଧି। ବ୍ୟାଧିମୁକ୍ତ ଜୀବନ ବଞ୍ଚିବା ପାଇଁ ଏ ଯୁଗର ମଣିଷ ତା'ର ସବୁ ଜ୍ଞାନ ଗରିମା, କୌଶଳ କାରିଗରୀକୁ ବାଜି ଲଗେଇ ଦେଇଛି। ତଥାପି ନିତି ନୂଆ ନୂଆ ବ୍ୟାଧି ତା' ଶରୀରକୁ କ୍ଷୟ କରି ଚାଲିଛି। ଏହି କ୍ଷୟିଷ୍ଣୁ ଶରୀରକୁ ପୂର୍ଣ୍ଣ କରିବାକୁ ଚିକିତ୍ସା ବିଜ୍ଞାନୀମାନେ ନୂଆ ନୂଆ ରଣକୌଶଳ ଆରମ୍ଭ କରି ଦେଇଛନ୍ତି।

ଚିକିତ୍ସା ବିଜ୍ଞାନର ଯେତେ ଉତ୍କର୍ଷ ସାଧନ ହେଲେ ସୁଦ୍ଧା ମଣିଷ ରକ୍ତ, କିଡ୍‌ନୀ, ଚକ୍ଷୁ, ହୃତ୍‌ପିଣ୍ଡ, ଲିଭର, ଫୁସ୍‌ଫୁସ୍ ବୋନ୍‌ମାରୋ, ଚର୍ମ ଆଦି ଅଙ୍ଗର କୃତ୍ରିମ ବିକଳ୍ପ ସୃଷ୍ଟି କରିପାରି ନାହିଁ। ମଣିଷ ଶରୀରକୁ ଜୀବନୀ ଶକ୍ତି ପ୍ରଦାନ କରୁଥିବା ଏହି ଅଙ୍ଗଗୁଡ଼ିକ କୌଣସି କାରଣରୁ ନଷ୍ଟ ହୋଇଗଲେ ଅନ୍ୟ ଶରୀରରୁ ଆଣି ପ୍ରତିରୋପଣ କରାଯାଇ ପାରୁଛି। ଯାହାଠାରୁ ଏହା ଅଣା ଯାଉଛି, ସେ ସ୍ୱେଚ୍ଛାକୃତ ଭାବରେ ଏହା ରୋଗୀକୁ ଦାନ କରିଥାନ୍ତି। କୌଣସି ପରିସ୍ଥିତିରେ ଉପରୋକ୍ତ ଅଙ୍ଗଗୁଡ଼ିକ ବିକାକିଣା ହୋଇ ପାରିବ ନାହିଁ ବୋଲି କଡ଼ାକଡ଼ି ନିୟମ ମଧ୍ୟ ରହିଛି। କେତେକ ବଦାନ୍ୟ ବ୍ୟକ୍ତି ମୃତ୍ୟୁ ପରେ ସେମାନଙ୍କ ଅଙ୍ଗପ୍ରତ୍ୟଙ୍ଗ ଦାନ କରିବା ପାଇଁ ନଥିଭୁକ୍ତ ହୋଇଥାନ୍ତି ତ ଆଉ କେତେକ ପରିସ୍ଥିତିର ଆହ୍ୱାନରେ ଜୀବିତାବସ୍ଥାରେ ଅଙ୍ଗ ପ୍ରଦାନ କରିଥାନ୍ତି। ଆମ ପରିବର୍ତ୍ତିତ ଜୀବନଶୈଳୀ ହେତୁ ସମଗ୍ର ବିଶ୍ୱରେ ଅନ୍ୟାନ୍ୟ ଅଙ୍ଗ ଅପେକ୍ଷା କିଡ୍‌ନୀ ରୋଗାକ୍ରାନ୍ତଙ୍କ ସଂଖ୍ୟା ବେଶୀ। ୧୯୫୪ ମସିହାରେ ଡକ୍ଟର ଯୋଶେଫ ମୁରେ

ବିଶ୍ୱରେ ପ୍ରଥମ କିଡ୍‌ନୀ ପ୍ରତିରୋପଣ କରି ସଫଳ ହୋଇଥିଲେ। ରୋନାଲ୍ଡ ଲି ହେରିକ୍ ଥିଲେ ପ୍ରଥମ କିଡ୍‌ନୀ ଦାତା। ସେ ତାଙ୍କ ଯାଆଁଳା ଭାଇ ପାଇଁ ଏହା ପ୍ରଦାନ କରିଥିଲେ। ପରବର୍ତ୍ତୀ ପର୍ଯ୍ୟାୟରେ ଡକ୍ଟର ଯୋଶେଫଙ୍କୁ ନୋବେଲ ପୁରସ୍କାର ମିଳିଥିଲା। ସର୍ବକନିଷ୍ଠ କିଡ୍‌ନୀ ଦାତା ଥିଲେ ମାତ୍ର ୧୦୦ ମିନିଟ୍ ବଞ୍ଚିଥିବା ଶିଶୁଟିଏ।

ଚିକିତ୍ସା ବିଜ୍ଞାନର ଉତ୍କର୍ଷ ସହ ସାମ୍ପ୍ରତିକ ମଣିଷମାନଙ୍କ ମନରେ ଅଙ୍ଗଦାନ କରିବାର ପ୍ରବଣତା ଧୀରେଧୀରେ ବୃଦ୍ଧି ପାଉଛି। ଅନେକ ରକ୍ଷଣଶୀଳ ମନୋବୃତ୍ତି ସତ୍ତ୍ୱେ ପ୍ରତିଦିନ ଶହ ଶହ ସଂଖ୍ୟାରେ ଲୋକମାନେ ସମଗ୍ର ଶରୀର ଅଥବା କୌଣସି ନିର୍ଦ୍ଦିଷ୍ଟ ଅଙ୍ଗମାନ ଦାନ କରିବା ପାଇଁ ନଥିଭୁକ୍ତ ହେଉଛନ୍ତି। ଏଥିପାଇଁ ଅବଶ୍ୟ ସରକାରୀ ଓ ବେସରକାରୀ ସ୍ତରରେ ସଚେତନତା କାର୍ଯ୍ୟକ୍ରମମାନ ଆୟୋଜନ କରାଯାଉଛି। ଅଷ୍ଟ୍ରିଆ, ବେଲ୍‌ଜିଅମ୍, ସ୍ପେନ୍ ଆଦି ରାଷ୍ଟ୍ରରେ ପ୍ରତ୍ୟେକ ବ୍ୟକ୍ତିଙ୍କ ମୃତ ଶରୀର କିକିତ୍ସା ବିଜ୍ଞାନ ବିଭାଗକୁ ଚାଲି ଯାଇଥାଏ। କୌଣସି କାରଣରୁ ଯଦି କେହି ଏହି ବିଧି ବ୍ୟବସ୍ଥାରୁ ବାଦ୍ ପଡ଼ିବାକୁ ଚାହାନ୍ତି ତ ସେମାନଙ୍କୁ ଦରଖାସ୍ତ କରିବାକୁ ପଡ଼ିଥାଏ।

ପ୍ରତ୍ୟେକ ଧର୍ମରେ ମଣିଷର ଜନ୍ମ ଓ ମୃତ୍ୟୁ ପରେ କିଛି ସଂସ୍କାର କର୍ମ ରହିଥାଏ। ପ୍ରଥା ପରମ୍ପରା ଓ ଅନ୍ଧବିଶ୍ୱାସ ଥାଏ। ଦାହ ସଂସ୍କାର ସହ ଅନ୍ତ୍ୟେଷ୍ଟି କ୍ରିୟା ନକଲେ ପ୍ରେତାତ୍ମା ଅତୃପ୍ତ ହୋଇ ଘୂରି ବୁଲେ ବୋଲି ଆମେ କହୁ। ମୃତ ଶରୀରରୁ ଆଖି ତାଡ଼ିନେଲେ ଆସନ୍ତା ଜନ୍ମକୁ ସେ ଅନ୍ଧ ହୋଇ ଜନ୍ମ ହୁଏ ବୋଲି ଆମର ଭ୍ରମ ଧାରଣା ରହିଛି। ଜରାଥୁଷ୍ଟମାନେ ଶବକୁ ଶାଗୁଣାକୁ ଖାଇବାକୁ ଦିଅନ୍ତି। ଏହାଦ୍ୱାରା ଆତ୍ମା ଶାନ୍ତି ପାଏ ବୋଲି ସେମାନଙ୍କର ବିଶ୍ୱାସ। ଇସଲାମ ଧର୍ମାବଲମ୍ବୀମାନେ ଅଙ୍ଗ ଦାନକୁ ଧର୍ମ ବିରୋଧୀ କହୁଥିବା ବେଳେ ବୌଦ୍ଧମାନେ ଶବକୁ ମର୍ଯ୍ୟାଦା ଦେବା ସପକ୍ଷରେ ଥାନ୍ତି। କିନ୍ତୁ ଖ୍ରୀଷ୍ଟିୟାନମାନେ ଅଙ୍ଗ ଦାନକୁ ସେବା କାର୍ଯ୍ୟ ବୋଲି ଗ୍ରହଣ କରିଥାନ୍ତି। ଅନେକ ଧାର୍ମିକ ବିଚାର ବିଭେଦ ସତ୍ତ୍ୱେ ମାନବିକତାର ଜୟ ଘଟିଛି। ମୃତ୍ୟୁ ପରେ ଯେଉଁ ଶରୀର ମୁଠାଏ ପାଉଁଶ ହୋଇଥାନ୍ତା କିମ୍ବା କଫିନ୍ ଭିତରେ ବନ୍ଦୀ ହୋଇଥାନ୍ତା ଅଥବା ଶାଗୁଣା ବିଲୁଆଙ୍କ ମୁହଁରେ ଯାଇଥାନ୍ତା, ସେମାନେ ପୁଣି ଜୀବନ ସହ ଯୋଡ଼ି ହୋଇ ଯାଉଛନ୍ତି ଓ ଆଉ ଗୋଟିଏ ଜୀବନକୁ ବଞ୍ଚାଇ ପାରୁଛନ୍ତି। ଜୀବିତାବସ୍ଥା ହେଉ କି ମୃତ୍ୟୁ ପରେ ଅଙ୍ଗଦାନ କରିବାର ଆଗ୍ରହ କ୍ରମେ ଲୋକଙ୍କ ମଧ୍ୟରେ ବୃଦ୍ଧି ପାଇବାରେ ଲାଗିଛି। ଚିକିତ୍ସା ବିଜ୍ଞାନ ମଧ୍ୟ ଅଙ୍ଗ ପ୍ରତିରୋପଣର ଜଟିଳ ପ୍ରକ୍ରିୟାକୁ ସହଜ ଓ ସୁଚାରୁ ରୂପେ ସମ୍ପନ୍ନ କରିପାରୁଛି।

ଅଙ୍ଗ ଦାନ ଓ ପ୍ରତିରୋପଣ ପ୍ରକ୍ରିୟାରେ ଚିକିତ୍ସା ବିଜ୍ଞାନରେ ସର୍ବଦା ଦାତା ଓ ଗ୍ରହୀତା (ଡୋନର ଓ ରେସିପିଏଣ୍ଟ) ଶବ୍ଦ ବ୍ୟବହୃତ ହୋଇଥାଏ। ମାନବ ଅଙ୍ଗ ପ୍ରତିରୋପଣ ଆକ୍ଟ - ୧୯୯୪ ଅନୁସାରେ କୌଣସି ପରିସ୍ଥିତିରେ ମାନବ ଅଙ୍ଗ ବିକାକିଣା କରାଯାଇ ପାରିବ ନାହିଁ। କାହାକୁ ବାଧ କରି କିମ୍ବା ଅଜାଣତରେ କାହାଠାରୁ କୌଣସି ଅଙ୍ଗ ବାହାର କରି ନିଆଯାଇ ପାରିବ ନାହିଁ। ଏହା ଏକ ଧର୍ତ୍ତବ୍ୟ ଅପରାଧ। କିନ୍ତୁ ସାରା ବିଶ୍ୱରେ ଏବେ ମାନବ ଅଙ୍ଗ ଚାଲାଣକାରୀ ବ୍ୟବସାୟୀ ସକ୍ରିୟ। ମାନବ ଅଙ୍ଗର କଳାବଜାରୀ କରି ଏମାନେ କୋଟି କୋଟି ଟଙ୍କା ଉପାର୍ଜନ କରୁଛନ୍ତି। ଅଭାବୀ ମଣିଷକୁ ଅର୍ଥ ପ୍ରଲୋଭନ ଦେଖାଇ ସେମାନଙ୍କଠାରୁ କିଡ୍‌ନୀ ଓ ଅନ୍ୟାନ୍ୟ ଅଙ୍ଗ ନେଇଥାନ୍ତି। ପରେ ଜଣାପଡ଼େ ଯେ ସେମାନଙ୍କୁ ପ୍ରତିଶ୍ରୁତି ଅନୁସାରେ ଅର୍ଥ ମିଳି ନଥାଏ ଓ ଏସବୁ କାର୍ଯ୍ୟ ଗୋପନୀୟ ଭାବରେ ହେଉଥିବାରୁ ଅଙ୍ଗ ଦାନ କରିଥିବା ବ୍ୟକ୍ତିଟିର ପରବର୍ତ୍ତୀ ସ୍ୱାସ୍ଥ୍ୟ ପ୍ରତି କେହି ଗୁରୁତ୍ୱ ଦେଇ ନଥାନ୍ତି। ତା'ର ଅବସ୍ଥା ସଂକଟାପନ୍ନ ହୋଇଥାଏ। ଅନ୍ୟ କୌଣସି ଚିକିତ୍ସା ପାଇଁ ଡାକ୍ତରଖାନାରେ ଭର୍ତ୍ତି ହୋଇଥିବା ରୋଗୀ ଦେହରୁ କିଡ୍‌ନୀ ବାହାର କରିନେବା ଅଭିଯୋଗ ମଧ୍ୟ ପ୍ରାୟତଃ ଶୁଣିବାକୁ ମିଳିଥାଏ। ଏଥିରେ ଡାକ୍ତରମାନଙ୍କ ସଂପୃକ୍ତି ଦେଖିବାକୁ ମିଳିଥାଏ।

ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥାର ଆକଳନ ଅନୁସାରେ, ସାରା ବିଶ୍ୱରେ ଅଙ୍ଗଦାତାଙ୍କ ଅପେକ୍ଷା ଗ୍ରହୀତାଙ୍କ ସଂଖ୍ୟା ବେଶୀ। ସେଥିପାଇଁ କଳାବଜାରୀମାନେ ଏହାର ଫାଇଦା ଉଠାଇଥାନ୍ତି। ଯେତେସବୁ ଅଙ୍ଗ ପ୍ରତିରୋପଣ ପ୍ରକ୍ରିୟା ହୁଏ, ସେଥିରୁ ୭୫ ପ୍ରତିଶତ ଥାଏ କିଡ୍‌ନୀ। ଭାରତରେ ପ୍ରତିବର୍ଷ ୨ଲକ୍ଷ ରୋଗୀ କିଡ୍‌ନୀ ଆବଶ୍ୟକ କରିଥାନ୍ତି। କିନ୍ତୁ ସେହି ପରିମାଣରେ ଦାତା ମିଳନ୍ତି ନାହିଁ। ବିଶ୍ୱ ବଜାରରେ ଏହା କଳାବଜାରରେ ୧୩୦୦ ଡଲାରରୁ ଲକ୍ଷେ ପଚାଶହଜାର ଡଲାରରେ ବିକ୍ରି ହେଉଥିବା ବେଳେ ଆମ ଦେଶରେ ମାତ୍ର ଲକ୍ଷେ ଦୁଇଲକ୍ଷ ଟଙ୍କାରେ କିଡ୍‌ନୀ ବିକାକିଣାର ସମ୍ବାଦମାନ ମିଳିଥାଏ।

ଡାକ୍ତରମାନଙ୍କ ସହାୟତା ବିନା ଏହି ସୁସଙ୍ଗଠିତ ମାନବ ଅଙ୍ଗ ଛିନ୍ନକାରୀ ଓ ଚାଲାଣକାରୀ ର୍‍ୟାକେଟ୍ ଆଦୌ ସମ୍ଭବପର ନୁହେଁ। ଯେଉଁମାନଙ୍କୁ ଆମେ ଦ୍ୱିତୀୟ ଈଶ୍ୱରଙ୍କ ପରି ଭରସା କରିଥାଉ, ସେମାନେ ଯଦି ଏହି ଅନୈତିକ ଓ ଅମାନୁଷିକ କାର୍ଯ୍ୟର ମୂଳସୂତ୍ର ହେବେ, ତେବେ ଏହାଠାରୁ ବଳି ବିଡ଼ମ୍ବନା ଆଉ କ'ଣ ଥାଇପାରେ !



# ସ୍ୱାମୀ ବନାମ୍ ଜୀବନସାଥୀ

ସ୍ୱାମୀର ପ୍ରତିଶବ୍ଦ ଯେପରି ପତି ବ୍ୟତୀତ ମାଲିକ, ପ୍ରଭୁ, ଈଶ୍ୱର, ରାଜା, ପାଳକ, ଖାମିନ୍ଦ, ସାଆନ୍ତ ଆଦି ଶବ୍ଦ ରହିଛି, ସ୍ତ୍ରୀର ପ୍ରତିଶବ୍ଦ ଭାବରେ କେବଳ ନାରୀ ବା ପତ୍ନୀ ବ୍ୟତୀତ ଆଉ ବେଶୀ ମର୍ଯ୍ୟାଦାଜନକ ଶବ୍ଦ ଅଭିଧାନରେ ନାହିଁ। ପରସ୍ପର ସମ୍ପର୍କ ଭିତରେ ଜଣେ ଯଦି ସ୍ୱାମୀ ହୁଏ, ଅପର ଜଣକ ତ ତା'ର ଦାସ, ଭକ୍ତ, ଅନୁଗତ, ଚାକର ହିଁ ହେବ। ପତି ଯଦି ଈଶ୍ୱର ହୁଏ, ପତ୍ନୀ କାହିଁକି ଈଶ୍ୱରୀ ହେବନାହିଁ ? ଏ ଲିଙ୍ଗଗତ ପକ୍ଷପାତିତା ଅହଂସର୍ବସ୍ୱ ପୁରୁଷ ସମାଜଶାସ୍ତ୍ରୀମାନଙ୍କ ଦ୍ୱାରା ପ୍ରତିଷ୍ଠିତ। ଶବ୍ଦ ସୃଷ୍ଟି ଓ ତା'ର ଅର୍ଥକାରିତା ମୂଳରେ ମଧ୍ୟ ସେହି ପ୍ରବଣତା ସୁସ୍ପଷ୍ଟ। ପୁରୁଷକୁ ମର୍ଯ୍ୟାଦା ଦେବା ଉଦ୍ଦେଶ୍ୟରେ ପୁରୁଷ ପୁଙ୍ଗବ, ପୁରୁଷ ସିଂହ ଆଦି ବୀରତ୍ୱବାଚକ ଶବ୍ଦର ପ୍ରୟୋଗ କରା ଯାଉଥିବା ବେଳେ ନାରୀମାନଙ୍କ ପ୍ରତି ନାରୀହୀରା, ନାରୀରତ୍ନ, ରମଣୀମଣି ପରି ବସ୍ତୁବାଚକ ଶବ୍ଦ ପ୍ରୟୋଗ ହୋଇଥାଏ ଯାହାର ରକ୍ଷଣାବେକ୍ଷଣ ପାଇଁ ଜଣେ ଶକ୍ତି, ସାମର୍ଥ୍ୟ ଥିବା ପୁରୁଷର ଆବଶ୍ୟକତା ହୋଇଥାଏ। ନାରୀ ନିଷ୍କ୍ରିୟ ବସ୍ତୁ ଓ ପୁରୁଷ ସକ୍ରିୟ ଉପଭୋକ୍ତା। ନାରୀମାନଙ୍କ ପ୍ରତି ସମାଜର ଏହି ପାରମ୍ପରିକ ଦୃଷ୍ଟିକୋଣ ନାରୀର ସବୁ ଦୁର୍ଭୋଗର ହେତୁ। ବ୍ୟବସ୍ଥା ସମାଜର ମଙ୍ଗଳ ନିମନ୍ତେ ଗଢ଼ା ହୋଇଥିଲା। କିନ୍ତୁ ତାହା ଯଦି ସମାଜ ପାଇଁ ଅମଙ୍ଗଳ କାରକ ହୁଏ, ସେଥିରେ ପରିବର୍ତ୍ତନ ଆବଶ୍ୟକ।

ସୃଷ୍ଟିକୁ ଆଗକୁ ବଢ଼ାଇବା ପାଇଁ ନାରୀ ଓ ପୁରୁଷଙ୍କ ମଧ୍ୟରେ ଶୃଙ୍ଖଳିତ ଓ ସୁସମ୍ପର୍କ ସ୍ଥାପନ ଥିଲା ବିବାହ ଅନୁଷ୍ଠାନର ଉଦ୍ଦେଶ୍ୟ। ତତ୍କାଳୀନ ସାମାଜିକ ପୃଷ୍ଠଭୂମିରେ ନାରୀ ନିର୍ଭରଶୀଳ ଥିଲା। ତେଣୁ ତା'ର ଦାୟିତ୍ୱ ବହନ କରିବା ପାଇଁ ପୁରୁଷ ହାତରେ ତାକୁ ଅର୍ପଣ କରା ଯାଉଥିଲା। କନ୍ୟାଟିକୁ ପୁରୁଷ ଗ୍ରହଣ କରୁଥିଲା। ସେହି ଗ୍ରହଣ ଶବ୍ଦରୁ ତାକୁ ଗ୍ରହୀତା ଓ ପରେ ଅପଭ୍ରଂଶ ହୋଇ 'ଘଇତା' ଶବ୍ଦର ଉଦ୍ଭବ ହୋଇଥିଲା। ପତ୍ନୀର ଭାର ବହନ କରୁଥିବାରୁ ବା ଭରଣପୋଷଣର ଦାୟିତ୍ୱ ନେଇଥିବାରୁ ତାକୁ ଭର୍ତ୍ତା ଓ ପତ୍ନୀକୁ କୁହା ଯାଉଥିଲା ଭାର୍ଯ୍ୟା। ଏବେ ଏ ଶବ୍ଦ ସମୂହର ପ୍ରାସଙ୍ଗିକତା କମି ଆସିଲାଣି। ନାରୀ ଏବେ ସମର୍ଥା। ସେ ଆଉ ଅବଳା ଦୁର୍ବଳା ନୁହେଁ। ସେ ଆତ୍ମନିର୍ଭରଶୀଳା ହେବା ସଙ୍ଗେସଙ୍ଗେ ପରିବାରକୁ ପ୍ରତିପୋଷଣ କରିବାର ସାମର୍ଥ୍ୟ ଅର୍ଜନ କରି ସାରିଲାଣି।

ତଥାପି ଅଭିଭାବକମାନେ ଯେତେବେଳେ କନ୍ୟା ପାଇଁ ପାତ୍ର ନିର୍ବାଚନ କରନ୍ତି, କନ୍ୟାଠାରୁ ସବୁ ଗୁଣରେ ଅଧିକ ଯୋଗ୍ୟ ବରର ଅନୁସନ୍ଧାନ କରିଥାନ୍ତି। ଉଚ୍ଚତା, ଓଜନ ବ୍ୟତୀତ ଶିକ୍ଷା ଅଧିକ, ଚାକିରି ବଡ଼, ଦରମା ବେଶୀ, ଆଭିଜାତ୍ୟ ବି କମ୍ ହେବନାହିଁ। ରୂପ, ଗୁଣ, ବିଦ୍ୟା, ବୁଦ୍ଧି ଓ ଧନ ସମ୍ପତ୍ତି- କୌଣସି ଦିଗରେ ଝିଅଠାରୁ ପୁଅ ନ୍ୟୁନ ହେବନାହିଁ। ଆମ ଓଡ଼ିଆରେ ରୁଢ଼ିଟିଏ ବି ଅଛି- 'ଝିଅ ଦେବ ଉଚ୍ଚକୁ, ବୋହୂ ଆଣିବ ନୀଚରୁ।' କେହି ବିଚାର କରନ୍ତି ନାହିଁ ଯେ ଆମ ନିଜ ପରିବେଶଠାରୁ ସର୍ବ ଗୁଣରେ ଉଚ୍ଚ ପରିବେଶରେ ରହିଲେ ଝିଅଟି ସଂକୁଚିତ ହୋଇ ପଡ଼ିବ। ତା' ଉପରେ ଥିବା ମଣିଷମାନଙ୍କୁ ଭୟ କରିବ। ଯଦି ସେଠାରୁ ସ୍ନେହସିକ୍ତ, ସମବେଦନାପୂର୍ଣ୍ଣ ବ୍ୟବହାର ନ ପାଏ, ସେ ନ୍ୟୁନତାବୋଧର ଶିକାର ହୋଇ ଯନ୍ତ୍ରଣାରେ ସଢ଼ିଯିବ। ବାପ ଭାଇଙ୍କ ଅପମାନ ସହ୍ୟ କରି ପାରିବ ନାହିଁ। ତା' ପ୍ରତି ହେଉଥିବା ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ପାରିବ ନାହିଁ। ଅଭିଭାବକମାନେ ମଧ୍ୟ ଅସହାୟ ହୋଇ ପଡ଼ିବେ। ଏସବୁ ଆମ ସମାଜର ନିତି ଦେଖା ଘଟଣା। ରାତାରାତି ଝିଅକୁ ରାଜରାଣୀ କରି ଦେବାର ମୋହ କେତେ ଭୟଙ୍କର ସାବ୍ୟସ୍ତ ହୋଇଥାଏ, ତା'ର ଦୃଷ୍ଟାନ୍ତ ଆମ ପାଖରେ ବିରଳ ନୁହେଁ।

ପୁତ୍ର ସନ୍ତାନକୁ ପିତାମାତା ସକଳ ସାମର୍ଥ୍ୟ ଦେଇ ମଣିଷ କରନ୍ତି। ସେ ମଣିଷ ହୋଇ ପରିବାରର ସୁନାମ ଆଣିବ- ଏ ସ୍ୱପ୍ନ ସକଳ ପିତାମାତାଙ୍କର ଥାଏ। ମାତ୍ର କନ୍ୟା ସନ୍ତାନଟିକୁ ଉପଯୁକ୍ତ ପାତ୍ର ହାତରେ ଅର୍ପଣ କରିବା ଦିଗରେ ଆମେ ଯେତିକି ତତ୍ପରତା ପ୍ରକାଶ କରିଥାଉ, ତା'ର ଶିକ୍ଷାଦୀକ୍ଷା ଦିଗରେ ସେତିକି ଦୃଷ୍ଟି ଦେଇ ନଥାଉ। ସେଇ ପାତ୍ରଟି ଦ୍ୱାରା ଆମେ ଆମ ଝିଅର ଭାଗ୍ୟ ପରିବର୍ତ୍ତନ କରିବା ଓ ପରିବାରର ସୁନାମ ଓ ମର୍ଯ୍ୟାଦା ବୃଦ୍ଧି କରିବା ମାନସିକତାରେ ଥାଉ।

ଆଇଏଏସ୍ ପରୀକ୍ଷା ପାଇଁ ପ୍ରସ୍ତୁତିରେ ଥିବା ଝିଅଟିକୁ ଆଇଏଏସ୍ ବର ପାଇଲେ କନ୍ୟାଟିକୁ ତାକୁ ସମର୍ପି ଦେଇ ଆମେ ଆମ କର୍ତ୍ତବ୍ୟ ଶେଷ କରୁ। ବିବାହ ପରେ କ୍ୱଚିତ୍ ମହିଳା ଅଧ୍ୟୟନ ଓ ଅଧ୍ୟବସାୟ ଜାରି ରଖିବା ପରିଲକ୍ଷିତ ହୋଇଥାଏ। ପୁରୁଷଟିଏ ତା'ଠାରୁ ଅଧିକ ଯୋଗ୍ୟତାସମ୍ପନ୍ନ ନାରୀକୁ ବିବାହ କରିବାକୁ ଚାହେଁ ନାହିଁ। ଅଥଚ ନାରୀଟିଏ ତା'ଠାରୁ ଅଧିକ ଯୋଗ୍ୟତା ଥିବା ପୁରୁଷକୁ ପତି ରୂପରେ ଗ୍ରହଣ କରିବାକୁ ପସନ୍ଦ କରେ। ଏ ମାନସିକତା କାହିଁ କେତେ କାଳରୁ ଆମ ସମାଜରେ ବଳବତ୍ତର ଯେ ନାରୀର ଶକ୍ତି ସାମର୍ଥ୍ୟ ଥିବା ସତ୍ତ୍ୱେ ଅନେକ ସମୟରେ ପୁରୁଷକୁ ଆକୃଷ୍ଟ କରିବାକୁ ସେ ନିଜକୁ କୋମଳ, ଦୁର୍ବଳ ଓ ଅସମର୍ଥ ବୋଲି କହିଥାଏ। ପୁରୁଷର ସମବେଦନା

ପାଇବା ପାଇଁ ନିଜକୁ ଅସହାୟ ଓ କମ୍ ଶକ୍ତିସମ୍ପନ୍ନା ରୂପେ ପ୍ରଦର୍ଶନ କରିଥାଏ। ପୁରୁଷ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳା ହୋଇଥାଏ। ପୁରୁଷର ସକଳ ନ୍ୟାୟ ନିଷ୍ପତ୍ତିକୁ ଭାଗ୍ୟ ଭବିଷ୍ୟତ ବୋଲି ଗ୍ରହଣ କରି ମୁଣ୍ଡ ପାତି ସହି ନେଉଥାଏ ଓ ନିଜେ ନିର୍ଯାତିତା ହେବାର ପଥ ପରିଷ୍କାର କରିଦିଏ। ଏହାଦ୍ୱାରା ତା'ର ଆତ୍ମବିଶ୍ୱାସ ଦୁର୍ବଳ ହୋଇଥାଏ। ତା'ର ଦକ୍ଷତା, ପ୍ରତିଭା ପତିଗୃହରେ ଶ୍ମଶାନ ତୁଳସୀତୁଲ୍ୟ ହୋଇଥାଏ। ତା'ର ମୂଲ୍ୟ, ମହତ୍ତ୍ୱ କେହି ହୃଦ୍‌ବୋଧ କରନ୍ତି ନାହିଁ। ତାକୁ ଉପଯୁକ୍ତ ସମ୍ମାନ ମିଳେନାହିଁ। ଅଥଚ ଜ୍ୟେଷ୍ଠଠାରୁ କନିଷ୍ଠ ପର୍ଯ୍ୟନ୍ତ ସମସ୍ତଙ୍କୁ ମର୍ଯ୍ୟାଦା ଦେବାକୁ ସେ ବାଧ୍ୟ ହୋଇଥାଏ। ପରିବାରର ବଡ଼ ବଡ଼ କ୍ରିୟାନୁଷ୍ଠାନ ଓ ନ୍ୟାୟ ନିଷ୍ପତ୍ତିରେ ତାକୁ ଅପାଙ୍‌କ୍ତେୟ ରୂପେ ଗ୍ରହଣ କରାଯାଇଥାଏ। ସେଇଥିପାଇଁ ତ ପୂର୍ବେ ଶାଶୂଘରକୁ ଯମପୁର ଓ ଶାଶୂର ପିଲାମାନଙ୍କୁ ସାପର ପିଲା ବୋଲି କୁହା ଯାଉଥିଲା। ସମାଜରେ ନାରୀମାନଙ୍କ ପ୍ରତି ଅତ୍ୟାଚାର, ବିବାହ ବିଫଳତା, ଯୌତୁକ ପ୍ରଥା, କନ୍ୟା ପିତାମାତା ବର ପିତାଘର ବାଡ଼ି କନିସିରି ଶାଗ ସହ ଯୋଗ୍ୟ ନ ହେବାର ପ୍ରବାଦ ପ୍ରବଚନ ଏହି ମାନସିକତାରୁ ସୃଷ୍ଟି। ପୁରୁଷ ପାଖରେ ନାରୀଟି ସହଜଲବ୍ଧ ହେଉ ଥିବାରୁ ପରିବାର ବାହାରେ ସୁଦ୍ଧା ସେ ନାରୀମାନଙ୍କ ପ୍ରତି ହୀନ, ହେୟ ମନୋଭାବ ପୋଷଣ କରେ ଓ ରାସ୍ତାଘାଟ, ବଜାର ହାଟ କିମ୍ବା ନିର୍ଜନ ନିକାଞ୍ଚନରେ ନାରୀକୁ ଏକୁଟିଆ ପାଇଲେ ତା' ପ୍ରତି କାମନାସିକ୍ତ ହୋଇପଡ଼େ।

ମହିଳାମାନେ ଏବେ ଶାରୀରିକ ଓ ମାନସିକ ସ୍ତରରେ ବେଶ୍ ସମର୍ଥ। କେବଳ ପରିବାରର ଆଭ୍ୟନ୍ତରୀଣ ପରିଚାଳନା ନୁହେଁ, ପରିବାରକୁ ଆର୍ଥିକ ନିରାପତ୍ତା ଦେବାରେ ସେ ସକ୍ରିୟ ଭୂମିକା ଗ୍ରହଣ କରି ସାରିଲାଣି। ବିଦ୍ୟାଳୟ, ମହାବିଦ୍ୟାଳୟ ସ୍ତରରୁ ଝିଅମାନଙ୍କୁ ଆତ୍ମରକ୍ଷା କୌଶଳ ତାଲିମ୍ ଦିଆଯାଇ ନିଜକୁ ରକ୍ଷା କରିବା ସଙ୍ଗେସଙ୍ଗେ ଅନ୍ୟମାନଙ୍କୁ ଅସାମାଜିକ ବ୍ୟକ୍ତିଙ୍କ କବଳରୁ ସୁରକ୍ଷା ଦେବାର ସାମର୍ଥ୍ୟ ତାକୁ ପ୍ରଦାନ କରା ଗଲାଣି। ତଥାପି କାହିଁକି ଦାମ୍ପତ୍ୟ ଜୀବନ ପାଇଁ ଆମେ ନିଜଠାରୁ ଅଧିକ ସମର୍ଥ ପୁରୁଷଙ୍କୁ ଚୟନ କରିବା ? ଏହାଦ୍ୱାରା ଆମେ ପରୋକ୍ଷରେ ଏକ ଅସନ୍ତୁଳିତ ଜୀବନଧାରାକୁ ସ୍ୱାଗତ କରୁନାହେଁ କି ? ଯୁଗଯୁଗ ଧରି କୌଶଳରେ ପୁରୁଷମାନେ ନାରୀକୁ ଦୁର୍ବଳା ଅବଳା କହି ତା'ର ଆତ୍ମବିଶ୍ୱାସ କ୍ଷୁଣ୍ଣ କରୁଥିଲେ ଓ ତାକୁ ଆୟତ୍ତାଧୀନ କରି ନିଜକୁ ତା'ର ପ୍ରଭୁ ବା ସ୍ୱାମୀ ବୋଲାଉ ଥିଲେ। ଏବେ ସମୟ ଆସିଛି, ମହିଳାମାନେ ଜୀବନସାଥୀ ନିର୍ବାଚନ ବେଳେ ନିଜଠାରୁ ଅଧିକ ଯୋଗ୍ୟତାସମ୍ପନ୍ନ ବର ନିର୍ବାଚନ କରିବାର ପରମ୍ପରାରେ ପୂର୍ଣ୍ଣଚ୍ଛେଦ ପକାନ୍ତୁ। ନିଜ ପରି ଅଥବା ନିଜଠାରୁ କମ୍

ଯୋଗ୍ୟତାସମ୍ପନ୍ନ ବର ନିର୍ବାଚନଦ୍ୱାରା ବୋଧହୁଏ ସମାଜରୁ ନାରୀ ନିର୍ଯାତନା ଅନେକ ପରିମାଣରେ ହ୍ରାସ ହୁଅନ୍ତା। ଅଭିଭାବକମାନଙ୍କର ମଧ୍ୟ ଏଥିପ୍ରତି ସଚେତନ ହେବାର ଆବଶ୍ୟକତା ରହିଛି। ଋଣ କରି, ଘର ଡିହ ବିକି ଝିଅକୁ ପ୍ରତିଷ୍ଠିତ ଘରେ ବିବାହ ଦେବାର ପରିଣତି ସର୍ବଦା ଶୁଭ ଫଳ ଦେଇ ନଥାଏ। ଝିଅଘର ପିଣ୍ଡା ବାପା ପାଇଁ ଅପହଞ୍ଚ ହେଲେ ଝିଅର ଯନ୍ତ୍ରଣା ବହୁଗୁଣିତ ହୋଇଯିବ।

ଦାମ୍ପତ୍ୟ ଜୀବନରେ ନାରୀ ପୁରୁଷର ଅନୁଗାମିନୀ ହେବାର ଦିନ ଆଉ ନାହିଁ। ଅଗ୍ରଗାମିନୀ ହେବାର ମୋହ ମଧ୍ୟ ସମାଜ ପାଇଁ ଘାତକସିଦ୍ଧ। ପତ୍ନୀ ପତିର ଅଧସ୍ତନ ନୁହେଁ, ସହଗାମିନୀ ହେଉ। ଦୁହେଁ ଦୁହିଁଙ୍କର ସମାସ୍କନ୍ଦ ହେଲେ ଜୀବନ ରଥ ଅକ୍ଳେଶରେ ସକଳ ବାଧାବିଘ୍ନ ଏଡ଼ି ଆଗକୁ ଗଡ଼ି ଚାଲିବ। ଜୀବନସାଥୀଙ୍କୁ ପତି ପରମଗୁରୁ ଅଥବା ସ୍ୱାମୀ ଦେବତା ପରି ଶବ୍ଦ ପ୍ରୟୋଗ ନକରି ପରମ ବନ୍ଧୁ ରୂପେ ଗ୍ରହଣ·କଲେ ଦାମ୍ପତ୍ୟ ଜୀବନର ଅନେକ ସମସ୍ୟା ଆପେ ଦୂରୀଭୂତ ହୋଇଯିବ। ନାରୀ ନିର୍ଯାତନା, ବଧୂହତ୍ୟା, ବିବାହ ବିଫଳତା, ଛାଡ଼ପତ୍ର, ଭରଣପୋଷଣ ଆଦି ଅନେକ ଶବ୍ଦ ଅଭିଧାନରେ ଅଚଳ ହୋଇଯିବ।



# ଦୁଃଶୀଳ ମାତୃଦୋଷେଣ

ପିତା ହୁଅନ୍ତୁ କି ମାତା, ସନ୍ତାନଟିର ସଫଳତା କିମ୍ବା ସଦ୍‌ଗୁଣ ଦେଖିଲେ ଉଭୟ ଉଲ୍ଲସିତ ହୋଇ ବାହାବା ନେବାକୁ ଯାଇ କହନ୍ତି 'ପୁଅ କାହାର!' କିମ୍ବା 'ଝିଅ କାହାର!' କିନ୍ତୁ ସନ୍ତାନଟିର ବିଫଳତା କିମ୍ବା ଅବିଗୁଣରେ ପିତାମାତା ଦୁହେଁ ଦୁହିଁଙ୍କୁ ଦୋଷାରୋପ କରିବା ଆମର ବହୁ ଅଭିଜ୍ଞତାଲବ୍ଧ। ମଣିଷ ଶିଶୁଟିଏ ଭୂମିଷ୍ଠ ହେବା ପରଠୁ ଭୂମିରେ ମିଶିବା ପର୍ଯ୍ୟନ୍ତ ବିଭିନ୍ନ ପର୍ଯ୍ୟାୟ ଦେଇ ଗତି କରିଥାଏ। ତା' ବ୍ୟକ୍ତିତ୍ୱ ଗଠନ ଓ ଚାରିତ୍ରିକ ବିଶେଷତ୍ୱ ତା' ସହ ଅନ୍ତରଙ୍ଗ ହେଉଥିବା ମଣିଷମାନଙ୍କଦ୍ୱାରା ବହୁ ପରିମାଣରେ ପ୍ରଭାବିତ ହୋଇଥାଏ। ସେହି ଅନୁସାରେ ସେ ଗଢ଼ି ହୋଇଥାଏ। ଏ ପରିପ୍ରେକ୍ଷୀରେ ସଂସ୍କୃତରେ ଶ୍ଳୋକଟିଏ ଅଛି- 'ଦୁଃଶୀଳ ମାତୃ ଦୋଷେଣ ପିତୃଦୋଷେଣ ମୂର୍ଖତା / ସୈରତ୍ୱଂ ସଙ୍ଗ ଦୋଷେଣ ଜାରଦୋଷେଣ ଦରିଦ୍ରତା।' ବ୍ୟକ୍ତି ମାତୃଦୋଷରୁ ଖରାପ ସ୍ୱଭାବସମ୍ପନ୍ନ, ପିତୃଦୋଷରୁ ମୂର୍ଖ, ସାଙ୍ଗମାନଙ୍କ ଦୋଷରୁ ଉଶୃଙ୍ଖଳ ଓ ପତ୍ନୀ ଦୋଷରୁ ଦରିଦ୍ର ହୋଇଥାଏ। ଏଠାରେ ସ୍ୱାମୀ ଦୋଷରୁ ସ୍ତ୍ରୀର କ'ଣ ହୁଏ, ତାହା ଉଲ୍ଲେଖ ନାହିଁ। ଅବଶ୍ୟ ଆମ ଲୋକକବିମାନେ ଏହାକୁ ଛାଡ଼ି ନାହାନ୍ତି; ସେମାନେ କହିଛନ୍ତି- 'ଗେରସ୍ତ ଅଯୋଗ୍ୟ ପଣେ, ଭାରିଯା ଶୋଇଛି ଚାକୁଣ୍ଡା ବଣେ।' ସ୍ୱାମୀର ଅଯୋଗ୍ୟ ପଣ ହେତୁ ସ୍ତ୍ରୀର ଅସହାୟତା କଥା ଏଥିରେ ଉଲ୍ଲେଖ ରହିଛି।

ଶିଶୁଟିକୁ ମଣିଷ କରିବା ପାଇଁ ପୁରୁଷ ଅପେକ୍ଷା ନାରୀଟିର ଭୂମିକା ଅଧିକ ଅନୁଭୂତ ହୋଇଥାଏ। ଖୁଦ ମୁଠାକରେ ମା' ତା' ସନ୍ତାନକୁ ମଣିଷ କରିପାରେ; କିନ୍ତୁ ଟଙ୍କାସୁନା ଗଦା ଉପରେ ବି ବାପା ତାହା କରିପାରେ ନାହିଁ। ସେଇଥିପାଇଁ ତ କୁହାଯାଏ- ପୁତ୍ର କୁପୁତ୍ର ହୋଇପାରେ, କିନ୍ତୁ ମା' କେବେ କୁମାତା ହୋଇପାରେ ନା। ମନ୍ଦିରଟିଏ ନିର୍ମାଣ କରିବାକୁ ଯେତିକି ସାମର୍ଥ୍ୟ ଓ ସାଧନ ଲୋଡ଼ା ହୁଏ, ମଣିଷ ଶିଶୁଟିକୁ ଗଢ଼ିବା ପାଇଁ ତା'ଠାରୁ ଆହୁରି ଯଥେଷ୍ଟ ବେଶୀ ସଚେତନତାର ଆବଶ୍ୟକତା ରହିଛି। ମାଆର ସକଳ ତ୍ୟାଗ, ତିତିକ୍ଷା, ସାଧନା, ନିଷ୍ଠାର ମୂର୍ତ୍ତିମନ୍ତ ପ୍ରତିରୂପ ତା'ର ସନ୍ତାନ। ତା'ରି ତପସ୍ୟା ବଳରେ ସ୍ୱର୍ଗରୁ ଦେବପୁରୁଷ ଓହ୍ଲେଇ ଆସନ୍ତି- କେତେବେଳେ ସଂହାରକର୍ତ୍ତା ହୋଇ ତ ପୁଣି କେତେବେଳେ ଧର୍ମ ସଂସ୍ଥାପକ ହୋଇ।

ଯଦିଓ ପିତୃଗୁଣେ ପୁତ୍ର ଓ ମାତୃଗୁଣେ ଦୁହିତା ବୋଲି କୁହାଯାଏ, ତଥାପି ପୁତ୍ରକନ୍ୟା ଉଭୟ ମାଟି ପିଣ୍ଡୁଳା ମା' ହାତରେ ପରିପୂର୍ଣ୍ଣ ରୂପ ନିଅନ୍ତି। ଆମ ଦେଶରେ ତ ଏହା ଶତ ପ୍ରତିଶତ ସତ୍ୟ। ଏହାର ହେତୁ ମଧ୍ୟ ଅଯୌକ୍ତିକ ନୁହେଁ। ଭାରତ ପରି ବିକାଶଶୀଳ ରାଷ୍ଟ୍ରଟିରେ ନାରୀ ସ୍ୱାଧୀନତା ପାଇଁ ଯେତେ ସ୍ଲୋଗାନ୍ ଦିଆଗଲେ ବି, ଯେତେ ଆଇନ୍‌କାନୁନ୍ ପ୍ରଣୟନ ହେଲେ ସୁଦ୍ଧା ପୁରୁଷଙ୍କ ତୁଳନାରେ ବହୁତ କମ୍ ନାରୀ ଏରୁଣ୍ଡି ଡେଇଁ ଜୀବିକାର୍ଜନ ପାଇଁ ବାହାରକୁ ଯାଉଛନ୍ତି। ନିମ୍ନବିତ୍ତ ପରିବାରର ସ୍ତ୍ରୀଲୋକ ଜମିବାଡ଼ିରେ କାମ କଲାବେଳେ ସାଙ୍ଗରେ ଶିଶୁମାନଙ୍କୁ ନେବାର ଦୃଶ୍ୟ ପରିଲକ୍ଷିତ ହୁଏ। ପିତାମାତା ଉଭୟ କର୍ମଜୀବୀ ହୋଇଥିଲେ ଅଫିସ୍‌ରୁ ଫେରି ମା'କୁ ଶିଶୁର ଯତ୍ନ ନେବାକୁ ହୋଇଥାଏ। ଉଚ୍ଚ ଓ ମଧ୍ୟମ ବର୍ଗର ଅଧିକାଂଶ ପରିବାରରେ ମହିଳାମାନଙ୍କୁ ଚାକିରି କରିବାକୁ ଦିଆଯାଏ ନାହିଁ ଓ କରୁଥିବା ଚାକିରି ବି ସର୍ତ୍ତ ଅନୁସାରେ ବିବାହ ପରେ ଛାଡ଼ିବାକୁ ହୋଇଥାଏ। ଫଳରେ ପରିବାର ସମ୍ଭାଳିବା ସହ ଜନ୍ମିତ ସନ୍ତାନ ପାଇଁ ପର୍ଯ୍ୟାପ୍ତ ସମୟ ଦେବାର ଅବସର ସେମାନଙ୍କର ଥାଏ। ତା'ର ରୁଚି- ଅରୁଚି, ପ୍ରାପ୍ତି- ଅପ୍ରାପ୍ତି, ସ୍ୱପ୍ନ- କଳ୍ପନା ଓ ଆଶା- ଅଭିଳାଷକୁ ସେ ତା' ସନ୍ତାନ ଭିତରେ ପରିସ୍ଫୁଟନ କରିବାକୁ ଚାହେଁ। ମା'ର ଛୋଟିଆ ଭୁଲ୍‌ଟିଏ ସନ୍ତାନକୁ କେମିତି ପଥଭ୍ରଷ୍ଟ କରିଦିଏ, ଶୈଶବରୁ ଆମେ ସମସ୍ତେ ଶୁଣିଥିବା ସେଇ ଗପଟି କଥା ସମସ୍ତଙ୍କର ମନେ ଥିବ। ପିଲାଦିନୁ ଖଡ଼ି ସିଲଟ ଓ କାକୁଡ଼ି କଖାରୁ ଚୋରାଉଥିବା ପୁଅ ବଡ଼ ହେଲା ପରେ ବଡ଼ ଚୋରି କରି ପୁଲିସ୍ ହାତରେ ଧରା ପଡ଼ିଛି। ହାତକଡ଼ି ପଡ଼ି ଥାନାକୁ ଯିବାବେଳେ ମା'କୁ କଥାଟିଏ କହିବା ଆଳରେ ମା' କାନକୁ କାମୁଡ଼ି ଛିଣ୍ଡେଇ ତା'ର ଏ ଦୁର୍ଦ୍ଦଶା ପାଇଁ ମା' ଦାୟୀ ବୋଲି କହିଛି। ଏହି ଶିଶୁ ଗପଟିରେ କେତେ ବଡ଼ ମହାନ୍ ବାର୍ତ୍ତା ଯେ ଲୁଚି ରହିଛି, ଆମେ କେବେ ସେ ସମ୍ପର୍କରେ ଚିନ୍ତା କରୁନାହୁଁ।

'ମାତା ନିର୍ମାତା ଭବତି।' ଗଢ଼ିବା ଦାୟିତ୍ୱ ତା' ହାତରେ। ତା' ରୁଚିରେ ସେ ତା' ସନ୍ତାନକୁ ଗଢ଼େ। ଏସବୁ ଆଜିର କଥା ନୁହେଁ; ଆମ ବେଦ, ପୁରାଣ, ରାମାୟଣ, ମହାଭାରତର ତ ଏହା ହିଁ ଅସଲ ବାର୍ତ୍ତା। ବ୍ରାହ୍ମଣ ବିଶ୍ରବା ଋଷି ଓ ରାକ୍ଷସୀ ନିକଷାଙ୍କ ସନ୍ତାନ ଥିଲା ରାବଣ। ପିତାଙ୍କର ତପନିଷ୍ଠ ଜୀବନର ପ୍ରଭାବରେ ରାବଣ ଯେତିକି ଗଢ଼ିହେଲା ନାହିଁ, ସେତିକି ଗଢ଼ିହେଲା ରାକ୍ଷସୀ ମା'ର ଅନୁଚିତ ଅଭିଳାଷ ଆଧାରରେ। ଫଳରେ ପୃଥିବୀର ଦୁର୍ଭାଗ୍ୟ ଏତେ ବଢ଼ିଗଲା ଯେ ସ୍ୱୟଂ ଭଗବାନଙ୍କୁ ମର୍ତ୍ତ୍ୟରେ ଅବତରଣ କରିବାକୁ ହେଲା। ଆହୁରି ମଧ୍ୟ ରାକ୍ଷସ ପିତା ହିରଣ୍ୟକଶିପୁ ଓ ଧର୍ମପରାୟଣା ମାଆ କୟାଦୁଙ୍କର ସନ୍ତାନ ଥିଲା ପ୍ରହଲ୍ଲାଦ। ପିତାଙ୍କ ଆସୁରିକ ପ୍ରଭାବରୁ ସନ୍ତାନକୁ

ରକ୍ଷା କରିବା ପାଇଁ କୟାଦୁ ନିଜ ଜୀବନକୁ ବାଜି ଲଗେଇ ଦେଇଥିଲେ। ଶେଷରେ ସେୟା ହିଁ ହେଲା। ଉତ୍ତମ ବିଷ୍ଣୁଭକ୍ତ ପୁତ୍ରର ନିଷ୍ଠା ବିଷ୍ଣୁଙ୍କୁ ଅବତାର ଗ୍ରହଣ କରିବା ପାଇଁ ବାଧ୍ୟ କରିଥିଲା। ଅନ୍ଧ ସ୍ୱାମୀଙ୍କୁ ସମ୍ମାନ ଜଣେଇ ଚକ୍ଷୁରେ ଅନ୍ଧପଟ୍ଟିକା ବାନ୍ଧି ଗାନ୍ଧାରୀ ନିଜକୁ ସତୀସାଧ୍ୱୀ ବୋଲି ପ୍ରମାଣିତ କରିଛନ୍ତି ସତ, କିନ୍ତୁ ଅନ୍ଧପଟ୍ଟିକା ବାନ୍ଧିବା ଦ୍ୱାରା ସନ୍ତାନମାନଙ୍କର ଉପଯୁକ୍ତ ଦାୟିତ୍ୱ ନ ନେବାରୁ ସେମାନେ ଯେପରି ବିପଥଗାମୀ ହୋଇ ଧ୍ୱଂସର ଆବାହନୀ ତୋଳିଲେ, ସେଥିପାଇଁ ଇତିହାସ ତାଙ୍କୁ କ୍ଷମା ଦେଇନାହିଁ। ଅଥଚ ପାଣ୍ଡବ ପାଞ୍ଚଭାଇ ପିତୃହରା ହେବା ସତ୍ତ୍ୱେ ମାଆର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସମସ୍ତେ ସୁଶୀଳ, ନ୍ୟାୟବନ୍ତ ଓ ଧର୍ମ ରକ୍ଷାକାରୀ ହୋଇ ପାରିଥିଲେ। ସେଇ ମହାଭାରତରୁ ଆଉ ଗୋଟିଏ ଉଦାହରଣ। ଅର୍ଜୁନଙ୍କଠାରୁ ଚକ୍ରବ୍ୟୂହ ଭେଦ ରହସ୍ୟ ଶୁଣୁଶୁଣୁ ସୁଭଦ୍ରା ଅଧାରୁ ନିଦ୍ରା ଯାଇଥିଲେ। ଗର୍ଭସ୍ଥ ଶିଶୁ ଅଭିମନ୍ୟୁଙ୍କର ସେଇ ଅଧା ଜ୍ଞାନର ପରିଣତି କିପରି ଭୟାବହ ହୋଇଥିଲା, ସେ ସମ୍ପର୍କରେ ସମସ୍ତେ ଅବଗତ। ଉପାଖ୍ୟାନଟିରେ କେତେ ବାସ୍ତବତା ରହିଛି ତାହା ତ ଭିନ୍ନ ପ୍ରସଙ୍ଗ, କିନ୍ତୁ ମାଆର ଦାୟିତ୍ୱହୀନତା ଯେ ସନ୍ତାନର ଦୁର୍ଭାଗ୍ୟର ହେତୁ ହୋଇପଡ଼େ, ଏହା ତ ଏ ଉପାଖ୍ୟାନର ସାଙ୍କେତିକ ସ୍ୱରୂପ।

ଯୁଗ ବଦଳିଛି। ପ୍ରତି ମୁହୂର୍ତ୍ତରେ ସଭ୍ୟତା ଓ ସଂସ୍କୃତିର ଉତ୍କର୍ଷ ହୋଇ ଚାଲିଛି। ଗୋଟାଏ ମୁହୂର୍ତ୍ତର ସିଦ୍ଧାନ୍ତ ପର ମୁହୂର୍ତ୍ତରେ ଅସିଦ୍ଧ ପ୍ରମାଣିତ ହୋଇଛି। ପୁଣି ଗୋଟାଏ ନୂଆ ସିଦ୍ଧାନ୍ତ ତା ସ୍ଥାନ ନେଉଛି। ଏ ପ୍ରକ୍ରିୟା ଚାଲିଥିବ ଯାବତ୍ ଚନ୍ଦ୍ରାର୍କେ। କିନ୍ତୁ ମାତୃତ୍ୱ ଆଦିମ ଯୁଗରେ ଯାହା ଯେମିତି ଥିଲା, ଏବେ ବି ଠିକ୍ ସେମିତି ରହିଛି। ସେ ସଂଜ୍ଞା ସ୍ୱରୂପରେ କୌଣସି ପରିବର୍ତ୍ତନ ହୋଇନାହିଁ। ଇତର ପ୍ରାଣୀଙ୍କ ମାତୃତ୍ୱକୁ ପ୍ରବୃତ୍ତି କୁହାଯାଇପାରେ। କାରଣ ଶିଶୁଟି ନିଜ ଆହାର ଯୋଗାଡ଼ କରିବାକୁ ସକ୍ଷମ ହେବା ପରେ ପ୍ରାଣୀମାନଙ୍କର ମାତୃତ୍ୱ ଭୂମିକା ଶେଷ ହୋଇଯାଏ। ମଣିଷ କ୍ଷେତ୍ରରେ ସେୟା ହୁଏନାହିଁ। ମା'ଟିଏ ଶେଷନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ନିଜ ସୁଖ ସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରି ସନ୍ତାନର ସୁଖ କାମନା କରିଥାଏ। ବ୍ୟକ୍ତିତ୍ୱସମ୍ପନ୍ନା, ସାଧ୍ୱୀ, ନୀତି ପରାୟଣାଙ୍କ କୋଳରେ ହିଁ ମହାମାନବମାନେ ଜନ୍ମ ନିଅନ୍ତି। ଶ୍ରୀକୃଷ୍ଣଙ୍କ ପରି ମହାନାୟକ ହୁଅନ୍ତୁ ଅଥବା ମହାତ୍ମା ଗାନ୍ଧୀଙ୍କ ପରି ମହାପୁରୁଷ, ସେଥିପାଇଁ ଦେବକୀ ଓ ପୁତୁଳୀବାଈଙ୍କ ପରି ମହୀୟସୀଙ୍କ ତପଃସିଦ୍ଧ ଓ ନୀତିନିଷ୍ଠ କୋଳର ଯେ ଆବଶ୍ୟକତା ରହିଛି, ଏହା କେହି ଅସ୍ୱୀକାର କରିପାରିବେ ନାହିଁ। ନାରୀକୁ ଅବଳା ଦୁର୍ବଳା କହି ଯେଉଁମାନେ ଉପହାସ କରୁଛନ୍ତି, ସେମାନଙ୍କୁ ବୁଝାଇ କହିବା ଆବଶ୍ୟକ ନାହିଁ ଯେ ସନ୍ତାନ ଧାରଣ,

ତା'ର ଲାଳନପାଳନ, ମଣିଷ କରିବାର ସାମର୍ଥ୍ୟ ପୁରୁଷର ନାହିଁ ବୋଲି ଈଶ୍ୱର ନାରୀକୁ ଏହି ଗୁରୁ ଦାୟିତ୍ୱ ଦେଇଛନ୍ତି। କିନ୍ତୁ ଦୁଃଖର ସହ କହିବାକୁ ପଡୁଛି, ଆଜିର ଅନେକ ମହିଳା ନିଜର ସାମର୍ଥ୍ୟକୁ ଅର୍ଥ ଉପାର୍ଜନ ଓ ପୁରୁଷ ସହ ସମକକ୍ଷ ହେବାପାଇଁ ଯେତିକି ଅପଚୟ କରୁଛନ୍ତି, ତା'ଠାରୁ କମ୍ ସମୟ ଦେଉଛନ୍ତି ସନ୍ତାନକୁ ମଣିଷ କରିବାରେ। ବିବେକାନନ୍ଦ କହୁଥିଲେ- ମତେ କେତେଜଣ ଶିକ୍ଷିତା ମା' ଦିଅ। ମୁଁ ଭାରତର ସବୁ ଦୁର୍ଦ୍ଦଶା ଦୂର କରିଦେବି। ଶିକ୍ଷିତ ମା' ଅର୍ଥ ରୋଜଗାର କରି ଭାରତର ଆର୍ଥିକ ସ୍ଥିତି ସ୍ୱଚ୍ଛଳ କରିବା ଉଦ୍ଦେଶ୍ୟରେ ସେ କହୁ ନଥିଲେ। ଶିକ୍ଷିତ ମା' ଉତ୍ତମ ନାଗରିକ ସମାଜକୁ ଦେଇ ତା'ର ରୂପରେଖ ବଦଳେଇ ଦେବା ଉଦ୍ଦେଶ୍ୟରେ ସେ ଏହା କହୁଥିଲେ।

ଏବେ କୁବେର ରାଷ୍ଟ୍ର ଆମେରିକାର ମହିଳାମାନଙ୍କ ମଧ୍ୟରେ ଏକ ବିଚିତ୍ର ପ୍ରବଣତା ପରିଲକ୍ଷିତ ହେଉଛି। ସେମାନେ ଅର୍ଥ ପାଇଁ ବାହାରେ କର୍ମଜୀବୀ ହେବାପାଇଁ ଚାହୁଁ ନାହାନ୍ତି। ଭାରତୀୟ ମହିଳାମାନଙ୍କ ପରି ପରିବାରମୁଖୀ ହେବାକୁ ପସନ୍ଦ କରୁଛନ୍ତି। ଆମେରିକାର ଅର୍ଥନୀତିକୁ ଏହା ପ୍ରଭାବିତ କରିବା ଆଶଙ୍କାରେ ସେମାନଙ୍କୁ ପୁନର୍ବାର କାର୍ଯ୍ୟକ୍ଷେତ୍ରକୁ ଫେରିଯିବା ପାଇଁ ପ୍ରୋତ୍ସାହନ ଦିଆଯାଉଛି। ଆମ ମହିଳାମାନଙ୍କୁ ଅର୍ଥ ଉପାର୍ଜନ ଅଥବା ଚାକିରି କରିବା ପାଇଁ ନିରୁତ୍ସାହିତ କରାଯାଉ ନାହିଁ। କିନ୍ତୁ ସନ୍ତାନକୁ ଉପଯୁକ୍ତ ମଣିଷ କରିବା ନାରୀର ସର୍ବପ୍ରଥମ, ସର୍ବଶ୍ରେଷ୍ଠ ଓ ସର୍ବଶେଷ କର୍ତ୍ତବ୍ୟ। ଏଥିରେ ହିଁ ରହିଛି ନାରୀର ସାର୍ଥକତା; ମାତୃତ୍ୱର ମହନୀୟତା। ସାଂପ୍ରତିକ ସମାଜରେ ନାନାବିଧ ବିଶୃଙ୍ଖଳା, ଅପ୍ରାପ୍ତ ବୟସ୍କଙ୍କ ଅପରାଧ, ପ୍ରାପ୍ତବୟସ୍କଙ୍କ ଦୁର୍ନୀତି ପରାୟଣତା, ହିଂସାବାଦ, ପରଶ୍ରୀକାତରତା ଆଦି ସମାଜ ବିଧ୍ୱଂସୀ ସକଳ ସମସ୍ୟାର ସହଜ ସମାଧାନ ରହିଛି ଏଥିରେ।



# ମାଣ୍ଡିଆ ରାଣୀ ଉପାଖ୍ୟାନ

ମାଣ୍ଡିଆ ରାଣୀ ରାଇଜ ଛାଡ଼ି ଚାଲି ଯାଉଥିଲା ଅଭିମାନରେ। ତାକୁ ସଭିଏଁ କାଳି, ଗେଡ଼ି, ଅସୁନ୍ଦରୀ କହି ନାକ ଟେକୁଥିଲେ। କେହି ଭଲ ପାଉନଥିଲେ। ସମସ୍ତେ ଭଲ ପାଉଥିଲେ ଧାନକୁ କେତେ ସୁନ୍ଦର ଧାନରାଣୀ! କେତେ ଢଙ୍ଗର, କେତେ ବାଗର। ଗୋରୀ, ଶ୍ୟାମଳୀ, କାଳି, ନାଲି। କିଏ ଡେଙ୍ଗୀ ତ କିଏ ଗେଡ଼ି। ପୁଣି କିଏ ଗୁଣ୍ଠୁଣୀ ହାତୀ ପରି ଗୋଲ ମଟୋଲ। ପୁଣି କିଏ କଳାଜିରା ପରି ସରୁ ସରୁ। ସମସ୍ତେ ମୋହିତ ହେଉଥିଲେ ଧାନର ରୂପରେ ଗୁଣରେ। ତାକୁ ନେଇ ବେପାର ବଣିଜ କରୁଥିଲେ। ଖଣି ପକେଇ ରଖୁଥିଲେ। ଅମାରରେ ସାଇତି ରଖୁଥିଲେ। ବର ଓଳିଆରେ ରଖୁଥିଲେ। ଯାହା ପାଖରେ ବେଶୀ ଧାନ ଥିଲା, ତାକୁ କହୁଥିଲେ ଧନୀ। ମାଣ୍ଡିଆ ରାଣୀଙ୍କୁ ବାସି ପାଣିରେ କେହି ଘେନା କରୁନଥିଲେ। ଦାସୀ ପୋଇଲି ପରି ସେ ଚଳୁଥିଲା। ଦିନେ ଅଭିମାନରେ ସେ ଉଆସ ଛାଡ଼ି ଚାଲିଗଲା। ଲକ୍ଷ୍ମୀ ଠାକୁରାଣୀ ତା ବାଟ ଓଗାଳିଲେ। 'କୁଆଡ଼େ ଯାଉଛୁ ଲୋ ମାଣ୍ଡିଆ ରାଣୀ ?'- ଲକ୍ଷ୍ମୀ ଠାକୁରାଣୀ ପଚାରିଲେ। ମାଣ୍ଡିଆ ରାଣୀର ଆଖିରେ ଲୁହ ଭର୍ତ୍ତି। ସେ ସୁଁ ସୁଁ ହେଇ କାନ୍ଦିଲା। ଲୁହ ପୋଛି କହିଲା- 'ମୁଁ ଆଉ ଏ ରାଇଜରେ ରହିବି ନାହିଁ ମାଆ ଠାକୁରାଣୀ। ମୋତେ କେହି ଆଦର କରୁ ନାହାନ୍ତି। କାଳି, ଅସୁନ୍ଦରୀ କହି ଥଟ୍ଟା କରୁଛନ୍ତି। ଦାସୀ ପୋଇଲି ପରି ମୁଁ ପଡ଼ି ରହିଛି। ଥାନ ଦେଇଛି ସାଆନ୍ତାଣୀ।' ପୁଣି ଭରିଗଲା ମାଣ୍ଡିଆ ରାଣୀ ଆଖିରେ ଲୁହ। ଏଥର ଲକ୍ଷ୍ମୀ ଠାକୁରାଣୀ ତା ଲୁହ ପୋଛିଦେଲେ। ତା ହାତ ଧରି କହିଲେ, 'ତିରିଲା ମଣିଷଟା, କୁଆଡ଼େ ଯିବୁ? ଆ ମୋ ସାଙ୍ଗରେ।' ମାଣ୍ଡିଆ ରାଣୀ ରହିଲା ଲକ୍ଷ୍ମୀ ଠାକୁରାଣୀଙ୍କ ପାଖରେ।

କିଛିଦିନ ଗଲା। ଲକ୍ଷ୍ମୀ ଠାକୁରାଣୀ ମୁହଁ ମୋଡ଼ିଦେଲେ। ଦେଶରେ ପଡ଼ିଲା ଅକାଳ। ବର୍ଷା ହେଲାନାହିଁ। ଜମିର ଧାନଗଛ ସବୁ ସେମିତି ଠିଆ ଜଳିଗଲେ। ମାଟି ଫାଟି ଆଁ କଲା। ଲୋକେ ଆକାଶକୁ ଚାହିଁ ହାୟ ହାୟ କଲେ। ସଞ୍ଚି ରଖିଥିବା ଧାନସବୁ ସରି ଆସିଲା। ଏଥର ଚେତା ପଶିଲା; ଖୋଜା ପଡ଼ିଲା ମାଣ୍ଡିଆ ରାଣୀକୁ। ମାଣ୍ଡିଆ ରାଣୀ ଉଆସରେ ନଥିଲା। ଲୋକେ ହତାଶ ହେଲେ। ମାଣ୍ଡିଆ ରାଣୀ ତ ଧାନ ରାଣୀ ପରି ଅଳସୀ ବିଳାସୀ ନୁହେଁ ଯେ ସେ ଗଜଦନ୍ତ ପଲଙ୍କରେ ଅଳସ ଭାଙ୍ଗୁଥିବ ! ସିଏ ଅଭାବୀ, ଦୁଃଖୀ, ଭୋକିଲଙ୍କ, ରୋଗୀଙ୍କର ସାଥୀ; ଗରିବର ମାଆବାପ। ତେବେ ଏମିତି ଅକାଳରେ

ସେ ଗଲା କୁଆଡ଼େ ? ଚଢ଼େଇ ଚିରୁଗୁଣୀଙ୍କ ପେଟ ବୁଝିବା ଲୋକ ସିଏ। ଏଇ ନିଅଣ୍ଟିଆ ବେଳେ ସେ ଥିଲେ କେତେ ସାହା ଭରସା ହୋଇଥାନ୍ତା ସତରେ !

ସେତିକିବେଳେ ମାଣ୍ଡିଆ ରାଣୀକି ସାଙ୍ଗରେ ଧରି ଲକ୍ଷ୍ମୀ ଠାକୁରାଣୀ ଆସିଲେ। ଆଗରୁ ତାକୁ ଅନାଦର, ଅବହେଳା କରୁଥିବା ଗର୍ବୀ, ଅହଙ୍କାରୀମାନଙ୍କୁ ଧିକ୍କାରିଲେ। ମାଣ୍ଡିଆ ରାଣୀ ସାଙ୍ଗରେ ଥିଲେ ତମମାନଙ୍କର ଅଭାବ ଅନଟନ ହେବନାହିଁ। ଧାନ ବି ସରିବ ନାହିଁ ଘରୁ। ପାଏ ଚାଉଳରେ ମାଣ୍ଡିଆ ପାଏ ମିଶାଇ ଦେଲେ ବଉଁଶଯାକ ଖାଇଲେ ବୋହିଲେ ବି ହାଣ୍ଡି ଖାଲିହେବ ନାହିଁ। ସକାଳୁ ସକାଳୁ ମାଣ୍ଡିଆ ପେଜ ଟିକେ ପିଇଦେଲେ ଦିନସାରା ଭାତ ନ ଖାଇଲେ ବି ଚଳିଯିବ। ଧାନ ପରି ମାଣ୍ଡିଆରୁ ବି ହେବ ଭଳିକି ଭଳି ଖାଦ୍ୟ। ମାଣ୍ଡିଆ ଜାଉ, ମାଣ୍ଡିଆ ତମ୍ପା, ମାଣ୍ଡିଆ ଛତୁଆ, ରୋଟି, ଚକୁଳି ସବୁକିଛି। ଡିପ, ଢାଲୁ, ଡଙ୍ଗର, ଉର୍ବର, ଅନୁର୍ବର, ପାଣିଆ, ଅପାଣିଆ- ସବୁଠି ସେ ଫଳିବ। ପ୍ରଜାମାନେ ଆପଣେଇ ନେଲେ ମାଣ୍ଡିଆ ରାଣୀକୁ। ଦୁର୍ଭିକ୍ଷ ବାଧିଲାନି। ମାଣ୍ଡିଆ ରାଣୀ ସବୁ ସମ୍ଭାଳି ନେଲା। ସେଇ ଦିନଠୁ ତ ବଣ ଡଙ୍ଗର ଅଧିବାସୀ, ଗରିବ ଗୁରୁବାଙ୍କର ମାଣ୍ଡିଆ ହେଲା ପ୍ରିୟ ଖାଦ୍ୟ।

ଆଦିବାସୀ ସମାଜରେ ପ୍ରଚଳିତ ଏହା ଏକ ସୁନ୍ଦର ଲୋକକଥା। ଅଭାବୀ ଜନତା ପାଇଁ ସନ୍ତୁଳିତ ଆହାରର କଥା କୁହେ। ମାଣ୍ଡିଆ କେବଳ ଖାଦ୍ୟ ସୁରକ୍ଷା ଦିଏନାହିଁ, କେତେକ ରୋଗବ୍ୟାଧି ପାଇଁ ମଧ୍ୟ ରକ୍ଷା କବଚ ପରି କାମ କରିଥାଏ। କୋଲେଷ୍ଟ୍ରଲମୁକ୍ତ ଏହି ଶସ୍ୟଟି ଡାଇବେଟିସ୍, ରକ୍ତଚାପ, ମେଦ ବହୁଳତା ପାଇଁ ଅବ୍ୟର୍ଥ ପଥ୍ୟ। ଯେଉଁମାନେ ଖାଦ୍ୟରେ ମାଣ୍ଡିଆକୁ ପ୍ରାଧାନ୍ୟ ଦେଇଥାନ୍ତି, ସ୍ୱତଃ ସେମାନେ ପ୍ରକୃତିଦତ୍ତ ଗୁଡ଼ାଏ ରୋଗ ପ୍ରତିଷେଧକ ଶକ୍ତି ଆହରଣ କରିପାରନ୍ତି। ମାଣ୍ଡିଆରେ ବହୁବିଧ ପୋଷକତତ୍ତ୍ୱ ଥିବାରୁ କେବଳ ଆମ ରାଜ୍ୟରେ ନୁହେଁ, ଅନ୍ୟ ରାଜ୍ୟମାନଙ୍କରେ ଏହାକୁ ମର୍ଯ୍ୟାଦାର ସହ ସ୍ୱୀକୃତି ଦିଆଯାଏ। ଉତ୍ତରାଖଣ୍ଡରେ ମାଣ୍ଡିଆକୁ କୁହାଯାଏ 'ବାର୍‌ନାଯା' ଅର୍ଥାତ୍ ୧୨ଟି ଶସ୍ୟ। ରାଜସ୍ଥାନରେ ଏହାକୁ 'ସାତ୍‌ଧାନ' କୁହା ଯାଉଥିବା ବେଳେ କର୍ଣ୍ଣାଟକରେ 'ନଉ ଧନିଆ' ଅର୍ଥାତ୍ ନଅଟି ଶସ୍ୟ ଓ ଆନ୍ଧ୍ରରେ ଏହାକୁ 'ପନ୍ନେଣ୍ଡୁ ପାନ୍ତାଲୁ' ଅର୍ଥାତ୍ ବାରଟି ଶସ୍ୟ ବୋଲି କୁହାଯାଏ। ଗୋଟିଏ ଶସ୍ୟରେ ଏତେ ପ୍ରକାର ଶସ୍ୟର ପୋଷକତତ୍ତ୍ୱ ଥିବାରୁ ଗରିବମାନଙ୍କ ପାଇଁ ଏହା ପ୍ରକୃତିଦତ୍ତ ବରଦାନ। ଏବେ ମାଣ୍ଡିଆ ଆଉ ଗରିବଙ୍କ ଖାଦ୍ୟ ହୋଇ ରହିନାହିଁ। ଏହା ଧନୀକ ବର୍ଗର ପଥ୍ୟ ଓ ସୌଖୀନ୍ ଖାଦ୍ୟ ରୂପେ ବ୍ୟବହୃତ ହେଲାଣି। ଫୁଡ୍ ପ୍ଲାଜାମାନଙ୍କରେ ମାଣ୍ଡିଆଦ୍ୱାରା ପ୍ରସ୍ତୁତ ଖାଦ୍ୟ ଉପଲବ୍ଧ ହେଲାଣି। ପରିବେଶବିତ୍ ବନ୍ଦନା ଶିବା ମାଣ୍ଡିଆଦ୍ୱାରା ବିଭିନ୍ନ ପ୍ରକାରର ଖାଦ୍ୟ ପ୍ରସ୍ତୁତି ସମ୍ପର୍କରେ ଏକ ପୁସ୍ତକ ରଚନା କରିଛନ୍ତି। ବଜାରରେ ମାଣ୍ଡିଆ କୃଷିଜାତ ଦ୍ରବ୍ୟର

ଚାହିଦା ଏବେ ବଢୁଛି। କିନ୍ତୁ ନିମ୍ନବିତ୍ତମାନଙ୍କ ମଧ୍ୟରେ ମାଣ୍ଡିଆର ଚାହିଦା କମି କମି ଆସୁଛି। ଯେଉଁ ଆଦିବାସୀ ସମାଜରେ ପାଣିର ବିକଳ୍ପ ଥିଲା ମାଣ୍ଡିଆ ପେଜ; ଖାଦ୍ୟ ଖାଇ ସାରିବା ପରେ ପାଣି ବଦଳରେ ମାଣ୍ଡିଆ ପେଜ ପିଉଥିଲେ, ଦୂର ଦୂରାନ୍ତରକୁ ଗଲେ ଲାଉତୁମ୍ୱା କିମ୍ବା ଆଲୁମିନିୟମ ପାତ୍ରରେ ମାଣ୍ଡିଆ ପେଜ ଧରି ଯାଉଥିଲେ, ଏବେ ତାହା କମି ଆସୁଛି। ସରକାରଙ୍କର ଟଙ୍କିକିଆ ଚାଉଳ କିମ୍ବା ଅନ୍ତ୍ୟୋଦୟ ଯୋଜନାରେ ସେମାନଙ୍କୁ ଯଥେଷ୍ଟ ପରିମାଣରେ ଚାଉଳ ମିଳୁଛି। କ୍ଷୁଧା ନିବାରଣ ପାଇଁ ସେମାନେ ଆଉ ଆମ୍ବ ଟାକୁଆ, ତେନ୍ତୁଳି ମଞ୍ଜି, ବଣର ଫଳମୂଳ, କନ୍ଦା ଆଦିର ସାହାରା ନେଉ ନାହାନ୍ତି। ଏହା ଅବଶ୍ୟ ରାଜ୍ୟର ସମୃଦ୍ଧିର ସୂଚକ। କିନ୍ତୁ ରୋଗବ୍ୟାଧିର ରକ୍ଷା କବଚ ମାଣ୍ଡିଆ ପରି ଏକ ପୁଷ୍ଟି ବର୍ଦ୍ଧନକାରୀ ଶସ୍ୟକୁ ଅନାଦର, ଉପେକ୍ଷା କରିବା ଦ୍ୱାରା ମାନବ ସମାଜର ପ୍ରଭୂତ କ୍ଷତି ସାଧନ ହେଉଛି। କେବଳ ମାଣ୍ଡିଆ ନୁହେଁ, ଆଦିବାସୀମାନଙ୍କ ପାରମ୍ପରିକ ଖାଦ୍ୟଶସ୍ୟ କାଙ୍ଗୁ, କୋଦ, କଟିଂ, କାନ୍ଦୁଲ, ଅଳସୀ, କୋଳଥ, ବାଇଲ ଆଦି ଧୀରେଧୀରେ ଡୁବିବାକୁ ବସଲାଣି। ତା ସ୍ଥାନରେ ଆଧୁନିକ ପ୍ରଣାଳୀରେ ସେମାନେ ଯେଉଁ ଚାଷ କରୁଛନ୍ତି, ତାହା ସ୍ଥାନୀୟ ଲୋକଙ୍କ ଖାଦ୍ୟ ପାଇଁ ଉଦ୍ଦିଷ୍ଟ ହେଉନାହିଁ। ଅତିଶୟ ରାସାୟନିକ ସାର ଓ କୀଟନାଶକ ପ୍ରୟୋଗ ଦ୍ୱାରା ଦୁଇ ତିନିବର୍ଷରେ ମାଟି ବନ୍ଧ୍ୟା ହୋଇଯାଉଛି। ଏବେ ନବରଙ୍ଗପୁର ଅଞ୍ଚଳରେ ଲୋକେ ମକା ଲଗାଇ କ୍ଷତି ସହିବା ପରେ ଜମିରେ ନୀଳଗିରି ଲଗାଇବା ଆରମ୍ଭ କରି ଦେଲେଣି।

ସବୁଠାରୁ କ୍ଷୋଭର କଥା, ସର୍ବନିମ୍ନ ଖତସାର ପ୍ରୟୋଗରେ ସର୍ବାଧିକ ଅମଳ ହେଉଥିବା ମାଣ୍ଡିଆ ଚାଷ ପାଇଁ ସରକାରୀ କିମ୍ବା ବେସରକାରୀ ସ୍ତରରେ କାହାରିଠାରୁ ପ୍ରୋତ୍ସାହନ ମିଳୁନାହିଁ। ଏପରିକି ଏକଦା ଆଦିବାସୀମାନଙ୍କର ମୁଖ୍ୟ ଖାଦ୍ୟ ଥିବା ମାଣ୍ଡିଆ ସାଧାରଣ ବଣ୍ଟନ ବ୍ୟବସ୍ଥାରେ ଅନ୍ତର୍ଭୁକ୍ତ ହେଉନାହିଁ। ଯେଉଁ ଖାଦ୍ୟ ସେମାନଙ୍କ କ୍ଷୁଧା ଚରିତାର୍ଥ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଏକ ସୁରକ୍ଷା ବଳୟ ଦେଉଥିଲା, ତାହା ଏବେ ସେମାନଙ୍କଠାରୁ ଦୂରକୁ ନିଆଯାଉଛି। ଯାହା ଯେଉଁଠି କାଁ ଭାଁ ମାଣ୍ଡିଆ ଚାଷ ହେଉଛି, ତାହା ଧନୀକମାନଙ୍କ ପାଖକୁ ଚାଲିଯାଉଛି। ପ୍ରକୃତିଦତ୍ତ ଆଶୀର୍ବାଦରୁ ପ୍ରକୃତିର ସନ୍ତାନମାନେ ବଞ୍ଚିତ ହେଉଛନ୍ତି।

ମାଣ୍ଡିଆ ରାଣୀକୁ ସମ୍ମାନ ଦିଆଯାଉ। ତା ପାଇଁ ସମସ୍ତଙ୍କ ଦ୍ୱାର ଉନ୍ମୁକ୍ତ ହେଉ। ମଣିଷକୁ ସୁସ୍ଥ ଓ ନିରାମୟ ରଖୁଥିବା ଏହି ଖାଦ୍ୟଶସ୍ୟକୁ ବିଶ୍ୱରୁ କେତେକ ପ୍ରାଣୀ ପ୍ରଜାତି ଲୁପ୍ତ ହେଲା ପରି ଲୁପ୍ତ ହେବାକୁ ଦିଆନଯାଉ।



# କାଷ୍ଟିଂ କାଉଚ୍

କାଷ୍ଟିଂ କାଉଚ୍ ଶବ୍ଦ ଭାରତୀୟ ଅଭିଧାନରେ ନାହିଁ। ଏହା ଆମ ପାଇଁ ସମ୍ପୂର୍ଣ୍ଣ ନୂଆ ଶବ୍ଦଟିଏ। ଆମ ପ୍ରାଚୀନ ପରମ୍ପରାରେ ନାରୀମାନେ ଏରୁଣ୍ଡି ଡେଇଁ ବାହାରେ ଚାକିରି କରିବାକୁ ଯାଉନଥିଲେ। ଜୀବିକା ନିର୍ବାହ ପାଇଁ ଯେଉଁ ନାରୀମାନେ ବାହାରକୁ ଯାଉଥିଲେ, ସେମାନେ କାହା ଅଧୀନରେ ନଥିଲେ। ତେଲ, ମୁଢ଼ି, ଚୂଡ଼ା, କ୍ଷୀର, ଦହି, ମାଛ ଆଦି ବିକୁଥିବା ନିମ୍ନ ବର୍ଗର ସ୍ତ୍ରୀଲୋକମାନେ କେବଳ କୌଳିକ ବୃତ୍ତି ହିଁ କରୁଥିଲେ। ତେଣୁ ଜୀବିକା ପାଇଁ ସେମାନେ ଯୌନ ଶୋଷଣର ଶିକାର ହେବାର ପ୍ରଶ୍ନ ନଥିଲା। ଅସହାୟ ନାରୀମାନେ ରାଜା, ଜମିଦାର ଅଥବା ଖାନ୍‌ଦାନୀ ଘରମାନଙ୍କରେ ଦାସୀ, ପୋଇଲି, ପରିଚାରିକା ଭାବରେ ଥଇଥାନ ହେଉଥିଲେ। ସେମାନେ ଉଆସର ମହିଳାମାନଙ୍କ ସହ ଅନ୍ତଃପୁରରେ ରହୁଥିଲେ। ନାରୀମାନେ ଥିଲେ ସେମାନଙ୍କର ମାଲିକାଣୀ। ଅବସ୍ଥାଚକ୍ରରେ ପଡ଼ି ପାଣ୍ଡବ ପତ୍ନୀ ଦ୍ରୌପଦୀଙ୍କୁ ମଧ୍ୟ ବିରାଟ ରାଜାଙ୍କ ରାଣୀ ଅନ୍ତଃପୁରରେ ସୈରିନ୍ଧ୍ରୀ ରୂପରେ ବଞ୍ଚିବାକୁ ହୋଇଥିଲା। ତାଙ୍କ ଉପରେ ଲୋଲୁପ ଦୃଷ୍ଟି ପକାଇ କୀଚକ ପାଇଥିଲା ଶାସ୍ତି। ଘଟଣାଚକ୍ରରେ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀର ଦାସୀ ହୋଇ ବୃଷପର୍ବା ରାଜାଙ୍କ କନ୍ୟା ରାଜକୁମାରୀ ଶର୍ମିଷ୍ଠା ଯଯାତିଙ୍କ ରାଜପ୍ରାସାଦକୁ ଯାଇଥିଲା। କୌଣସି ପରିସ୍ଥିତିରେ ଶର୍ମିଷ୍ଠା ସହ ଯଯାତିଙ୍କୁ ପ୍ରେମ ସମ୍ପର୍କ ନରଖିବା ପାଇଁ ସତର୍କ କରି ଦେଇଥିଲେ ଶୁକ୍ରାଚାର୍ଯ୍ୟ। କିନ୍ତୁ ଯଯାତି ସଂଯମତା ରକ୍ଷା କରି ନପାରି ଶର୍ମିଷ୍ଠା ସହ ଶାରୀରିକ ସମ୍ପର୍କ ସ୍ଥାପନ କରିଥିଲେ ଓ ଶର୍ମିଷ୍ଠା ପୁତ୍ର ସନ୍ତାନର ଜନନୀ ମଧ୍ୟ ହୋଇଥିଲା। ପରିଣତିରେ ପୂର୍ବ ସର୍ତ୍ତ ଅନୁସାରେ ଯଯାତି ଅକାଳ ବାର୍ଦ୍ଧକ୍ୟର ଶିକାର ହୋଇଥିଲେ। ରାଜଅନ୍ତଃପୁରରେ ଯେଉଁ ନିରାଶ୍ରୟାମାନେ ଆଶ୍ରୟ ନେଇଥାନ୍ତି, ସେମାନେ ଯଦି ଗୃହ ମାଲିକ କିମ୍ବା ଗୃହସ୍ଥଙ୍କ ପୁତ୍ରମାନଙ୍କର ପ୍ରେମପାତ୍ରୀ ହେଉଥିଲେ, ତେବେ ସେମାନଙ୍କ ଜୀବନ ସାର୍ଥକ ହୋଇ ଯାଉଥିଲା। ଏହାକୁ ସେମାନେ ସୌଭାଗ୍ୟ ରୂପେ ଗ୍ରହଣ କରୁଥିଲେ। ଅଶୋକ ଓ ରାଜା ପୁରୁଷୋତ୍ତମ ଦେବଙ୍କ ପରି ବେଳେ ବେଳେ ଦାସୀ ଗର୍ଭର ସନ୍ତାନମାନଙ୍କୁ ରାଜଗାଦି ପ୍ରାପ୍ତ ପରି ସୌଭାଗ୍ୟ ମଧ୍ୟ ମିଳୁଥିଲା। ଜୀବନ ଜୀବିକା ପାଇଁ ସେମାନଙ୍କୁ ଯୌନ ନିର୍ଯାତନା ଦିଆଯାଉ ନଥିଲା। ଏ ପ୍ରକାର ସାମାଜିକ ରୀତିନୀତିରେ ଅସହାୟା ନିରାଶ୍ରୟାମାନେ

ଗୋଟିଏ ସ୍ଥିର ଓ ଶୃଙ୍ଖଳିତ ଜୀବନ ପାଉଥିଲେ।

ଯୁଗୀୟ ଆବଶ୍ୟକତାରେ ସାମ୍ପ୍ରତିକ ସବୁ ବର୍ଗର ନାରୀମାନେ ସରକାରୀ ଓ ବେସରକାରୀ କ୍ଷେତ୍ରରେ ପୁରୁଷ ଅଧିକାରୀଙ୍କ ଅଧୀନରେ ଜୀବିକା ନିର୍ବାହ କରୁଛନ୍ତି। ଉପରିସ୍ଥ ଅଧିକାରୀମାନେ ମହିଳାମାନଙ୍କୁ ଚାକିରି ଦେବା, ଚାକିରିରେ ପ୍ରମୋସନ ଦେବା କିମ୍ବା ଅନ୍ୟାନ୍ୟ କିଛି ସ୍ୱତନ୍ତ୍ର ସୁବିଧା ଯୋଗାଇ ଦେବାର ପ୍ରଲୋଭନ ଦେଖାଇ ଯୌନ ଶୋଷଣ କରିବା ପରି ଅଣପାରମ୍ପରିକ ଅପସଂସ୍କୃତିଟିଏ ଏବେ ଆମ ସମାଜ ଭିତରକୁ ପଶି ଆସିଛି। ଏହାକୁ ସାମ୍ପ୍ରତିକ ପରିଭାଷାରେ କୁହାଯାଉଛି କାଷ୍ଟିଂ କାଉଚ୍। ସିନେମା, ଟିଭି ଧାରାବାହିକ, ଡ୍ରାମା, ଅପେରା ଆଦି ମନୋରଞ୍ଜନ କ୍ଷେତ୍ରରେ ଏହାର ବହୁଳ ପ୍ରୟୋଗ ହେଉଛି। ପୂର୍ବରୁ ମହିଳାମାନଙ୍କର ଏ କ୍ଷେତ୍ରରେ ପ୍ରବେଶ ନିଷେଧ ଥିଲା। ପୁରୁଷମାନେ ନାଟକରେ ମହିଳାମାନଙ୍କ ଭୂମିକା ନିର୍ବାହ କରୁଥିଲେ। ଏପରିକି ସେକ୍ସପିୟରଙ୍କ ଡ୍ରାମାମାନଙ୍କରେ ସୁଦ୍ଧା ପୁରୁଷମାନେ ନାରୀ ଭୂମିକାରେ ଅବତୀର୍ଣ୍ଣ ହେଉଥିଲେ। ତେଣୁ କାଷ୍ଟିଂ କାଉଚ୍ ପରି ଅବାଞ୍ଛିତ ଶବ୍ଦ ଓ ସମସ୍ୟାର ଉତ୍ପତ୍ତି ହୋଇ ନଥିଲା। ପ୍ରଥମେ ହଲିଉଡ୍‌ରେ ୧୯୯୧ରେ କାଷ୍ଟିଂ କାଉଚ୍‌ର ଅଭିଯୋଗ ଆସିଲା। ଓସ୍କାର୍ ବିଜେତା ପ୍ରଯୋଜକ ଜୁଲିଆ ଫିଲିପ୍ସ ତାଙ୍କ ପୁସ୍ତକ 'ୟୁ ନେଭର୍ ଇଟ୍ ଲଞ୍ଚ୍ ଇନ୍ ଦିସ୍ ଟାଉନ୍'ରେ ହଲିଉଡ୍‌ରେ କାଷ୍ଟିଂ କାଉଚ୍ ମାନସିକତା ପ୍ରସଙ୍ଗରେ ଉଲ୍ଲେଖ କରିଥିଲେ। ୧୯୯୫ରେ ପିଟ୍‌ର୍ କେଫ୍ ହଲିଉଡ୍ ସହର ପ୍ରତି ବିଷୋଦ୍‌ଗାର କରି କହିଥିଲେ, ଏଠାରେ ସମସ୍ତେ ଭାଗ୍ୟ, ଭବିଷ୍ୟତ ଓ ପ୍ରତିଷ୍ଠା ଅର୍ଜନ ପାଇଁ ଶରୀର ଓ ଆତ୍ମା ସହ ସଉଦା କରନ୍ତି। ନାରୀମାନଙ୍କୁ ସମ୍ପୂର୍ଣ୍ଣ ରୂପେ ପଣ୍ୟବସ୍ତୁ (କମୋଡିଟି) ରୂପେ ଗ୍ରହଣ କରାଯାଇଥାଏ। ଅଭିନେତା କ୍ରିସ୍ ହାନ୍‌ଲେ ତାଙ୍କର ଜଣେ ସହପାଠୀକୁ କହିଥିଲେ- ସେ ଅଭିନୟ କରିଥିବା ୨୪ଟିଯାକ ଛବିର ନାୟିକାମାନେ ନିର୍ଦ୍ଦେଶକ ଓ ପ୍ରଯୋଜକମାନଙ୍କର ଶଯ୍ୟା ସଙ୍ଗିନୀ ହୋଇଥିଲେ। ୨୦୦୭ରେ ଅଭିନେତ୍ରୀ ହେଲେନ୍ ମିରେନ୍ ଅଭିଯୋଗ କରିଥିଲେ ତାଙ୍କୁ ତାଙ୍କ ନିର୍ଦ୍ଦେଶକ ମାଂସ ଖଣ୍ଡେ (ଏ ପିସ୍ ଅଫ୍ ମିଟ୍) ପରି ବ୍ୟବହାର କରୁଥିଲେ। ୨୦୦୯ରେ ଜଣେ କୋରିଆନ୍ ଅଭିନେତ୍ରୀ ଜାଂ ଜା ୟେନ୍ କାଷ୍ଟିଂ କାଉଚ୍‌ରେ ପୀଡ଼ିତ ହୋଇ ଆତ୍ମହତ୍ୟା କରିଥିଲେ। ତାଙ୍କ ମୃତ୍ୟୁକାଳୀନ ବୟାନରେ ସେ ସ୍ପଷ୍ଟ କରିଥିଲେ ଯେ ଜଣେ ଏଜେଣ୍ଟଙ୍କ ଜରିଆରେ ତାଙ୍କୁ ତାଙ୍କ ନିର୍ଦ୍ଦେଶକଙ୍କ ସହ ଯୌନ ସମ୍ପର୍କ ରଖିବାକୁ ବାଧ କରାଯାଇଥିଲା। ଏଥିରେ ସେ ଅମତ ହେବାରୁ ତାଙ୍କୁ ପ୍ରହାର ମଧ କରାଯାଇଥିଲା।

ଆମ ଚଳଚ୍ଚିତ୍ର ଶିଳ୍ପରେ କାଷ୍ଟିଂ କାଉଚ୍ ପ୍ରଥମେ ନଜରକୁ ଆସିଥିଲା ୨୦୦୪ରେ। ପ୍ରୀତି ଜୈନ୍ ମଧୁର ଭଣ୍ଡାର୍କରଙ୍କ ବିରୁଦ୍ଧରେ ଏହି ଅଭିଯୋଗ ଆଣିଥିଲେ। ଟିଭି ଧାରାବାହିକ ଇଣ୍ଡିଆସ୍ ମୋଷ୍ଟ ଓ୍ୱାଣ୍ଟେଡ୍‌ର କର୍ମକର୍ତ୍ତାମାନେ ଷ୍ଟିଙ୍ଗ୍ ଅପରେସନ୍ ଦ୍ୱାରା ଟିଭି ଧାରାବାହିକ ଇଣ୍ଡିଆନ୍ ଆଇଡଲ୍‌ର ଅମନ୍ ବର୍ମା ଓ ଶକ୍ତି କାପୁରଙ୍କଠୁ ବହୁ ତଥ୍ୟ ହାସଲ କରିଥିଲେ। ସୁଭାଷ ଘାଇ, ଯଶ୍ ଚୋପ୍ରା ଓ ଯଶ୍ ଜୋହର ଆଦି ଏଥିରେ ବହୁ ଚର୍ଚ୍ଚିତ ହୋଇଥିଲେ। ଐଶ୍ୱର୍ଯ୍ୟା ରାୟ, ପ୍ରୀତି ଜିଣ୍ଟା, ରାନୀ ମୁଖାର୍ଜୀ ଏହି ଚର୍ଚ୍ଚାରେ ସାମିଲ ଥିଲେ। ବାହାର ରାଷ୍ଟ୍ର ପରି ଭାରତର ନାରୀମାନଙ୍କ ପ୍ରତି ହେଉଥିବା ବହୁ ଯୌନ ଅପରାଧ ବାହାରକୁ ଆସେନାହିଁ। ସ୍ୱାଭିମାନ ଥିବା ଅଭିନେତ୍ରୀମାନେ ଆତ୍ମହତ୍ୟା କରିଥାନ୍ତି। ସେ ଆତ୍ମହତ୍ୟାର ରହସ୍ୟ ମଧ୍ୟ ଉନ୍ମୋଚନ ହୋଇପାରେ ନାହିଁ।

ସିନେମା ଦୁନିଆ ଏଭଳି ଏକ କ୍ଷେତ୍ର, ଯେଉଁଠାରେ ଶାରୀରିକ ସୌନ୍ଦର୍ଯ୍ୟ, ବେଶ ବିନ୍ୟାସ, ଅଭିନୟ କଳା, ନୃତ୍ୟଗୀତ ଆଦି ଏହାର ପରିସର। କାର୍ଯ୍ୟ କରିବାର ସମୟ, ସୁଟିଂ, ରିହର୍‌ସାଲ୍ ପାଇଁ ଦିନ ଓ ରାତିକୁ ଏକାକାର କରାଯାଇଥାଏ। କେତେକ ପୁରୁଷ ଏହାର ଦୁରୁପଯୋଗ କରିଥାନ୍ତି। ଏହି ଅପବାଦ ହେତୁ ପୂର୍ବରୁ ଭଲ ଘରର ଝିଅ ବୋହୂମାନେ ଏ ଜଗତକୁ ଆସୁନଥିଲେ। ଆର୍ଥିକ ଚାପରେ ଆସୁଥିବା ମହିଳାମାନଙ୍କର ପ୍ରତିବାଦ କରିବାର ନିର୍ଭୀକତା ନଥିଲା। ଏବେ ଯୁଗ ବଦଳିଛି। ସବୁ ବର୍ଗର ମହିଳାମାନେ ଏ କ୍ଷେତ୍ରରେ କ୍ୟାରିଅର୍ ଗଢ଼ିବା ପାଇଁ ତୀବ୍ର ପ୍ରତିଯୋଗିତା କରୁଛନ୍ତି। ପରିସ୍ଥିତିର ଫାଇଦା ଉଠାଉଛନ୍ତି ଅନୈତିକ ପୁରୁଷମାନେ। ନିରୀହାମାନେ ବଳି ପଡୁଛନ୍ତି। ଦୁର୍ବଳମାନେ ପୀଡ଼ିତ ହେଉଛନ୍ତି।

ଏବେ ପରିବର୍ତ୍ତିତ ଯୁଗୀୟ ଚେତନାରେ ନୀତି, ଆଦର୍ଶ, ମୂଲ୍ୟବୋଧ ଅପେକ୍ଷା ଭୋଗସର୍ବସ୍ୱ ଜୀବନର ମୂଲ୍ୟ ବେଶୀ। ଏଥିପାଇଁ ନିର୍ଲଜ ଭାବରେ ମଣିଷ ସବୁ ସାମାଜିକ ଲକ୍ଷ୍ମଣ ରେଖାକୁ ଅତିକ୍ରମ କରି ଯାଇଛି। ଶୋଷଣ, କଷଣ, ପ୍ରତାରଣା, ପ୍ରତିହିଂସାର ମାତ୍ରା ସୀମାତିରିକ୍ତ ହୋଇଛି। ଦେହ ଭୋଗ କାମନାରେ ଏ ଯୁଗର ମଣିଷ ଏତେ ଜର୍ଜରିତ ହୋଇ ପଡ଼ିଛନ୍ତି ଯେ ସବୁ ପ୍ରକାର ସାମାଜିକ ଶୃଙ୍ଖଳାକୁ ଭଙ୍ଗ କରିବାକୁ ଯେମିତି ସେ ପଣ କରି ବସିଛି। ଯୌନ୍ ବିଶୃଙ୍ଖଳା ଏବେ ମଣିଷ ପାଇଁ ଏକ ଅନିବାର୍ଯ୍ୟ ସମସ୍ୟା ହୋଇ ଠିଆ ହୋଇଛି। କିନ୍ତୁ ଆଶ୍ୱାସନାର କଥା, ଯେଉଁ ପରିମାଣରେ ଏ ଘୃଣ୍ୟ ମାନସିକତା ସମାଜରେ ପକ୍ଷ ବିସ୍ତାର କରୁଛି, ତା'ର ଅନ୍ତ ମଧ୍ୟ ସେହିପରି ହେଉଛି। କେତେ ପ୍ରତିପତ୍ତିସମ୍ପନ୍ନ କାମନା ଜର୍ଜରିତ ମଣିଷର ବିଳାସ ସାମ୍ରାଜ୍ୟ ମୁହୂର୍ତ୍ତକରେ ଭୁଶୁଡ଼ି ପଡୁଛି। ସାମାଜିକ ଶୃଙ୍ଖଳା ପାଇଁ ଗୋଟାଏ ବିବର୍ତ୍ତନୀ ଶକ୍ତି ଯେ

ତୀବ୍ର ଭାବରେ ସକ୍ରିୟ ରହିଛି, ଏହା ଆମ ସମସ୍ତଙ୍କର ଅନୁଭବ ହେଲାଣି।

କଳା କ୍ଷେତ୍ର ଏକ ପବିତ୍ର କ୍ଷେତ୍ର। ଏହା ଦେବୀ ସରସ୍ୱତୀଙ୍କ ଆବାସ ସ୍ଥଳ। ଦେବତାମାନଙ୍କୁ ଆରାଧନା ପାଇଁ ଆମେ କଳାର ମାଧ୍ୟମ ନେଉ। କଳାକାରର ପ୍ରତିଭା ବିଭୂଦତ୍ତ ପ୍ରତିଭା। ସେ କ୍ଷେତ୍ର ଆଉ ଅପବିତ୍ର ନହେଉ। କାଷ୍ଟିଂ କାଉଚ୍ ଶବ୍ଦ ଆମ ଅଭିଧାନରେ ପ୍ରବେଶ କରିବା ପୂର୍ବରୁ ନିଶ୍ଚିହ୍ନ ହୋଇଯାଉ। ଆମ ମହିଳାମାନେ ଏବେ ବହୁ ପରିମାଣରେ ନିର୍ଭୀକ ହେଲେଣି। ପୁରୁଷ ଦ୍ୱାରା ଯୌନ ନିର୍ଯାତିତା ହେଲେ ଝିଅଟି ଯେ ପତିତା ହୋଇଗଲା, ତା'ର ସମାଜିକ ମର୍ଯ୍ୟାଦା କ୍ଷୁଣ୍ଣ ହେଲା- ଏ ମାନସିକତା ଧୀରେଧୀରେ ପରିବର୍ତ୍ତନ ହେଲାଣି। କେବଳ କାଷ୍ଟିଂ କାଉଚ୍ ନୁହେଁ, ଅନ୍ୟ ଯେ କୌଣସି କ୍ଷେତ୍ରରେ ମହିଳାମାନେ ତାଙ୍କ ପ୍ରତି ହେଉଥିବା ଯୌନ ନିର୍ଯାତନାର ମୁକ୍ତ ପ୍ରତିବାଦ କରି ଶିଖିଲେଣି। ଏହା ନିଶ୍ଚୟ ଆମ ପରମ୍ପରା ପ୍ରପୀଡ଼ିତ ସମାଜ ପାଇଁ ଶୁଭ ଲକ୍ଷଣ। ନାରୀ ଆଦୌ ଅର୍ଥଶାସ୍ତ୍ର ଅନୁମୋଦିତ ପଣ୍ୟବସ୍ତୁ ନୁହେଁ। ତା'ର ସ୍ୱାଭିମାନ ଅଛି; ସମ୍ମାନ ଅଛି, ମର୍ଯ୍ୟାଦା ଅଛି। ମୁକ୍ତ ଓ ନିରାପଦ ଭାବରେ ଜୀବିକା ନିର୍ବାହ କରିବାର ଅଧିକାର ଅଛି। ଏଥିରେ ଯେଉଁମାନେ ବ୍ୟତିକ୍ରମ ସୃଷ୍ଟି କରିବେ, ସେମାନଙ୍କୁ ସମୟ ଆଦୌ କ୍ଷମା ଦେବନାହିଁ।



# ଗଣଦେବତା ଓ ଗଣ ଅସନ୍ତୋଷ

ଶ୍ରୀଜଗନ୍ନାଥଙ୍କର ନୀଳାଦ୍ରି ବିଜେ ସରିଛି । ଘୋଷଯାତ୍ରା ସାରି ସେ ଭାଇଭଉଣୀଙ୍କ ସହ ଫେରି ଯାଇଛନ୍ତି ରତ୍ନ ସିଂହାସନକୁ । ଦୀର୍ଘଦିନ ଧରି ଚାଲୁ ରହିଥିବା ତର୍କ ବିତର୍କ ଓ ବାଦ ବିସମ୍ବାଦ ତାଙ୍କ ଭାବ ସାଗରରେ ଲୀନ ହୋଇଛି । ସେ ଦେବତା ହିଁ ତ ସେମିତି । ସେ ସବୁ ଯୁକ୍ତିତର୍କର ଊର୍ଦ୍ଧ୍ୱରେ । ସକଳ ବାଦ ବିବାଦ, ମତ ଅମତ ତାଙ୍କର ଉଦାର ମତବାଦ ଭିତରେ ହଜି ଯାଆନ୍ତି । ପୁରାଣ, ପରମ୍ପରା, ଇତିହାସ, ଐତିହ୍ୟ, ସୀମା ସରହଦ ତାଙ୍କୁ ବାନ୍ଧିପାରେ ନାହିଁ । ଉଚ୍ଚ- ନୀଚ, ସ୍ପୃଶ୍ୟ- ଅସ୍ପୃଶ୍ୟ ବାଦ ବିବାଦର ମେଘନାଦ ପାଚେରୀ ଡେଇଁ ସେ ବାହାରକୁ ବାହାରି ଆସନ୍ତି- କେତେବେଳେ ଲୁଚିଛପି ତ କେତେବେଳେ ରାଜଦାଣ୍ଡରେ । ସେ ରାଜାର ଯେତିକି, ରଙ୍କର ସେତିକି । ପବିତ୍ରର ଯେତିକି, ପତିତର ସେତିକି । ପାପୀର ଯେତିକି, ପୁଣ୍ୟବନ୍ତର ସେତିକି । ପ୍ରେମୀର ଯେତିକି, ଅପ୍ରେମୀର ସେତିକି । ଭକ୍ତର ଯେତିକି, ଅଭକ୍ତର ସେତିକି । ତାଙ୍କ ପାଖରୁ କେହି ଶୂନ୍ୟହସ୍ତରେ ଫେରିଆସେ ନାହିଁ । ତାଙ୍କୁ ରତ୍ନ ସିଂହାସନରେ ଦର୍ଶନ କଲେ ଯେତିକି ପୂଣ୍ୟ ଅର୍ଜନ ହୁଏ; ଧୂଳି ଧୂସରିତ ଶରଧାବାଲିରେ ରଥ ଉପରେ ଦର୍ଶନ କଲେ ତା'ଠାରୁ ଅଧିକ ପୁଣ୍ୟ ମିଳେ । ତାଙ୍କ ସଂସ୍କୃତି କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁରେ ଅଟକି ଯାଇ ନାହିଁ । ସେହି ସଂସ୍କୃତିର ମହାପ୍ରବାହ ଭିତରେ ଅନେକ ବିବର୍ତ୍ତନ ହୋଇଛି । ଜଗନ୍ନାଥଙ୍କ ଭାବ ବହନ କରି ଯେଉଁ ମହାପୁରୁଷମାନେ ଏ ମାଟିରେ ପାଦ ଦେଇଛନ୍ତି, ସେମାନଙ୍କ ମତବାଦକୁ ଏ କ୍ଷେତ୍ର ଆପଣାର କରିଛି । ଶଙ୍କରାଚାର୍ଯ୍ୟ, ନିମ୍ବାର୍କ, ରାମାନୁଜ, ବଲ୍ଲଭାଚାର୍ଯ୍ୟ, ଶ୍ରୀଚୈତନ୍ୟଙ୍କ ପରି ଜ୍ଞାନୀଗୁଣୀଙ୍କ ପ୍ରବର୍ତ୍ତିତ ନୀତିକାନ୍ତି ଜଗନ୍ନାଥଙ୍କ ସଂସ୍କୃତି ସହ ଯୋଡ଼ିହୋଇ ଯାଇଛି । ଦାସିଆ ବାଉରୀ, କରମା ବାଈ, ସାଲବେଗ, ବନ୍ଧୁ ମହାନ୍ତି, ପତିତ ବଳରାମ ଦାସ- ସମସ୍ତଙ୍କୁ ମର୍ଯ୍ୟାଦା ଦେବାପାଇଁ ଅଡ଼ି ବସିଛନ୍ତି ଭାବ ବିନୋଦିଆ ଶ୍ରୀଜଗନ୍ନାଥ । ଅଛବର ଜାଉଥାଳି ମଝିରେ ଶାଗ ମେଞ୍ଚାକରେ ଚକାଆଖି ଉଭା ହୋଇଛନ୍ତି । ସ୍ନାନ ଶୌଚ ନ ହୋଇ, ଅଇଁଣ୍ଠା ଦାନ୍ତକାଠିରେ ଘାଣ୍ଟି କରମା ବାଈ ପ୍ରସ୍ତୁତ କରୁଥିବା ଖେଚୁଡ଼ି ପାଇଁ ଜଗନ୍ନାଥଙ୍କର ଥାଏ ଲୋଭ । ଲୁଚିଛପି ପହଞ୍ଚି ଯାଆନ୍ତି ତା ପାଖରେ । ଏମିତି ଅବିଧିରେ ଜଗତର ନାଥଙ୍କୁ ନୈବେଦ୍ୟ ଦେଉଥିବାରୁ ବଡ଼ପଣ୍ଡାମାନେ କରମା ବାଈକୁ ଦଣ୍ଡିତ କରନ୍ତି । କାଳିଆ ସାଆନ୍ତ ରୁଷନ୍ତି ।

ସୁବର୍ଣ୍ଣ ଥାଳିରୁ ୬୪ ପ୍ରକାର ସ୍ୱାଦିଷ୍ଟ ବ୍ୟଞ୍ଜନକୁ ଆଘ୍ରାଣ ସୁଦ୍ଧା କରନ୍ତି ନାହିଁ। ଶେଷରେ ଭକ୍ତର ଜୟ ହୁଏ। ସେଇ ସ୍ମୃତିରେ ଏବେ ସୁଦ୍ଧା ବର୍ଷରେ ଥରେ ଶ୍ରୀମନ୍ଦିରରେ କରମା ଖେଚୁଡ଼ି ଲାଗି ହୁଏ। କରମା ବାଈ ପରି ଅଶୌଚ, ଅବିଧିରେ ଖେଚୁଡ଼ି ପ୍ରସ୍ତୁତ ହୁଏ। ଶରୀରରେ ସମ୍ଭୋଗର ଚିହ୍ନ ବହନ କରି ରଥ ଉପରେ ଚଢ଼ିଥିବା ବଳରାମ ଦାସଙ୍କୁ ସେବାୟତମାନେ ତଡ଼ି ଦିଅନ୍ତି ରଥରୁ। ସେ ଅଭିମାନରେ ବାଙ୍କି ମୁହାଣରେ ବାଲିରଥ ତିଆରି କରି ବାନ୍ଧି ରଖନ୍ତି କାଳିଆ ସାଆନ୍ତଙ୍କୁ। ଭାବ ସମୁଦ୍ରରେ ନିମଗ୍ନ ହୋଇ ସେ କେବଳ ଗାଳି ହିଁ ଦେଇଛନ୍ତି ଜଗନ୍ନାଥଙ୍କୁ। ଭାବଗ୍ରାହୀ ପ୍ରଭୁ ନନ୍ଦିଘୋଷ ଛାଡ଼ି ଉଭା ହୁଅନ୍ତି ବଳରାମ ଦାସଙ୍କ ବାଲିରଥରେ। ବଡ଼ଦାଣ୍ଡରେ ଅଟକି ଯାଏ ରଥ।

ଶାସ୍ତ୍ରୀୟ ସିଦ୍ଧାନ୍ତ ବଦଳରେ ଜନଶ୍ରୁତି କିମ୍ବା କିମ୍ବଦନ୍ତୀରେ ବେଶ୍ ବଶ ହୋଇଛନ୍ତି ବଳିଆର ଭୁଜ। ଶାସ୍ତ୍ରୀୟ ଶୁଚିମନ୍ତତାର ଦ୍ୱାହି ଦେଇ ଭଗବାନଙ୍କୁ ଭକ୍ତ ପାଖରୁ କେହି ଅଲଗା କରିପାରିବେ ନାହିଁ। ସେ ଗଣଦେବତା। ମୁଷ୍ଟିମେୟଙ୍କ ଆଧିପତ୍ୟକୁ ସେ ସହ୍ୟ କରିପାରନ୍ତି ନାହିଁ ବୋଲି ତ ବର୍ଷରେ ଥରେ ଭକ୍ତମାନଙ୍କ ସହ ଅନ୍ତରଙ୍ଗ ହେବାକୁ ସେ ଓହ୍ଲେଇ ଆସନ୍ତି ରାଜରାସ୍ତାକୁ। ଭକ୍ତର ଭାବ ସମୁଦ୍ରରେ ବୁଡ଼ ଦେବାପାଇଁ ସେ ଆତୁର ହୋଇ ପଡ଼ନ୍ତି। ପହଣ୍ଡି ପିଣ୍ଡିରୁ ରଥ ଉପରକୁ ଭକ୍ତମାନେ ଯେମିତି ତାକୁ କାନ୍ଧେଇ, କୁଣ୍ଢେଇ ଉଠେଇ ନିଅନ୍ତି, ମନେହୁଏ ଭାବ ବିନୋଦିଆ ଏସବୁକୁ ମନଭରି ଉପଭୋଗ କରୁଛନ୍ତି; ନିଜ ଇଚ୍ଛାରେ ଭକ୍ତମାନଙ୍କ ଦେହରେ ଘଷି ମାଜି ହେଉଛନ୍ତି। ଭକ୍ତ ଯେମିତି ଭଗବାନଙ୍କୁ ସ୍ପର୍ଶ କରି ଶିହରିତ ହୁଏ, ଭଗବାନଙ୍କ ବି ସେମିତି ହୋଇ ପଡ଼ନ୍ତି ଭକ୍ତର ସ୍ପର୍ଶରେ। କୌଣସି ଶାସ୍ତ୍ରୀୟ ଶୃଙ୍ଖଳା, ନୀତି ନିୟମ ଏଠି କାମ କରେନାହିଁ।

ଯୁଗୀୟ ଆବଶ୍ୟକତାକୁ ଏଡ଼ାଇ ହୁଏନାହିଁ। ବିଶ୍ୱାବସୁ ଶବରର ଗୋପନ ଗୁମ୍ଫାରୁ ସ୍ୱଇଚ୍ଛାରେ ଶ୍ରୀକ୍ଷେତ୍ରରେ ଉଭା ହୋଇଥିବା ଜଗନ୍ନାଥଙ୍କ ଦର୍ଶନ ଓ ସ୍ପର୍ଶ ପାଇଁ ପ୍ରଥମରୁ କାଇଦା କଟକଣା ନଥିଲା। ଏସବୁ ମଧ୍ୟଯୁଗର ଅନୁଶାସନ। ଶ୍ରୀଜଗନ୍ନାଥଙ୍କ ରତ୍ନ ଭଣ୍ଡାର ଉପରେ ଲୋଲୁପ ଦୃଷ୍ଟି ଥିଲା ମୋଗଲମାନଙ୍କର। ଅପରାଜେୟ ଓଡ଼ିଆ ଜାତିକୁ ପରାଜିତ କରିବାର କୌଶଳ ସେମାନେ ଭଲ ଭାବରେ ଜାଣିଥିଲେ। ଓଡ଼ିଆଙ୍କ ପ୍ରାଣବିନ୍ଦୁ ଜଗନ୍ନାଥଙ୍କୁ କରାୟତ୍ତ କରିଦେଲେ, ବିନା ଯୁଦ୍ଧରେ ଆତ୍ମସମର୍ପଣ କରିଦେବେ ଦୁର୍ବିନୀତ ଓଡ଼ିଆ ଜାତି। କେସୋ ଦାସ ମାରୁ, ଏକରାମ୍ ଖାଁ, ସୁଜାଉଦ୍ଦିନ୍, ମୁତାବତ୍ ଖାଁ ଆଦି ଅଜସ୍ର ଆୟ ଅଳଙ୍କାର ଲୁଣ୍ଠି ନେଇଛନ୍ତି ଶ୍ରୀମନ୍ଦିରରୁ। ବିଧର୍ମୀଙ୍କ ଆକ୍ରମଣରୁ ନିଷ୍କୃତି ପାଇଁ ୧୪୪ ବର୍ଷ ପାତାଳି ହୋଇ ରହିଥିଲେ ମହାପ୍ରଭୁ। ଏତେସବୁ ସଙ୍କଟର ସମ୍ମୁଖୀନ ହୋଇଥିବା ଠାକୁର ରାଜା ଓ ସେବାୟତମାନେ ମନ୍ଦିର ପ୍ରବେଶରେ ସାମୟିକ କଟକଣା ଲଗାଇ ଥିଲେ। ତାହା ଧୀରେଧୀରେ ପରମ୍ପରା ହୋଇଗଲା। ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ଯୁଗୀୟ ଆବଶ୍ୟକତାକୁ ସର୍ବଯୁଗୀୟ କରିବାର ଅପଚେଷ୍ଟା କଲେ। ଜାତି

ଅଜାତି, ଉଚ୍ଚ ନୀଚ, ଛୁଆଁ ଅଛୁଆଁ ଭେଦଭାବ ଦର୍ଶାଇ ଜଗନ୍ନାଥଙ୍କୁ ନିଜସ୍ୱ କରିନେଲେ। ଏ ପ୍ରକ୍ରିୟା ବିରୋଧରେ ବି ପ୍ରତିବାଦ ହୋଇଛି। କିନ୍ତୁ ବେଶୀ କିଛି ଫଳ ହୋଇନାହିଁ। ଏପଟେ ପଣ୍ଡା ପଡ଼ିଆରୀଙ୍କ ସବୁ କାଇଦା କଟକଣା ଏଡ଼ି ଲୁଚିଛପି ଭାବର ଠାକୁର ପହଞ୍ଚି ଯାନ୍ତି ଭକ୍ତ ପାଖରେ। ଛୁଆଁ କି ଅଛୁଆଁ ବାରଣ ନଥାଏ ତାଙ୍କ ପାଖରେ। ସବୁ ବାରଣ ଏଇ ମନୁଷ୍ୟକୃତ। କୀଟଠୁ ବ୍ରହ୍ମ ପରିଯନ୍ତେ ସବୁ ତାଙ୍କରି ସୃଷ୍ଟି। ତାଙ୍କୁ ବ୍ରାହ୍ମଣ ଛୁଇଁଲେ କେତେ ଗରା ପାଣି, କ୍ଷତ୍ରିୟ ଛୁଇଁଲେ କେତେ ଗରା, ବୈଶ୍ୟ ଛୁଇଁଲେ କେତେ ଗରା ପାଣି ଓ ଶୂଦ୍ର ଛୁଇଁଲେ କେତେ ଗରା ପାଣି ମାର୍ଜନା ପାଇଁ ଆବଶ୍ୟକ ହୁଏ, ଏସବୁ ମଣିଷ ଲେଖିଛନ୍ତି, ଜଗନ୍ନାଥ ନୁହନ୍ତି। ସକଳ ଘଟେ ନାରାୟଣ, ବସନ୍ତି ଅନାଦି କାରଣ। ବ୍ରହ୍ମ କେବେ ଅଶୁଦ୍ଧ ହୁଅନ୍ତି ନାହିଁ, ବରଂ ତାଙ୍କ ସ୍ପର୍ଶରେ ସବୁ ଅଶୁଦ୍ଧ ଶୁଦ୍ଧ ହୋଇଯାଏ। ଶାସ୍ତ୍ର ସଂହିତାର ଦ୍ୱାହି ଦେଇ ଗଣଦେବତାଙ୍କୁ ଗଣଠାରୁ ଦୂରେଇ ନେବାର ଚକ୍ରାନ୍ତ ନିଶ୍ଚୟ ନିନ୍ଦନୀୟ।  ସବୁ ନୀତିନିୟମ ମନୁଷ୍ୟକୃତ। ଯୁଗ ଅନୁସାରେ ନୀତିନିୟମ ପରିବର୍ତ୍ତନଶୀଳ। ନୀତିନିୟମ ପାଖରେ ମଣିଷ ବନ୍ଧା ପଡ଼ିଗଲେ ମାନବିକତାର ହାନି ଘଟେ। ମଣିଷର ମଙ୍ଗଳ ପାଇଁ ନୀତିନିୟମ। ନୀତିନିୟମକୁ ଦୃଢ଼ ରଖିବା ପାଇଁ ମଣିଷର ସ୍ୱାର୍ଥହାନି କରିବା ଅଯୌକ୍ତିକ।

ଗଣମାଧ୍ୟମର ଯୁଗରେ ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କ ଲୋକପ୍ରିୟତା ବିଶ୍ୱବ୍ୟାପି ହେଉଛି। ଯାତ୍ରୀ, ପର୍ଯ୍ୟଟକ ଓ ଭକ୍ତଙ୍କ ସଂଖ୍ୟା ପୂର୍ବାପେକ୍ଷା ବହୁଗୁଣିତ ହେଉଛି। ବିପୁଳ ଜନ ସମାଗମରେ ଶାନ୍ତିଶୃଙ୍ଖଳା ରକ୍ଷା ପାଇଁ, ରଥଯାତ୍ରାର ନିର୍ବିଘ୍ନ ପରିଚାଳନା ପାଇଁ, ଯେ କୌଣସି ପ୍ରକାର ଅଘଟଣକୁ ଏଡ଼ାଇବା ପାଇଁ ଜନତାଙ୍କୁ ରଥଠାରୁ ଦୂରେଇ ରଖିବା ଯଥାର୍ଥ। ଏହାକୁ ଆମେ ସମର୍ଥନ କରୁଛୁ। କିନ୍ତୁ ଶାସ୍ତ୍ରୀୟ ଦୃଷ୍ଟାନ୍ତ ଦେଇ ଅବ୍ରାହ୍ମଣ ରଥ ଉପରେ ଚଢ଼ିବା କିମ୍ବା ଜଗନ୍ନାଥଙ୍କୁ ସ୍ପର୍ଶ କରିବା ଦ୍ୱାରା ଜଗନ୍ନାଥ ଅଶୁଦ୍ଧ, ଅପବିତ୍ର ହୋଇଯିବେ ବୋଲି ଯୁକ୍ତି କରିବା ହାସ୍ୟାସ୍ପଦ। ଏକବିଂଶ ଶତାବ୍ଦୀରେ ମାନବିକତାର ଜୟଗାନ କରୁଥିବା ମଣିଷକୁ ଏସବୁ ବିଭ୍ରାନ୍ତିକର ତଥ୍ୟ ଦେଇ ଚୁପ୍ କରାଯାଇ ପାରିବ ନାହିଁ। ଲକ୍ଷଲକ୍ଷ ଶ୍ରଦ୍ଧାଳୁଙ୍କୁ ରଥ ଓ ଦେବତାଙ୍କଠାରୁ ଦୂରେଇ ସେବାୟତଙ୍କର ପରିବାର ଲୋକ ରଥ ଉପରେ ଚଢ଼ି ଦିଅଁମାନଙ୍କୁ ସ୍ପର୍ଶ କରିବାକୁ ଜନସାଧାରଣ ଆଦୌ ସହଜ ଭାବରେ ଗ୍ରହଣ କରିବେ ନାହିଁ। ମାନବିକ ଅଧିକାର ଆଧାରରେ ଗଢ଼ି ଉଠୁଥିବା ସଦ୍ୟତମ ମାନବ ସଭ୍ୟତାକୁ ଆଉ ବେଶୀ ଦିନ ପ୍ରତାରିତ କରାଯାଇ ପାରିବ ନାହିଁ।

ନିକଟ ଅତୀତରେ ଜଗନ୍ନାଥଙ୍କ ଭାବ ଚେତନାରେ ସମୃଦ୍ଧ ଓଡ଼ିଶୀ ନୃତ୍ୟାଙ୍ଗନା ଇଲିଆନା ଚିତାରିସ୍ତି ସେବାୟତମାନଙ୍କ ଦ୍ୱାରା ରଥ ଉପରେ ଅପମାନିତ ହୋଇଥିଲେ।

ସେ ବିଦେଶିନୀ ବୋଲି ନୁହେଁ, ବରଂ ହଜାରେ ଟଙ୍କା ଦର୍ଶନୀ ଦେବାକୁ ମନା କରି ଦେବାରୁ ପଣ୍ଡାମାନଙ୍କ ଆକ୍ରୋଶର ଶିକାର ହୋଇଥିଲେ। ସାରା ଜଗତରେ ଜଗତର ନାଥଙ୍କ ଗୁମର ପଦାରେ ପଡ଼ିଲା। ଜଗନ୍ନାଥ କୌଣସି ଗୋଷ୍ଠୀର ଦେବତା ନୁହନ୍ତି। ବିଶ୍ୱାବସୁ ଶବରର ନିଭୃତ ପୂଜାରୁ ସ୍ୱଇଚ୍ଛାରେ ଆସି ବଡଦେଉଳରେ ସେ ଉଭା ହୋଇଛନ୍ତି। ସ୍ୱଇଚ୍ଛାରେ ଯାଇଛନ୍ତି ଭକ୍ତଙ୍କ ଦେହରେ ଦେହ ମିଶାଇ, ଲୁହରେ ଲୁହ ମିଶାଇ, ହସରେ ହସ ମିଶାଇ, ଆଖି ନଚେଇ ନବଜ ହେବା ପାଇଁ। ଏ ହେଉଛି ତାଙ୍କ ନବଦିନ ଯାତ୍ରାର ରହସ୍ୟ; ଘୋଷଯାତ୍ରାର ଉଦ୍ଦେଶ୍ୟ।

ଏବେ ଜନସଂଖ୍ୟା ବଢ଼ିଛି। ଭକ୍ତ ସଂଖ୍ୟା ବଢ଼ିଛି, ପୁରୀକୁ ଯାତ୍ରୀ ସଂଖ୍ୟା ବଢ଼ିଛି। ତତ୍ ସଙ୍ଗେସଙ୍ଗେ ଆତଙ୍କବାଦର ସମସ୍ୟା ବଢ଼ିଛି; ଜଗନ୍ନାଥଙ୍କ ପ୍ରତି ବିପଦର ଆଶଙ୍କା ବି ବଢ଼ିଛି। ରଥଦାଣ୍ଡକୁ ସମସ୍ତେ ଭକ୍ତିଭାବ ନେଇ ଆସନ୍ତି ନାହିଁ। ଜନସମୁଦ୍ର ମଧ୍ୟରେ କିଏ ଧାର୍ମିକ, କିଏ ପାଷାଣ୍ଡ- ଚିହ୍ନିତ କରିହେବ ନାହିଁ। ଅସାମାଜିକଙ୍କ ମନ୍ଦ ଅଭିସନ୍ଧି ବାରିହେବ ନାହିଁ। ଏ ଦୃଷ୍ଟିରୁ ପ୍ରଶାସନିକ ଶୃଙ୍ଖଳାକୁ ଆମେ ସ୍ୱାଗତ କରିବା। ଜଗନ୍ନାଥଙ୍କୁ ଛୁଇଁବାର ଜିଦ୍ ଆଦୌ ଯଥାର୍ଥ ନୁହେଁ। ଭାବାଚ୍ଛନ୍ନ ଭକ୍ତ ଚକ୍ଷୁ ବନ୍ଦ କରି ମଧ୍ୟ ବ୍ରହ୍ମ ଦର୍ଶନ କରିପାରେ। ବ୍ରହ୍ମ ସର୍ବତ୍ର ବିଦ୍ୟମାନ। ତାଙ୍କୁ କେବଳ ଦାରୁବ୍ରହ୍ମ ମଧ୍ୟରେ ସୀମାବଦ୍ଧ କରି ଆମେ ବ୍ରହ୍ମର ଅବମାନନା କରିବା ନାହିଁ। ବିଶ୍ୱ ଦୃଷ୍ଟିରେ ସ୍ୱତନ୍ତ୍ର ଗୌରବର ଅଧିକାରୀ ହୋଇଥିବା ରଥଯାତ୍ରାଠୁ ଆହୁରି ମହିମାବନ୍ତ କରିବାରେ ଆମେ ସହାୟକ ହେବା।

କିନ୍ତୁ ଜଗନ୍ନାଥଙ୍କୁ ନିଜ ଅର୍ଜିତ ସମ୍ପତ୍ତି ଭଳି ଭାବୁଥିବା ଓ ତାଙ୍କ ମାଧ୍ୟମରେ ଅହଂକାର ପ୍ରଦର୍ଶନ କରୁଥିବା ଗୋଷ୍ଠୀଙ୍କୁ ଜନତା ଆଉ ବେଶୀ ଦିନ ବରଦାସ୍ତ କରିବେ ନାହିଁ; କରିବା ଉଚିତ୍ ବି ନୁହେଁ। ଏବେ ଜନତାଙ୍କ ଭିତରେ ଯେଉଁ ଗଣଅସନ୍ତୋଷ ଦାନା ବାନ୍ଧୁଛି, ତାହା ଦିନେ ଗଣବିପ୍ଳବର ରୂପ ନେବା କିଛି ଅସମ୍ଭବ ନୁହେଁ। ଆଉ ସେଥିପ୍ରତି ଗଣଦେବତା ଜଗନ୍ନାଥଙ୍କର ପୂର୍ଣ୍ଣ ସମର୍ଥନ ରହିବ ବୋଲି ମଧ୍ୟ ଆଶା କରାଯାଇପାରେ।



# ଗଣେଶଙ୍କ ଫାଦର୍ ଓ ଆମ ପ୍ରବୁଦ୍ଧମାନେ

ଗଣେଶ ଫାଦର୍ ପାର୍ କରେଗା; ପାର୍ବତୀ ହଜ୍‌ବ୍ୟାଣ୍ଡ୍ ପାର୍ କରେଗା; ଚିଲମ୍ ଅଙ୍କଲ୍ ପାର୍ କରେଗା- ଏସବୁ ସମ୍ବୋଧନ ଓ ଦୟିନୀ ଆମକୁ ଉଭଟ ମନେହେଲେ ବି ଆମର ଉଦ୍‌ବେଗ ପ୍ରକାଶ କରିବାର କିଛି ନାହିଁ। ପିଢ଼ିକୁ ପିଢ଼ି ଅନ୍ତର ତ ରହିବ। ଆମେ ତ ଆମ ଆରାଧ୍ୟମାନଙ୍କୁ ଏମିତି ହିଁ ସମ୍ବୋଧନ କରି ଆସିଛୁ। ଉମାକାନ୍ତ, ପାର୍ବତୀରମଣ, ଲକ୍ଷ୍ମୀକାନ୍ତ, ରାଧାରମଣ ନନ୍ଦନନ୍ଦନ। ରୁଦ୍ରସୁଧାନିଧିରେ ଲେଖକ ଅବଧୂତାନନ୍ଦ ଶିବଙ୍କୁ ଯେଉଁ ପ୍ରକାର ସମ୍ବୋଧନ କରିଛନ୍ତି, ତାହା ସର୍ବନିମ୍ନଶୀଳତା ଥିବା ଶିକ୍ଷକଟିଏ ମଧ୍ୟ ଶ୍ରେଣୀଗୃହରେ ପଢ଼ାଇବାକୁ ଥତମତ ହେବ। ଏସବୁକୁ ତ ଆମେ ଧଣ୍ଡାତୁଳସୀ କରିଛୁ। ତେବେ ସ୍କୁଲ ମାଟି ମାଡୁ ନ ମାଡୁଣୁ ଯେଉଁମାନେ ଇଂରାଜୀ ଖାଆନ୍ତି, ଇଂରାଜୀ ପିନ୍ଧନ୍ତି, ଇଂରାଜୀ ପଢ଼ନ୍ତି, ଇଂରାଜୀ ଲେଖନ୍ତି, ଇଂରାଜୀ କହନ୍ତି, ଇଂରାଜୀରେ ହସନ୍ତି ଓ ଇରାଜୀରେ କାନ୍ଦନ୍ତି, ସେମାନଙ୍କ ମୁଖନିଃସୃତ ସବୁକିଛି ଏମିତି ହିଁ ହେବ ! ସେମାନେ ଦେବଦେବୀଙ୍କୁ ନମସ୍କାର ବଦଳରେ 'ଗୁଡ୍‌ମର୍ଣ୍ଣିଂ ସାର୍' ଅଥବା 'ଗୁଡ୍‌ମର୍ଣ୍ଣିଂ ମ୍ୟାଡାମ୍' କହିବେ। ବୋଲବମ୍ ବ୍ରତଧାରୀ କାଉଡ଼ିଆମାନେ ଖାଲିପାଦରେ ଅଥଚ ଆଧୁନିକ ଶୈଳୀରେ ରଙ୍ଗବେରଙ୍ଗ ପୋଷାକ, ମୁଣ୍ଡରେ ଜରି କପଡ଼ା, କାନ୍ଧରେ ମାରଓ୍ବାଡ଼ି ବ୍ୟବସାୟୀଙ୍କ ନିର୍ମିତ କାଉଡ଼ି, ପକେଟ୍‌ରେ ମୋବାଇଲ୍ ଓ ଆଧୁନିକ ଶିବ ଭଜନ ଗାଉଥିବା ସଙ୍ଗୀତ ସହ ମାଇଲ୍ ମାଇଲ୍ ଚାଲିଥାନ୍ତି। ସେମାନଙ୍କ ଉଷ୍ମତା ପାଇଁ, ମନୋରଞ୍ଜନ ପାଇଁ, ଏ ସମ୍ବୋଧନ ସହ ଆହୁରି ବି ଅନେକ ଉପାଦାନ ରହିଛି। ଆମେ ସେଥିପାଇଁ ବିଚଳିତ ହେବାନାହିଁ। ସେଥିପାଇଁ ତ ନୀଳକଣ୍ଠ ଶିବ ଅଛନ୍ତି ! ସମୁଦ୍ର ମନ୍ଥନରୁ ଉଦ୍‌ବୃତ୍ତ ହଳାହଳ ବିଷକୁ ସେ ଗଳସ୍ଥ କରିଥିଲେ। ଏ ସଭ୍ୟତା ସମୁଦ୍ରରୁ ଉଦ୍‌ବୃତ୍ତ ବିଷକୁ ଅନ୍ତଃସ୍ଥ କରିବାରେ ସିଏ ହିଁ ସମର୍ଥ। ଉଦ୍‌ବାର୍ଯ୍ୟ ଯୁବ ମାନସକୁ, ଯୁବସୁଲଭ ଉନ୍ମାଦନାକୁ ସିଏ ହିଁ କରିପାରିବେ ଶୃଙ୍ଖଳିତ, ସଂଯତ ଓ ନିୟନ୍ତ୍ରିତ। ତାଙ୍କ ଦାୟିତ୍ୱରେ ଛାଡ଼ି ଦିଆଯାଉ ଏ ଯୁବ ସମାଜକୁ। ସେୟା ହିଁ ତ ଆମେ

କରୁଛେ, ଏଥିରେ ନୂତନତ୍ୱ କ'ଣ ଅଛି? ଯୁବ ମାନସ। ଗଢ଼ି ହେବାର ବୟସ। ଲୋଡ଼ି ହେବାର ବୟସ। ବଡ଼ମାନଙ୍କ ନୀତି ଆଦର୍ଶରେ ଅତି ସହଜରେ ଏଇ ବୟସରେ ଅନୁପ୍ରାଣିତ ହୋଇ ପଡ଼ନ୍ତି ସେମାନେ। ଏ ଯୁଗରେ ଆମେ ସେମାନଙ୍କୁ କ'ଣ ଦେଇ ପାରିଛୁ? ଆଜି ଯାହାକୁ ସେମାନେ ଜୀବନର ଆଦର୍ଶ ବୋଲି ଗ୍ରହଣ କରୁଛନ୍ତି, ରାତି ପାହିଲେ ତା'ର କୁତ୍ସିତ ରୂପ ସାମ୍ନାକୁ ଆସୁଛି। ରାଜନୀତି, ସମାଜସେବା, କଳାକ୍ଷେତ୍ର, ଆଧ୍ୟାତ୍ମିକ ଜଗତ- କୌଣସି କ୍ଷେତ୍ର ବି ବାଦ୍ ଯାଉନାହିଁ। ଶେଷରେ ସେମାନେ କଳ୍ପନା ଜଗତର ସାହାରା ନେଉଛନ୍ତି। ଖେଳାଳୀ ଓ ଅଭିନେତା ହେଉଛନ୍ତି ସେମାନଙ୍କ ରୋଲ୍ ମଡେଲ୍। ନିଜକୁ ଯେ କୌଣସି ଖୋଳପା ଭିତରେ ଭରି କେବଳ ଭରପୂର ଆନନ୍ଦ ହିଁ ସେମାନେ ଖୋଜି ଚାଲିଛନ୍ତି। ବୋଲ୍‌ବମ୍ ଯାତ୍ରୀ ହେବା ସେମିତି ସେମାନଙ୍କର ଏକ ବିନୋଦ; ଏକ ବିଳାସ। ଶ୍ରାବଣ ମାସରେ ହଜାର ହଜାର ସଂଖ୍ୟାରେ ଶୈବପୀଠମାନଙ୍କୁ ଜଳ ଢାଳିବାକୁ ଯାଉଥିବା ଭକ୍ତମାନଙ୍କ ମଧ୍ୟରେ ସବୁଠାରୁ ବେଶୀ ସଂଖ୍ୟକ ହେଉଛନ୍ତି ଯୁବକ ଯୁବତୀ।

କୁହାଯାଏ ଶିବ ଜଳପ୍ରିୟ। ସମୁଦ୍ର ମନ୍ଥନରୁ ଜାତ ହଳାହଳ ପାନ ପରେ ହୁତାଶନ ପରି ଜଳୁଥିବା ତାଙ୍କ ଶରୀରକୁ ଜଳ ଢାଳି ଶାନ୍ତ କରା ଯାଇଥିଲା। ପ୍ରଶ୍ନ ଉଠେ- ଶିବଙ୍କ ମସ୍ତକରେ ଯଦି ଜଳ ଢାଳିବା କଥା, ତେବେ ଶ୍ରାବଣ ମାସରେ କାହିଁକି? ଯେତେବେଳେ ନଦୀନାଳ, କୂଅ ପୋଖରୀ, ବିଲବନ ସବୁଠି ଜଳାର୍ଣ୍ଣବ, ସେତେବେଳେ ତ ଅନ୍ତତଃ ଜଳ ବିହୁନେ ଶିବଙ୍କ ଶରୀର ସନ୍ତାପିତ ହେଉନଥିବ ନିଶ୍ଚୟ। ଯଦି ଜଳ ଢାଳି ପୁଣ୍ୟ ଅର୍ଜନ କରିବା କଥା, ତେବେ ବୈଶାଖ ଜ୍ୟେଷ୍ଠ ମାସରେ ଢାଳିଲେ ବୋଧହୁଏ ବେଶୀ ପୁଣ୍ୟ ଅର୍ଜନ ହୁଅନ୍ତା। ଭାରତୀୟ ଧର୍ମ ଦର୍ଶନରେ ଚାତୁର୍ମାସ୍ୟ ବ୍ରତ ପାଳନର ବିଧି ଅଛି। ହିନ୍ଦୁ ହୁଅନ୍ତୁ ଅବା ବୌଦ୍ଧ, ପ୍ରବ୍ରଜ୍ୟାରେ ବିଶ୍ୱାସ କରୁଥିବା ଭାରତୀୟମାନେ ବର୍ଷା ଚାରିମାସ ବିଶ୍ରାମ ନିଅନ୍ତି। ଏହା ମୂଳରେ ମଧ୍ୟ ଏକ ବିଜ୍ଞାନସମ୍ମତ କାରଣ ରହିଛି। ନୂଆ ବାରିପାତରେ ଧରଣୀ ପୃଷ୍ଠରେ ଅଙ୍କୁରୋଦ୍‌ଗମ୍ ହେଉଥିବା ବୀଜ ଜନମାନବ ପାଦରେ ଦଳିତ ହୋଇଯିବାର ଆଶଙ୍କା ଥାଏ। ତେଣୁ ଯଥା ସମ୍ଭବ କମ୍ ପରିଭ୍ରମଣ କରିବା ପାଇଁ ଶାସ୍ତ୍ର ନିର୍ଦ୍ଦେଶ ରହିଛି। ତେବେ ଶ୍ରାବଣ ମାସରେ ଏତେ ସଂଖ୍ୟକ ବୋଲ୍‌ବମ୍ ଯାତ୍ରୀ ଦେଖି ମନେହୁଏ, ବ୍ରାହ୍ମଣ୍ୟ ଧର୍ମ ଓ ବୌଦ୍ଧ ଧର୍ମ ମଧ୍ୟରେ ସୃଷ୍ଟି ହୋଇଥିବା ସଂଘର୍ଷରେ ପରାଜିତ ହୋଇ ବୌଦ୍ଧ ସନ୍ନ୍ୟାସୀମାନେ ପାହାଡ଼ ପର୍ବତ, ବଣ ଜଙ୍ଗଲ ଆଦି ଦୁର୍ଗମ ଅଞ୍ଚଳରେ ବାସ କରୁଥିଲେ। ପରବର୍ତ୍ତୀ ପର୍ଯ୍ୟାୟରେ ବୌଦ୍ଧସ୍ତୂପ ଓ ଚୈତ୍ୟସବୁ ଶିବଲିଙ୍ଗରେ ପରିଣତ ହୋଇଯିବା ମଧ୍ୟ ଇତିହାସ କହେ। ଚତୁର୍ମାସ୍ୟାରେ ଏଇ ଅଞ୍ଚଳସବୁ ଘନ ଜଙ୍ଗଲରେ ଆଚ୍ଛାଦିତ ହୋଇ

ଜନପଦଠାରୁ ବିଚ୍ଛିନ୍ନ ହୋଇଯିବା ଆଶଙ୍କାରେ ଏମିତି କିଛି ନୀତି ନିୟମ ସୃଷ୍ଟି ହୋଇଥାଇପାରେ, ଯାହା ଫଳରେ ଭକ୍ତମାନେ ବହୁ ସଂଖ୍ୟାରେ ଶିବ ଦର୍ଶନ ପାଇଁ ଯିବେ। ପୀଠ ଗହଳ ଚହଳ ହେବ ଓ ରାସ୍ତା ଅବରୋଧ ହେବନାହିଁ।

ଶରୀରକୁ କଷ୍ଟ ଦେଇ ଦେବଦେବୀ ଦର୍ଶନ କଲେ ଅଧିକ ପୁଣ୍ୟ ହୁଏ ବୋଲି ହିନ୍ଦୁମାନଙ୍କର ବିଶ୍ୱାସ। ଜଗନ୍ନାଥଙ୍କ ଦର୍ଶନ ପାଇଁ ଆସୁଥିବା ଯାତ୍ରୀଙ୍କ ମଧ୍ୟରେ ବି ଥାନ୍ତି ଦଣ୍ଡବତିଆ ଯାତ୍ରୀ ଯେଉଁମାନେ ରାସ୍ତାସାରା ନିଉଛାଳି ହୋଇ ଆସନ୍ତି। ତପଶ୍ଚର୍ଯ୍ୟା, ସାଧନା, ନିଷ୍ଠା, ଏକାଗ୍ରତା, ସଂଯମଶୀଳତା- ଏସବୁ ଆମ ଭାରତୀୟ ଦର୍ଶନ ଧାରା, ବିଭୁପ୍ରାପ୍ତିର ମାର୍ଗ। ଆଧ୍ୟାତ୍ମିକତା ଆଦୌ ବାହ୍ୟ ବିଳାସ ନୁହେଁ। ଧାର୍ମିକ ଆଚରଣ ମନୋରଞ୍ଜନ ନୁହେଁ। ଧର୍ମପୀଠ, ଧାର୍ମିକ ମେଳା ମଉଛବ ଓ ଯାଗଯଜ୍ଞ ହେଉଥିବା ସ୍ଥାନମାନଙ୍କରେ ଉଦ୍ୟୋକ୍ତାମାନେ ବିଭିନ୍ନ ମନୋରଞ୍ଜନଧର୍ମୀ କାର୍ଯ୍ୟକ୍ରମ କରିଥାନ୍ତି। ଗଣେଶ ପୂଜା, ବିଶ୍ୱକର୍ମା ପୂଜା, ଦଶହରା ପୂଜା, ଗଜଲକ୍ଷ୍ମୀ ପୂଜା ଆଦି ଅବସରରେ ମେଲୋଡି, ପାଲା, ଦାଶକାଠିଆ, ଅପେରା, ମୀନାବଜାର, ସର୍କସ ଆଦି ଉପରେ ଦର୍ଶକଙ୍କ ଧ୍ୟାନ ଥାଏ ବେଶୀ। ଏ ଅନୁଷ୍ଠାନଗୁଡ଼ିକ କେବଳ ଉତ୍ସବ ଉଲ୍ଲାସର ଅନୁଷ୍ଠାନ ପରି ମନେହୁଏ। ଆଧ୍ୟାତ୍ମିକତା ଏଠି ମ୍ଳାନ ହୋଇ ଯାଇଥାଏ। ଧାର୍ମିକ ଉନ୍ମାଦନା ଥାଏ ବେଶୀ। ଯୁବ ସମାଜ ଏହାର ସିଂହଭାଗ କାର୍ଯ୍ୟ ସମ୍ପାଦନ କରିଥାନ୍ତି।

ବାରବର୍ଷ ଧରି ସୀମାନ୍ତରେ ଯୁଦ୍ଧ କରି ଶତ୍ରୁ ରାଜ୍ୟରେ ବୀରପୁତ୍ରର ଆତ୍ମହତ୍ୟା ଓ କନ୍ୟାର ଦୁର୍ଭୋଗରେ ଭାଙ୍ଗି ପଡ଼ିଥିଲେ ପ୍ରତାପରୁଦ୍ର ଦେବ। ମାନସିକ ଶାନ୍ତି ପାଇଁ ଚୈତନ୍ୟଙ୍କ ଦ୍ୱାରା ରାଜା ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲେ ଓ ଯୁଦ୍ଧ ବିରତି ଘୋଷଣା କଲେ। ରାଜାନୁଗତ ଧର୍ମ। ଯୋଦ୍ଧା ଓଡ଼ିଆ ଜାତି ଖଣ୍ଡା ଖର୍ପର ଛାଡ଼ି ଚିତା ତିଳକ ଓ ଝାଞ୍ଜ ମୃଦଙ୍ଗ ଭିତରେ ଆଶ୍ରା ନେଇଥିଲେ ସିନା, ସେମାନଙ୍କ ଯୋଦ୍ଧୃ ମାନସିକତାର ବିଲୋପ ହୋଇନଥିଲା। କେହି ମୃଦଙ୍ଗ ଫଟେଇଲା ତ କେହି ଝାଞ୍ଜ ଚେପା କଲା। ସେମାନଙ୍କ ମୁଖରେ ହରିନାମ ଶୁଭିଲା ରଣହୁଙ୍କାର ପରି। ଏବେ ଆମ ଯୁବପିଢ଼ି ଏଇଭଳି ସଂକଟଟିଏ ମଧ୍ୟ ଦେଇ ଗତି କରୁଛନ୍ତି। ଧାର୍ମିକ ଆଚରଣ ଓ ଅଧ୍ୟାତ୍ମିକତାର ଅଭ୍ୟୁତ୍ଥାନ ପାଇଁ ମଣିଷର ଗୋଟିଏ ନିର୍ଦ୍ଦିଷ୍ଟ ବୟସ ଅଛି। ସେ ବୟସ ଆସିଲେ ମଣିଷ ଆପେଆପେ ଭଗବତ୍ ଅନୁଗାମୀ ହୋଇଯାଏ। କିନ୍ତୁ ଯୁବା ବୟସ ଗଢ଼ିବାର ବୟସ, ଭାଙ୍ଗିବାର ବୟସ, ବିଦ୍ରୋହର ବିପ୍ଳବର ବୟସ, ଉନ୍ମାଦନାର ବୟସ, ସ୍ୱପ୍ନ ଦେଖିବାର ବୟସ, କଳ୍ପ ଜଗତରେ ଉଡ଼ିବାର ବୟସ। ଅନ୍ୟାୟ ଅନୀତି ବିରୋଧରେ କ୍ରୋଧ ଉଦ୍‌ଗୀରଣ କରିବାର ଓ କ୍ଷୁଧିତ ତୃଷିତଙ୍କ ଓଠରେ ଅନ୍ନଜଳ ଯୋଗାଇ ଦେବାର

ବୟସ । ଜଗତ କଲ୍ୟାଣ ପାଇଁ ସେମାନଙ୍କ ଭିତରେ ଥାଏ ସମୁଦ୍ର ଲଂଘିଯିବାର ଉନ୍ମାଦନା; ପାହାଡ଼ ଭାଙ୍ଗିଦେବାର ସାମର୍ଥ୍ୟ। ଏମାନଙ୍କ ପ୍ରତି ରକ୍ତକଣିକାରେ ନବ ସୃଜନର ଉଲ୍ଲାସ। କୌଣସି ବନ୍ଧନକୁ ଏମାନେ ସ୍ୱୀକାର କରନ୍ତି ନାହିଁ। ଶୃଙ୍ଖଳ ବିରୁଦ୍ଧରେ ଚିତ୍କାର କରନ୍ତି । ମାଓ ସେ ତୁଙ୍ଗ୍‌ଙ୍କର ଅସ୍ତ୍ର ଥିଲେ ଏମାନେ। ବିବେକାନନ୍ଦ ଏମାନଙ୍କ ଉପରେ ଆସ୍ଥା ରଖିଥିଲେ। ସୁଭାଷ ବୋଷଙ୍କର ଯୁବଶକ୍ତି ଥିଲା ସାମର୍ଥ୍ୟ। ମହାତ୍ମା ଗାନ୍ଧୀଙ୍କର ତ ଏମାନଙ୍କୁ ନେଇ ଅନେକ ସ୍ୱପ୍ନ ଥିଲା। ପାହାଡ଼ୀ ଝରଣା ପରି ଏମାନଙ୍କ ଉଦ୍ଦାମତାକୁ ପ୍ରଣାଳୀ କରି ବିଶ୍ୱ ହିତ ପାଇଁ ଉତ୍ସର୍ଗ କରିବାରେ ପ୍ରବୁଦ୍ଧମାନଙ୍କର ଦାୟିତ୍ୱବୋଧ ଅଧିକ । କ୍ରୋଧ ଜର୍ଜରିତ ହୋଇ ସ୍ୱର୍ଗରୁ ଲମ୍ଫ ପ୍ରଦାନ କରିଥିବା ଗଙ୍ଗାଙ୍କର ଉଦ୍‌ବାର୍ଯ୍ୟତାକୁ ଶୃଙ୍ଖଳିତ କରିବା ପାଇଁ ଶିବଙ୍କ ଜଟାର ଆବଶ୍ୟକତା ହୋଇଥିଲା। ସେଇ ଜଟା ଭିତରେ ବାନ୍ଧି ରଖି ସେ ତାଙ୍କୁ ବିଶ୍ୱ କଲ୍ୟାଣର ମନ୍ତ୍ର ଦେଇଥିଲେ । ସେଇ ମନ୍ତ୍ରରେ ଦୀକ୍ଷିତା ହୋଇ ଗଙ୍ଗା ନିଜକୁ ଜନକଲ୍ୟାଣ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଦେଲେ। କିନ୍ତୁ ଏବେ ଆମ ପ୍ରବୁଦ୍ଧମାନେ ସ୍ଥବିର । ବିଶ୍ୱ ଧ୍ୱଂସମୁଖୀ ହେଉଥିବା ବେଳେ ସେମାନେ ଗଜଦନ୍ତ ପଲଙ୍କରେ ନିଦ୍ରାବିଭୋର। ଏ ପରିପ୍ରେକ୍ଷୀରେ ଚିନ୍ତନଭ୍ରଷ୍ଟ ଯୁବ ସମାଜ ଗଣେଶଙ୍କ ଫାଦର୍ ଓ ପାର୍ବତୀଙ୍କ ହଜ୍‌ବ୍ୟାଣ୍ଡ୍‌କୁ ଚିଲମ୍ ଧୂଆଁର ପ୍ରତୀକ ବୋଲି ଗ୍ରହଣ କଲେ ଆମେ ଦୋଷ ଦେବା କାହାକୁ ?



# ପୁଅର ମାଆ

'ଗହଣା ନାଇଲେ ଘୋଡ଼େଇ ଚାଲ, ପୁଅ ପାଇଥିଲେ ଓରେଇ ଚାଲ।' ପୁରୁଣା ଦିନମାନଙ୍କରେ ପ୍ରାଚୁର୍ଯ୍ୟ ଓ ଐଶ୍ୱର୍ଯ୍ୟରେ ଅହଂକାରୀ ନହୋଇ ନମ୍ର ହେବାକୁ ନାରୀମାନଙ୍କ ପାଇଁ ଏ ରଢ଼ି ଥିଲା ଅନୁଶାସନ। ସେତେବେଳେ ଗହଣା ପିନ୍ଧିବା ଓ ପୁତ୍ର ଜନ୍ମ କରିବାକୁ ସୌଭାଗ୍ୟ ବୋଲି ଗ୍ରହଣ କରାଯାଉଥିଲା। ପୁତ୍ର ସନ୍ତାନର ଜନନୀମାନେ କନ୍ୟା ସନ୍ତାନର ଜନନୀଙ୍କ ଅପେକ୍ଷା ବେଶୀ ସମ୍ମାନ ଓ ସୁବିଧାର ଅଧିକାରିଣୀ ଥିଲେ। ପ୍ରସୂତୀ ଗୃହରୁ ହିଁ ସେମାନଙ୍କର ଅଧିକ ଯତ୍ନ ନିଆଯାଉଥିଲା। ବାରରାତ୍ର ଦିନ ସୂତିକା ଗୃହର ସବୁ ବିଧିବିଧାନ କନ୍ୟା ଜନ୍ମ କରିଥିବା ମାଆର ଶେଷ ହୋଇ ଯାଉଥିଲା। ସେ ଗୃହକାର୍ଯ୍ୟ କରୁଥିଲା। ଅଥଚ ପୁତ୍ର ସନ୍ତାନର ଜନନୀକୁ ୨୧ଦିନ ପର୍ଯ୍ୟନ୍ତ ବିଶ୍ରାମ ମିଳେ। ଏକୋଇଶିଆ ଦିନ ତା'ର ସୂତିକା ଗୃହ ବା ଏନ୍ତୁଡ଼ିଶାଳର ବିଧିବିଧାନ ଶେଷ ହୁଏ; ସେ ଗୃହକାର୍ଯ୍ୟ କରେ। ଏବେ ସୁଦ୍ଧା ଗାଁ ଗହଳିରେ ଏ ପ୍ରଥା ପ୍ରଚଳିତ। ଗୁରୁ ଗୁରୁଜନମାନେ ନାରୀମାନଙ୍କୁ ପୁତ୍ରବତୀ ହେବାର ଆଶୀର୍ବାଦ ଦିଅନ୍ତି- ସାତପୁତ୍ର ହେଉ କି ଶତପୁତ୍ର। କନ୍ୟାବତୀ ହେବାର ଆଶୀର୍ବାଦ କେହି କେବେ ଦେବାର ଦୃଷ୍ଟାନ୍ତ ନାହିଁ। ଏକାଧିକ ପୁତ୍ର ସନ୍ତାନ ଜନ୍ମ ଦେଲେ ମାଆର ମହତ୍ତ୍ୱ ବଢ଼ି ଯାଉଥିବା ବେଳେ ଏକାଧିକ କନ୍ୟା ସନ୍ତାନ ଜନ୍ମ ଦେଉଥିବା ମାଆକୁ ନିର୍ଯାତନା ସହିବାକୁ ପଡୁଥିଲା। ଅନେକ ସମୟରେ ସ୍ୱାମୀଟି ପୁତ୍ର ସନ୍ତାନ ପାଇଁ ଦ୍ୱିତୀୟ ବିବାହ ମଧ୍ୟ କରୁଥିଲା। କାରଣ 'ପୁତ୍' ନାମକ ନର୍କରୁ ପୁତ୍ରୀ ନୁହେଁ, ପୁତ୍ର ହିଁ ରକ୍ଷାକରେ ବୋଲି ଏବେ ସୁଦ୍ଧା ଆମ ସାମାଜିକ ଅନ୍ଧବିଶ୍ୱାସ ବଳବତ୍ତର ରହିଛି। ରାଜସ୍ଥାନ ଓ ହରିୟାନା ଆଦି ଅଞ୍ଚଳରେ ତ ଶିଶୁକନ୍ୟାମାନଙ୍କୁ ହତ୍ୟା କରିବା ପାଇଁ ହନ୍ତାକାରିଣୀମାନଙ୍କର କୌଳିକ ବୃତ୍ତି ଥିଲା।

ବିଶ୍ୱାମିତ୍ର ଓ ମେନକାଙ୍କ ସନ୍ତାନ ଶକୁନ୍ତଳା ଯଦି କନ୍ୟା ନହୋଇ ପୁତ୍ରଟିଏ ହୋଇଥାନ୍ତା, ଉଭୟ ପିତାମାତା ତାକୁ ଏମିତି ଅସହାୟ ଭାବରେ ପରିତ୍ୟାଗ କରିନଥାନ୍ତେ। ସ୍ୱର୍ଗର ଅପ୍‌ସରୀ ମେନକା ଚାଲିଗଲେ ବି ଅନ୍ତତଃ ବିଶ୍ୱାମିତ୍ର ତାଙ୍କୁ ସାଙ୍ଗରେ ଧରି ଯାଇଥାନ୍ତେ। ଏମିତି ତ ଅନେକ ପିତା ଏକାକୀ ପୁତ୍ର ସନ୍ତାନମାନଙ୍କର ଲାଳନପାଳନ କରିଥିବାର ଦୃଷ୍ଟାନ୍ତ ରହିଛି। ଗଙ୍ଗା ଦେବବ୍ରତ (ଭୀଷ୍ମ)ଙ୍କୁ ପରିତ୍ୟାଗ କଲାପରେ

ଶାନ୍ତନୁ ତାଙ୍କର ଦାୟିତ୍ୱ ନେଇଥିଲେ। ପରାଶର ମୁନି ମଧ୍ୟ ବ୍ୟାସଦେବଙ୍କୁ ଏକାକୀ ଲାଳନପାଳନ କରିଥିଲେ। କିନ୍ତୁ ଶକୁନ୍ତଳା କନ୍ୟା ସନ୍ତାନଟିଏ ଥିବାରୁ ତାଙ୍କର ଭାଗ୍ୟରେଖା ଭିନ୍ନ ଥିଲା। ପିତାମାତା ଉଭୟଙ୍କଦ୍ୱାରା ପରିତ୍ୟକ୍ତ ହୋଇ କଣ୍ୱ ମୁନିଙ୍କ ଆଶ୍ରମରେ ସେ ପରିପାଳିତା ହେଲେ। କନ୍ୟାଶିଶୁକୁ କାଗଜ କାର୍ଟୁନ୍ କି ଡବାଗୁଡ଼ିକରେ ଭର୍ତ୍ତି କରି ମାଟିତଳେ ପୋତିଦେବା ପରି ଅମାନୁଷିକ ଘଟଣା ଆମ ସମାଜରେ ନୂଆକଥା ନୁହେଁ। ରାଜର୍ଷି ଜନକ ଯଜ୍ଞ ନିମନ୍ତେ ଜମି କର୍ଷଣ କରୁଥିବା ବେଳେ ଲଙ୍ଗଳ ସିଆର ତଳୁ କନ୍ୟାଶିଶୁଟିଏ ପାଇଥିଲେ। ତାଙ୍କ ନାଁ ଦେଇଥିଲେ ସୀତା। ଲଙ୍ଗଳ ସିଆରର ପ୍ରତିଶବ୍ଦ ସୀତା। କନ୍ୟାଶିଶୁ ବୋଲି ତାଙ୍କୁ କେହି ପେଟିକା ଭିତରେ ଭରି ଭୂଇଁରେ ପୋତି ଦେଇନଥିଲେ ତ ? ସତ ହେଉ କି ଗପ, ବିଚରା ଚକୁଳିଆ ପଣ୍ଡାଟି ତ ତା'ର ସାତ ଝିଅଙ୍କୁ ବଣରେ ଛାଡ଼ିଥିବା ଅପବାଦକୁ ଏପର୍ଯ୍ୟନ୍ତ ମୁଣ୍ଡେଇ ଚାଲିଛି। ଯେଉଁମାନଙ୍କୁ ଅଖୋଜା ଅଲୋଡ଼ା ବୋଲି ପରିତ୍ୟାଗ କରାଯାଇଥାଏ, ସେଇମାନେ ଦିନେ ଅଜସ୍ର ଯଶକୀର୍ତ୍ତିର ଅଧିକାରୀ ହୋଇ ଇତିହାସ ରଚନା କରନ୍ତି। ଶକୁନ୍ତଳାଙ୍କ ବୀରପୁତ୍ର ଭରତଙ୍କ ନାମାନୁସାରେ ଆର୍ଯ୍ୟାବର୍ତ୍ତର ନାମ ଭାରତ ହୋଇଛି। ନାରୀର ଆଦର୍ଶ ନୀତି ପରାୟଣତା ଓ ପାତିବ୍ରତ୍ୟରେ ବିଶ୍ୱକୁ ଚମକୃତ କରିଥିବା ମହିୟସୀ ହେଉଛନ୍ତି ସୀତା। ନାରୀମାନଙ୍କ ସମ୍ପର୍କରେ ବିବେକାନନ୍ଦ କହୁଥିଲେ, 'ନାରୀ କସ୍ମିନ୍ କାଳେ ଦୁର୍ବଳ ନଥିଲା। ଅବଳା ଦୁର୍ବଳା କହି ସେମାନଙ୍କ ମନୋବଳ ଭାଙ୍ଗିବାର ଅଧିକାର ଆମର ନାହିଁ। ରୀତିନୀତି, ପ୍ରଥା ପରମ୍ପରା ନାଁରେ ସମାଜ ସେମାନଙ୍କ ଆଗରେ ଗୁଡ଼ାଏ ପ୍ରତିବନ୍ଧକ ଥୋଇଛି। ସେଗୁଡ଼ିକୁ ହଟେଇ ଦେଲେ ନାରୀମାନେ ଆପେଆପେ ଆଗକୁ ମାଡ଼ିଯିବେ। କାହାର ସହାୟତା ଆବଶ୍ୟକ କରିବେ ନାହିଁ।'

ପ୍ରତିବର୍ଷ ସ୍କୁଲ କଲେଜରେ ବହୁ ସଂଖ୍ୟାରେ ଛାତ୍ରୀମାନେ ଛାତ୍ରଙ୍କ ଅପେକ୍ଷା ବେଶୀ ସଫଳତା ପାଇଥାନ୍ତି। କେବଳ ଶିକ୍ଷା ନୁହେଁ, ନୃତ୍ୟ, ଅଭିନୟ, କ୍ରୀଡ଼ା, ଚିତ୍ରାଙ୍କନ, କବିତା, ଗଳ୍ପ ଲେଖିବା, ବକ୍ତୃତା, ସାଧାରଣ ଜ୍ଞାନ ଆଦି ବିଭିନ୍ନ କ୍ଷେତ୍ରରେ ପାରଙ୍ଗମତା ହାସଲ କରିଥାନ୍ତି କନ୍ୟାମାନେ। ଏମାନଙ୍କ ପ୍ରତିଭାରେ ମୁଗ୍ଧ ହୋଇ କେହି ସେମାନଙ୍କୁ ବୋହୂ କରି ନିଅନ୍ତି ତ କେତେକ ଯୁବକ ଏମାନଙ୍କ ପ୍ରେମରେ ପଡ଼ି ବିବାହ କରିବାର ନିଷ୍ପତ୍ତି ନିଅନ୍ତି। କିନ୍ତୁ କ୍ଷୋଭର ବିଷୟ, ବିବାହ ପରେ ଏମାନଙ୍କ ପ୍ରତିଭାର ବିକାଶ ପାଇଁ କେତେକ ଗୁରୁତ୍ୱ ଅଥବା ସୁଯୋଗ ଦିଅନ୍ତି ନାହିଁ। ବିଶ୍ୱବିଦ୍ୟାଳୟର ସ୍ୱର୍ଣ୍ଣପଦକ ଧାରିଣୀ, ପ୍ରତିଷ୍ଠିତ ନୃତ୍ୟାଙ୍ଗନା, କ୍ରୀଡ଼ାଙ୍ଗନା, ଅଭିନେତ୍ରୀ ଓ କବିମାନେ ହାଣ୍ଡିଚୁଲି ନେଇ ବ୍ୟସ୍ତ ରୁହନ୍ତି। କେତେକ ପରିବାରରେ ତ ବିବାହ ପରେ ଏସବୁରେ ରୋକ୍

ଲଗାଇବାର ସର୍ତ୍ତ ରଖାଯାଏ। ଏପରିକି ଭଲ ପ୍ରସ୍ତାବଟିଏ ହୋଇଥିଲେ କନ୍ୟାର ପିତାମାତା ବି କନ୍ୟାକୁ ଏସବୁକୁ ଛାଡ଼ିବାକୁ ଉପଦେଶ ଦେଇଥାନ୍ତି। ସ୍ୱାମୀ, ସନ୍ତାନ, ପରିବାର ଭିତରେ ପ୍ରତିଭାମୟୀମାନେ କୁଆଡ଼େ ହଜି ଯାଆନ୍ତି ଯେ ସେମାନଙ୍କ ପତ୍ତା ମିଳେନାହିଁ। ସେମାନଙ୍କ ସ୍ୱପ୍ନ, ସମ୍ଭାବନାସବୁ ଘର ସଜେଇବା, ସ୍ୱାଦିଷ୍ଟ ଖାଦ୍ୟ ପ୍ରସ୍ତୁତ କରିବା, ଛୁଞ୍ଚିସୂତା କାମ କରିବା, ଯାଆ ନଣନ୍ଦ ଶାଶୂ ଆଦିଙ୍କ ସହ କଳିତକରାଳ କରିବା ଭିତରେ ସୀମିତ ହୋଇ ରହିଯାଏ। ଦୁହିତା କେବଳ ଦୁଇ କୁଳକୁ ହିତା ନୁହେଁ, ରାଷ୍ଟ୍ରୀୟ ସ୍ରୋତରେ ସାମିଲ ହେବାର ଦକ୍ଷତା ଯେ ସେମାନଙ୍କର ରହିଛି- କ୍ୱଚିତ୍ ପରିବାର ଏକଥା ଚିନ୍ତା କରନ୍ତି। ଯେଉଁ ପରିବାରରେ ସେମାନଙ୍କ ପ୍ରତି ଉଦାର ମାନସିକତା ରହିଛି, ସେଠାରେ କନ୍ୟା ସନ୍ତାନର ସଫଳତା ଗଗନଚୁମ୍ବୀ ହୋଇଛି।

ଅପର ପକ୍ଷେ ନାନା ବ୍ରତ, ଉପାସନା, ପୁତ୍ରେଷ୍ଟି ଯଜ୍ଞ ଆଦି କରି ପାଇଥିବା ପୁତ୍ରମାନଙ୍କୁ ଯୋଗ୍ୟ କରିବା ପାଇଁ ଅଧିକାଂଶ ପରିବାରରେ କନ୍ୟା ସନ୍ତାନମାନଙ୍କର ସ୍ୱପ୍ନ ସମ୍ଭାବନାକୁ ଉପେକ୍ଷା କରାଯାଇଥାଏ। କୁଳ ବୁଡ଼ିବା ବେଳକୁ ଘୋଡ଼ାମୁହାଁ ପୁଅ ପରି ଯେଉଁ ପୁଅ ପାଇଁ ପିତାମାତା ସର୍ବସ୍ୱ ତ୍ୟାଗ କରିଥାନ୍ତି, ସେଇ ପୁଅମାନେ ପିତାମାତାଙ୍କର କେତେ ଦାୟିତ୍ୱ ବହନ କରିଥାନ୍ତି, ତାହା ଦେଶରେ କ୍ରମବର୍ଦ୍ଧିଷ୍ଣୁ ଜରାଶ୍ରମରୁ ଜଣାପଡ଼େ। ପୁଅବୋହୂ ସହରରେ ରହୁଥିବା ବେଳେ ଅଧିକାଂଶ ପିତାମାତା ବାର୍ଦ୍ଧକ୍ୟ ଅବସ୍ଥାରେ ଗାଁ ଘରେ ଭାଇ ଭଗାରୀ ଅଥବା ଚାକର ପୂଜାରୀଙ୍କ ପାଖରେ ଶେଷ ଜୀବନ କାଟିଥାନ୍ତି। ମୃତ୍ୟୁ ପରେ ପୁତ୍ର ନର୍କରୁ ଉଦ୍ଧାର କରିବା ଭାବନାରେ ଥିବା ପିତାମାତା ସେଇ ପୁଅ ପାଇଁ ଜୀବନରେ ନର୍କ ଯନ୍ତ୍ରଣା ଭୋଗିଥାନ୍ତି। ଅଥଚ ନର୍କର ଦ୍ୱାର ବୋଲି ସମାଜରେ କଥିତ ଥିବା ନାରୀମାନେ ହିଁ ପରିବାରକୁ ସ୍ୱର୍ଗସୁଖ ଦେଇଥାନ୍ତି; ବୃଦ୍ଧ ପିତାମାତାଙ୍କ ସୁଖଦୁଃଖରେ ଭାଗୀ ହୋଇଥାନ୍ତି।

ଆଇନ୍ କାନୁନ୍‌ର ଦସ୍ତାବିଜ୍‌ରେ ନାରୀମାନଙ୍କୁ ସବୁ ପ୍ରକାରର ସୁବିଧା ସୁଯୋଗ ଦିଆଯାଉଛି ବୋଲି କୁହାଯାଉଛି। କିନ୍ତୁ ସାମାଜିକ ଚଳଣିରେ ଏବେ ବି ସେମାନଙ୍କ ପାଦରେ ପରମ୍ପରାର ବେଡ଼ି। ପିଠିରେ ନୀତି, ନିୟମ, ଦାୟିତ୍ୱ ଓ କର୍ତ୍ତବ୍ୟର କୋରଡ଼ା। ଏସବୁକୁ ଭୁଲି ମୁଖ୍ୟସ୍ରୋତରେ ସାମିଲ୍ ହେବାର ସ୍ୱପ୍ନ ସେ ଦେଖିପାରେ ନାହିଁ। ପୁରୁଷଟିଏ ପାରିବାରିକ କର୍ତ୍ତବ୍ୟକୁ ଉପେକ୍ଷା କରି ମୁଖ୍ୟସ୍ରୋତରେ ସାମିଲ ହେଲେ ତାକୁ ତ୍ୟାଗୀ, ନିରାସକ୍ତ, ନିର୍ମୋହ, ବୈରାଗୀ ଆଦି ଶ୍ରୁତିମଧୁର ବିଶେଷଣରେ ଭୂଷିତ କରାଯାଏ, ଅଥଚ ନାରୀଟିଏ ପାରିବାରିକ କର୍ତ୍ତବ୍ୟକୁ ଏଡ଼ି ମୁଖ୍ୟସ୍ରୋତରେ ସାମିଲ ହେଲେ ସ୍ୱତନ୍ତ୍ରା, ଦାୟିତ୍ୱହୀନା ଉଚ୍ଛୃଙ୍ଖଳିତା ଆଦି ଗୁଡ଼ାଏ ଶ୍ରୁତିକଟୁ ବିଶେଷଣ ତା' ସହ ଯୋଡ଼ା ହୋଇଯାଏ। ଏସବୁ ରୀତିନୀତି, କାଇଦା କଟକଣାର କୋଠରୀ ଡେଇଁ ମୁଷ୍ଟିମେୟ

ମହିଳା ସାମ୍ପ୍ରତିକ ଯୁଗରେ ସମାଜର ପ୍ରତ୍ୟେକ କ୍ଷେତ୍ରରେ ପୁରୁଷଙ୍କୁ ପଛରେ ପକାଇ ଆଗକୁ ଯାଇ ପାରିଛନ୍ତି। ପୃଥିବୀର ଦ୍ୱିତୀୟ ବୃହତ୍ତମ ଖାଦ୍ୟପେୟ ପ୍ରସ୍ତୁତକାରୀ କମ୍ପାନୀ ପେପ୍‌ସୀ କୋ'ର ସିଇଓ ଅଛନ୍ତି ଇନ୍ଦିରା ନୁଇ। ସେ ପୃଥିବୀର ତୃତୀୟ କ୍ଷମତାଶାଳୀ ବ୍ୟବସାୟୀ। ଆଇସିଆଇସିଆଇ ବ୍ୟାଙ୍କର ସିଇଓ ଅଛନ୍ତି ଚନ୍ଦା କୋଚ୍ଚାର। ସରକାରରେ ଜନବିରୋଧୀ ବ୍ୟବସ୍ଥାର ପ୍ରତିବାଦ କରି ଷୋଳବର୍ଷ କାଳ ଅନଶନ କରିଥିବା ଲୌହମାନବୀ ଇରମ ଶର୍ମିଳା ଏବେ ବିଶ୍ୱବିଖ୍ୟାତ। ମହାକାଶଯାତ୍ରୀ କଳ୍ପନା ଚାୱ୍ଲା, ଏଭରେଷ୍ଟ ଆରୋହୀ ବଛେନ୍ଦ୍ରୀ ପାଲ୍ ଓ କଳ୍ପନା ଦାସ, ବୁକର୍ ପୁରସ୍କାର ବିଜେତା ଅରୁନ୍ଧତୀ ରାୟ, ମହାଶ୍ୱେତା ଦେବୀ ଇତ୍ୟାଦି ଆମ ମହିଳାମାନଙ୍କ ପାଇଁ ପ୍ରେରଣାର ଉତ୍ସ। ଏବେ ରିଓ ଅଲିମ୍ପିକ୍ସରେ ପ୍ରତିନିଧିତ୍ୱ କରିଥିବା ଦୂତୀ ଚାନ୍ଦ,-ଶ୍ରାବଣୀ ନନ୍ଦ ଆଦି ଓଡ଼ିଶାର ସାତଜଣ ମହିଳାଙ୍କ ସମେତ ବ୍ରୋଞ୍ଜ୍ ଓ ରୌପ୍ୟ ପଦକ ଜିତିଥିବା ସାକ୍ଷୀ ମଲ୍ଲିକ ଓ ପିଭି ସିନ୍ଧୁ ଆମ ପାଇଁ ଗର୍ବ ଓ ଗୌରବ। ଯେଉଁଠି ପୁରୁଷମାନେ ହାର ମାନୁଛନ୍ତି ଅଥବା ଅପମାନିତ ହେଉଛନ୍ତି, ସେଠାରେ ମହିଳାମାନେ ଦେଶର ନାଁ ଉଜ୍ଜ୍ୱଳ କରୁଛନ୍ତି।

ଏସବୁ ନାରୀ ପ୍ରଗତିର ସାମୂହିକ ସଫଳତା ନୁହେଁ। ଯେଉଁ ହାତଗଣତି କନ୍ୟାମାନଙ୍କୁ ସୁଯୋଗ ମିଳିଛି, ସେହିମାନେ ହିଁ ଶୀର୍ଷରେ ପହଞ୍ଚି ପାରିଛନ୍ତି। ଅନ୍ୟମାନେ ଏବେ ବି ଅବହେଳିତ। ସେମାନଙ୍କ ପ୍ରତିଭାର ଅପମୃତ୍ୟୁ ହେଉଛି। ଯେତେଦିନ ପର୍ଯ୍ୟନ୍ତ କନ୍ୟା ସନ୍ତାନକୁ ଅଖୋଜା, ଅଲୋଡ଼ା ଓ ବୋଝ ବୋଲି ଭାବିବାର ମାନସିକତା ଦୂର ନ ହୋଇଛି, ପୁତ୍ର ସନ୍ତାନ ପାଇଁ ବ୍ୟାକୁଳତାର ଅନ୍ତ ନ ହୋଇଛି, ସେ ପର୍ଯ୍ୟନ୍ତ ଆମ କନ୍ୟା ସନ୍ତାନମାନଙ୍କର ସକଳ ସାମର୍ଥ୍ୟ ଓ ସମ୍ଭାବନା ବ୍ୟର୍ଥ ଯିବ। ଏବେ ପୁଅର ମା' ଅପେକ୍ଷା ଝିଅର ମା' ନିଜକୁ ଅଧିକ ସୌଭାଗ୍ୟବତୀ କହିବାର ସମୟ ଆସିଛି। କନ୍ୟାମାନେ ପରିବାରର ଗର୍ବ; ଦେଶର ଗୌରବ; ଜାତିର ସ୍ୱାଭିମାନ। ରିଓ ଅଲିମ୍ପିକ୍ସରେ ତ ସେଇକଥା ସେମାନେ ସାବ୍ୟସ୍ତ କରିଦେଲେ। କନ୍ୟା ସନ୍ତାନଙ୍କର ଜୟ ହେଉ। ଦୀର୍ଘଜୀବୀ ହେଉ ସେମାନଙ୍କ ପ୍ରତିଭା।



# ଦକ୍ଷଯଜ୍ଞଠାରୁ ଦାନ ମାଝୀ ପର୍ଯ୍ୟନ୍ତ

ଦକ୍ଷଯଜ୍ଞରେ ଶିବନିନ୍ଦା ସହ୍ୟ କରି ନପାରି ସତୀ ଯଜ୍ଞକୁଣ୍ଡରେ ଆତ୍ମାହୁତି ଦେଇଥିଲେ। ପ୍ରାଣାଧିକା ପତ୍ନୀଙ୍କ ମୃତ୍ୟୁରେ ଶିବ କ୍ରୋଧରେ ଅଜ୍ଞାନ ହୋଇ ଦକ୍ଷଙ୍କର ମୁଣ୍ଡକାଟ କଲେ। ସତୀଙ୍କ ଶବକୁ କାନ୍ଧରେ ବୋହି ଉଦ୍ଦଣ୍ଡ ନୃତ୍ୟ ଆରମ୍ଭ କରିଦେଲେ। ଥରହର ହେଲା ସୃଷ୍ଟି। ଶିବଙ୍କ କ୍ରୋଧକୁ ଶାନ୍ତ କରିବା ପାଇଁ ଦେବତାମାନେ ନାକେଦମ୍ ହୋଇ ଯାଇଥିଲେ।

ଏ ଅଘଟଣରେ ବିଶ୍ୱର କ୍ଷତି ହୋଇଥିଲା ଯେତିକି, ଲାଭ ହୋଇଥିଲା ତା'ଠାରୁ ବେଶୀ। କ୍ଷତି ଭିତରେ ହେଲା ସତୀଙ୍କର ଆତ୍ମଦାହ ଓ ଦକ୍ଷଙ୍କର ମୁଣ୍ଡକାଟ। କିନ୍ତୁ ଲାଭ ହୋଇଥିଲା ଗୁଡ଼ାଏ। ସତୀ ସିନା ଯଜ୍ଞକୁଣ୍ଡରେ ଆତ୍ମଦାହ କରିଥିଲେ, କିନ୍ତୁ ଶିବ ତାଙ୍କ ଶବକୁ କାନ୍ଧରେ ଧରି ଉଦ୍ଦଣ୍ଡ ନୃତ୍ୟ କରିବା ଦ୍ୱାରା ଶବଟି ଖଣ୍ଡବିଖଣ୍ଡିତ ହୋଇ ଯେଉଁ ସ୍ଥାନମାନଙ୍କରେ ପଡ଼ିଲା, ସେଠାରେ ଗୋଟିଏ ଗୋଟିଏ ଶକ୍ତିପୀଠ ଗଢ଼ି ଉଠିଲା। ଏକର ବିନାଶରେ ଅନେକର ସୃଷ୍ଟି ହେଲା। ଆକୁମାରୀ ହିମାଚଳ ପ୍ରତ୍ୟେକ ଶକ୍ତିପୀଠମାନଙ୍କ ମୂଳରେ ଏଇ କିମ୍ବଦନ୍ତୀ ରହିଛି-ତାମିଲନାଡୁର ମୀନାକ୍ଷୀ ମନ୍ଦିରଠାରୁ ଆସାମର କାମାକ୍ଷା ମନ୍ଦିର ପର୍ଯ୍ୟନ୍ତ। ଓଡ଼ିଶାରେ ମଧ୍ୟ ଯାଜପୁରର ବିରଜା ପୀଠରେ ସତୀଙ୍କ ନାଭି ଓ ଗଞ୍ଜାମ ଜିଲ୍ଲାର ତାରାତାରିଣୀଠାରେ ସ୍ତନଦ୍ୱୟ ପଡ଼ିଥିଲା ବୋଲି ଓଡ଼ିଆମାନେ ବିଶ୍ୱାସ କରନ୍ତି। ଅନ୍ୟ ଶକ୍ତିପୀଠମାନଙ୍କରେ ମଧ୍ୟ ତାଙ୍କ ଅଙ୍ଗରୁ କିଛି କିଛି ପଡ଼ିଥିଲା ବୋଲି ବିଶ୍ୱାସ କରାଯାଏ। କାମାକ୍ଷା ମନ୍ଦିର ସମ୍ପର୍କରେ ଚମତ୍କାର କାହାଣୀ ଓ କିମ୍ବଦନ୍ତୀମାନ ଶୁଣିବାକୁ ମିଳିଥାଏ। ସମଗ୍ର ଭାରତବର୍ଷରେ ଶକ୍ତି ଉପାସନାର ଯେଉଁ ପରମ୍ପରା ସୃଷ୍ଟି ହେଲା ଓ ଶକ୍ତିପୀଠମାନ ପ୍ରସିଦ୍ଧି ଲାଭ କଲେ, ତା' ମୂଳରେ ଥିଲା ଦକ୍ଷଯଜ୍ଞର କାହାଣୀ।

କୁହାଯାଏ, ସତୀଙ୍କୁ କାନ୍ଧରେ ବୋହି ଶିବ ଯେଉଁ ଉଦ୍ଦଣ୍ଡ ନୃତ୍ୟ କରିଥିଲେ, ସେଇଥିରୁ ସୃଷ୍ଟି ହୋଇଛି ତାଣ୍ଡବ ନୃତ୍ୟ। ଏହାଛଡ଼ା ଅନ୍ୟ ଯେଉଁ ବଡ଼ ଲାଭଟି ହେଲା, ତାହା ଏ ପର୍ଯ୍ୟନ୍ତ ସୁଦ୍ଧା ଜନମାନସ ପାଇଁ ସତର୍କ ଘଣ୍ଟି ହୋଇ ରହିଛି। ପୌରାଣିକ ଆଖ୍ୟାନ ଅନୁସାରେ, ଦକ୍ଷ ପ୍ରଜାପତିଙ୍କର ଜଣେ ଦକ୍ଷ ଶାସକ ହେବାର ପ୍ରତିଭା ଥିଲା।

ସେଥିପାଇଁ ସେ ଦକ୍ଷ ନାମରେ ନାମିତ ହୋଇଥିଲେ। କିନ୍ତୁ ସେ ଥିଲେ ପ୍ରଚଣ୍ଡ ଅହଙ୍କାରୀ। ଅହଙ୍କାରର ବଶବର୍ତ୍ତୀ ହୋଇ ସେ ଶିବଙ୍କ ମହିମା ଉପଲବ୍ଧି କରିବାର ବୋଧଶକ୍ତି ହରାଇ ବସିଥିଲେ। ତାଙ୍କ ସ୍ନେହାସ୍ପଦ କନ୍ୟା ସତୀ ଶିବଙ୍କୁ ପତି ରୂପରେ ବରଣ କରିଥିବାରୁ ସେ ସତୀଙ୍କୁ ତେଜ୍ୟକନ୍ୟା କରିଥିଲେ ଓ ଅହରହ ଶିବନିନ୍ଦା କରି ଚାଲିଥିଲେ। ଏତେବଡ଼ ପ୍ରତିଷ୍ଠାସମ୍ପନ୍ନ ରାଜାଙ୍କ କନ୍ୟା, ସେ ବିବାହ କରିବ ଏମିତି ଅର୍ଦ୍ଧନଗ୍ନ, ସଂସାରଛଡ଼ା, ଦରିଦ୍ର, ଶୂନ୍ୟବିତ୍ତ ଶିବଙ୍କୁ ! ତାଙ୍କ ଅହଂ ଉପରେ ଏହା ଶକ୍ତ ଚପେଟାଘାତ। ସେ ଶିବଙ୍କୁ ଜାମାତା ରୂପରେ ସ୍ୱୀକାର କରିନଥିଲେ। ସେହି ହେତୁ ଦକ୍ଷଯଜ୍ଞରେ ନିମନ୍ତ୍ରଣ ନଥିଲା ସତୀ କିମ୍ବା ଶିବଙ୍କୁ। କିନ୍ତୁ ନିମନ୍ତ୍ରଣ ନ ପାଇଲେ ସୁଦ୍ଧା ସତୀ ପିତ୍ରାଳୟକୁ ଏକୁଟିଆ ଆସିଥିଲେ। ହେଲେ ଅହଙ୍କାରୀ ଦକ୍ଷ ତାଙ୍କୁ ସ୍ୱାଗତ କରିବା ତ ଦୂରର କଥା, ଶିବନିନ୍ଦାରେ ଆହୁରି ପ୍ରଗଲ୍‌ଭ ହୋଇ ଉଠିଲେ। ଶିବ ଅପମାନ ସହ୍ୟ କରି ନପାରି ସତୀ ଯଜ୍ଞକୁଣ୍ଡରେ ଆତ୍ମାହୁତି ଦେଇଥିଲେ।

ଦକ୍ଷତା ଓ ଅହଙ୍କାର ପରସ୍ପର ବିରୋଧୀ ଗୁଣବତ୍ତା। ଦକ୍ଷତା ଅଥବା ପ୍ରତିଭାସମ୍ପନ୍ନ ବ୍ୟକ୍ତି ସର୍ବଦା ବିନୟୀ, ନମ୍ର ଓ ଶିବ ଅର୍ଥାତ୍ ମଙ୍ଗଳମୟ ହେବା ଉଚିତ ଯାହା ଫଳରେ ତାହା ଜନକଲ୍ୟାଣ ଉଦ୍ଦେଶ୍ୟ ସାଧନ କରିବ। କିନ୍ତୁ ତାହା ଯଦି ଉଗ୍ର ଅହଙ୍କାରୀ, ଅଶିବ ହୁଏ, ତେବେ ଜଗତ ଯନ୍ତ୍ରଣାଦଗ୍ଧ ହେବ। ପୀଡ଼ିତମାନଙ୍କର ଲୁହରେ ଦକ୍ଷତା ଭୂଲୁଣ୍ଠିତ ହେବ। ସେଇ ସୂତ୍ରରେ ମହାଦେବ ଦକ୍ଷ ପ୍ରଜାପତିଙ୍କର ଶିରକୁ ସ୍କନ୍ଧଚ୍ୟୁତ କରିଥିଲେ। ଘଟଣାକୁ ସେ ସେଇଠି ଅନ୍ତ କରି ନଥିଲେ, ବରଂ ଦକ୍ଷତାସମ୍ପନ୍ନ ବ୍ୟକ୍ତି କିପରି ହେବ, ସେଥିପାଇଁ ଉଚିତ ଶିକ୍ଷା ବି ଦେଇଥିଲେ। ଦକ୍ଷ ପ୍ରଜାପତିଙ୍କ ମସ୍ତକରେ ଯୋଡ଼ି ଦେଇଥିଲେ ଛାଗଳ ମସ୍ତକ। ଯାହା ଦକ୍ଷତାସମ୍ପନ୍ନଙ୍କ ପାଇଁ କାମ୍ୟ- ସର୍ବଦା ନମନୀୟ, ତଳମୁହାଁ; ଅହଙ୍କାରରେ ଉର୍ଦ୍ଧ୍ୱମୁଖା ନୁହେଁ। ଯେ ପର୍ଯ୍ୟନ୍ତ ଦକ୍ଷତା ଅହଙ୍କାରରୁ ମୁକ୍ତ ନ ହୋଇଛି, ଏମିତି ସେ ଦକ୍ଷରାଜାଙ୍କର ଦଶା ହିଁ ଭୋଗି ଚାଲିଥିବ। ସେ ନମନୀୟ ନହେବା ପର୍ଯ୍ୟନ୍ତ, ତା'ର ଦକ୍ଷତା ମହତହୀନ ହୋଇଯିବ; ସାଧାରଣ ଜନତାର ହିତରେ ଲାଗି ପାରିବ ନାହିଁ। ପୌରାଣିକ ଆଖ୍ୟାନର ଏ ସାଙ୍କେତିକ ସ୍ୱରୂପକୁ ହୃଦ୍‌ବୋଧ କରିବାର ଆବଶ୍ୟକତା ଆମେ କେବେ ବୁଝିନାହୁଁ।

ଏବେ ଆସିବା ଦାନ ମାଝୀ ପାଖକୁ। ଦାନ ମାଝୀ ସତ୍ୟ ଯୁଗର ଶିବ ନୁହେଁ। ସେ କଳି ଯୁଗର ଶୂନ୍ୟବିତ୍ତ ମଣିଷଟିଏ। କୁହାଯାଏ, ପ୍ରତ୍ୟେକ ଯୁଗରେ ଜଗତରେ ଜଣେ ଜଣେ ଯୁଗୀୟ ଶତ୍ରୁ ଥାଆନ୍ତି। ତ୍ରେତୟା ଯୁଗର ଶତ୍ରୁ ଥିଲା ରାବଣ-ତ୍ରି-ଅକ୍ଷରବିଶିଷ୍ଟ। ଦ୍ୱାପର ଯୁଗରେ ତାହା ଦ୍ୱି- ଅକ୍ଷରବିଶିଷ୍ଟ ହେଲା- କଂସ। କିନ୍ତୁ କଳି

ଯୁଗର ଶତ୍ରୁ ଏକ- ଅକ୍ଷର ବିଶିଷ୍ଟ ମୁଁ- 'ମୁଁ'କାର ବା 'ଅହଙ୍କାର' । ଏଇ ଶତ୍ରୁଟି ଅନ୍ୟ ଯୁଗର ଶତ୍ରୁମାନଙ୍କଠାରୁ ଅଧିକ ଶକ୍ତିଶାଳୀ । ଏହାକୁ ନିପାତ କରିବା ଦୁରାସାଧ । ଏହି ଅହଙ୍କାରର ବଶବର୍ତ୍ତୀ ହୋଇ ମଣିଷ କର୍ତ୍ତବ୍ୟ ହୁଡ଼ିଛି । ସଭ୍ୟତା, ଐଶ୍ୱର୍ଯ୍ୟ, ପ୍ରାଚୁର୍ଯ୍ୟରେ ଏ ଯୁଗର ମଣିଷ ସବୁ ଯୁଗକୁ ଟପି ଯାଇଛି । ବିଜ୍ଞାନର ଉତ୍କର୍ଷ ମଣିଷକୁ ବସ୍ତୁବାଦରେ ଚରମ ସଫଳତା ଆଣି ଦେଇଛି । କେହି ଧନରେ, କେହି ଜ୍ଞାନରେ, କେହି ପ୍ରତିଭାରେ, ଆଉ କେହି କ୍ଷମତାରେ ଅନ୍ଧ ହୋଇ ଧରାକୁ ସରା ଜ୍ଞାନ କରୁଛି । ଅଥଚ ଏହି ମଦମତ୍ତ ମଣିଷମାନେ ମଣିଷପଣିଆର ସର୍ବନିମ୍ନ ଏକକଟିକୁ ହରେଇଛନ୍ତି । ସେଇ ସତ୍ୟକୁ ଅଙ୍ଗୁଳି ନିର୍ଦ୍ଦେଶ କରି ଚେତେଇ ଦେଇଛି ଦୀନହୀନ, ନିଃସ୍ୱ, ନିଃସମ୍ବଳ ଅଥଚ ସମୁଦ୍ର ପରି ଉଦାର ହୃଦୟସମ୍ପନ୍ନ ଦାନ ମାଝୀ । ତା'ର ମଣିଷ ବଳ ନାହିଁ, କ୍ଷମତା ବଳ ନାହିଁ, ଧନ ବଳ ନାହିଁ, ଅଥଚ ପାଖରେ ଥିଲା ଅମାପ ମନୋବଳ । ପତ୍ନୀ ପ୍ରତି ଥିଲା ଶ୍ରଦ୍ଧା ଓ ସମ୍ମାନ । ଜୀବଦ୍ଦଶାରେ ପତ୍ନୀମାନଙ୍କୁ ମରଣାନ୍ତକ ଯନ୍ତ୍ରଣା ଦେଉଥିବା, ସେମାନଙ୍କ ସ୍ୱପ୍ନ ଓ ସମ୍ଭାବନାର ତଣ୍ଟି ଚିପି ହତ୍ୟା କରୁଥିବା ଅହଙ୍କାରୀ ପତିମାନଙ୍କୁ ଜଣେ ଅପାଠୁଆ, ଅଭାବୀ ମଣିଷ ଦେଖେଇ ଦେଲା ପତି- ପତ୍ନୀର ସମ୍ପର୍କ କ'ଣ । ଜଣେ ସଚ୍ଚା ପ୍ରେମିକ ପରି ସେ ପତ୍ନୀର ଶେଷଇଚ୍ଛା ପୂରଣ କରିବା ପାଇଁ ସାହସର ସହ ନିଜ ବାହୁବଳ ଉପରେ ଭରସା କରିଛି । ସରକାରୀ ବାବୁମାନଙ୍କଠାରୁ ନିରାଶ ହୋଇ ସେ ଏକାଏକା ଲକ୍ଷ୍ୟସ୍ଥଳକୁ ଗତି କରିଛି । ଶିବଙ୍କ ପରି ତା' ପାଖରେ ପ୍ରଳୟ ସୃଷ୍ଟି କରିବାର ଶକ୍ତି ନଥିଲା । ଦକ୍ଷମାନଙ୍କୁ ଶିରଚ୍ଛେଦ କରିବାର ସାମର୍ଥ୍ୟ ନଥିଲା । କିନ୍ତୁ ନିରବରେ ସେ ଯେଉଁ ପ୍ରତିବାଦ କଲା, ତାହା ସମଗ୍ର ବିଶ୍ୱ ମାନବର ହୃଦୟ ପର୍ଯ୍ୟନ୍ତ ସଞ୍ଚରି ଗଲା । ପ୍ରତି ମୁହୂର୍ତ୍ତରେ ମାନବିକତାକୁ ହତ୍ୟା କରୁଥିବା ଅହଙ୍କାରୀ ମଣିଷମାନଙ୍କ ଗର୍ବୋଦ୍ଧତ ମସ୍ତକକୁ ଛାଗଳ ମସ୍ତକ କରିଦେଲା । ମୁହୂର୍ତ୍ତକ ପାଇଁ ହେଉ ପଛେ, ମାନବିକତାର ହତ୍ୟାକାରୀ ପ୍ରମତ୍ତ ମଣିଷକୁ ପଶ୍ଚାତ୍ତାପ କରିବାକୁ ବାଧ କରିଦେଲା । ଧନ୍ୟ ସେ ଦାନ ମାଝୀ !

ଦେଶ ଧନଧାନ୍ୟରେ ପରିପୂର୍ଣ୍ଣ ହୋଇଛି । ପ୍ରଜାମାନଙ୍କ ପାଇଁ ସବୁ ସୁଖ ସୁବିଧା ଯୋଗାଇ ଦେଇଛି । ଦେଶରୁ ଦାରିଦ୍ର୍ୟ ଦୂର ହୋଇଛି । ତେଣୁ ସେ ଏବେ ଛତ୍ରପତି । ତାଙ୍କର ସବୁ କର୍ତ୍ତବ୍ୟ ଶେଷ ହୋଇଛି । ସେ ଏବେ ନିଶ୍ଚିତରେ ରାଜସୁଖ ଭୋଗ କରିବେ- ଏମିତି ଅଭିମାନ ଥିଲା ଶିବାଜୀଙ୍କର । ଗୁରୁ ସମର୍ଥ ରାମଦାସ ଶିବାଜୀଙ୍କର ଏ ଅଭିମାନକୁ ଚୂର୍ଣ୍ଣ କରିଥିଲେ । ହାତରେ ଭିକ୍ଷାଥାଳ ଧରି ରାଜ୍ୟସାରା ବୁଲି ପ୍ରଜାମାନଙ୍କ ସୁଖଦୁଃଖ ବୁଝିବା ପାଇଁ ଆହ୍ୱାନ ଦେଇଥିଲେ । ସେଇଥିରୁ ଜଣା ପଡ଼ିବ ରାଜପ୍ରଦତ୍ତ

ସୁବିଧା ସୁଯୋଗରେ ପ୍ରଜାମାନେ ଉପକୃତ ହେଉଛନ୍ତି କି ନାହିଁ। ଦାନ ମାଝୀ ଏ ଯୁଗର ସମର୍ଥ ରାମଦାସ। ଏନ୍ତୁଡ଼ିଶାଳରୁ ଅନ୍ତ୍ୟେଷ୍ଟି କ୍ରିୟା ପର୍ଯ୍ୟନ୍ତ ସବୁ ପ୍ରକାର ସୁବିଧା ସୁଯୋଗ ଜନତାଙ୍କୁ ଯୋଗାଇ ଦିଆଯାଇଛି ବୋଲି ବାହାସ୍ଫୋଟ ମାରୁଥିବା ଶିବାଜୀମାନଙ୍କର ଅଭିମାନକୁ ସେ ଚୂର୍ଣ୍ଣ କରିଛି। ଘଟଣାଟି କେବଳ ସରକାରୀ ଅଫିସର କିମ୍ବା ରାଜନେତାଙ୍କର ମୋହନିଦ୍ରା ଭାଙ୍ଗିନାହିଁ, ଦିନର ଆଲୋକରେ ଏକାକୀ କାନ୍ଧରେ ଶବ ବୋହି ୧୦ କିଲୋମିଟରରୁ ଅଧିକ ବାଟ ଚାଲିଥିବା ମଣିଷଟିକୁ ଦେଖି ସାଧାରଣ ଜନତାର ମଧ୍ୟ ମାନବିକତାର ମହାନିଦ୍ରା ଭାଙ୍ଗିଲା ନାହିଁ, ସେଥିପାଇଁ ସମସ୍ତଙ୍କୁ ଧିକ୍କାର କରୁଛି ସମୟ।

ଜାତିର ଜନକ ମହାତ୍ମା ଗାନ୍ଧୀ କହିଥିଲେ, ଆମେ ଯେତେ ଯାହା ଯୋଜନା କରୁଛେ, ତାହା ଯଦି ସବା ତଳେ ଥିବା ମଣିଷଟିର କାମରେ ଆସିଲା ନାହିଁ, ତା'ହେଲେ ସବୁ ଯୋଜନା ବ୍ୟର୍ଥ। ସରକାରଙ୍କର ସବୁ ଯୋଜନାକୁ ସେ ଗୋଟାଏ ଫୁତ୍କାରରେ ଉଡ଼େଇ ଦିଏ। ସବୁ ଲୋକହିତକର କାର୍ଯ୍ୟ ଲୋକ ଦେଖାଣିଆ, ଆନ୍ତରିକତାହୀନ ବୋଲି ସେ ସାବ୍ୟସ୍ତ କରିଦିଏ- ଯାହା କରି ଦେଖାଇ ଦେଲା ଦାନ ମାଝୀ।



# ମାନିଯିବା ଓ ସହିଯିବା

ମାନିଯିବା ଓ ସହିଯିବା ଏକ କଥା ନୁହେଁ। ଅପରର ଚିନ୍ତା ଚେତନା, ଭିନ୍ନ ଭାବ ଓ ଭାବପ୍ରବଣତା ପ୍ରତି ଏକାତ୍ମ ଓ ସମ୍ବେଦନଶୀଳ, ଶ୍ରଦ୍ଧା ଅନୁରକ୍ତି ପ୍ରକାଶ କରିବା ଗୋଟିଏ କଥା; ବାହ୍ୟ ଚାପ, ବିବେକର ତାଡ଼ନା କିମ୍ବା ଆଇନ କାନୁନ୍ ଭୟରେ ଅନ୍ୟର ଭାବ ଭାବନାକୁ ସହିଯିବା ଆଉ ଗୋଟିଏ କଥା। ପ୍ରଥମଟିରେ ଥାଏ ଭଲ ପାଇବା, ପ୍ରେମ, ସହୃଦୟତା ସହାନୁଭୂତି ପରି ସ୍ୱତଃସ୍ଫୂର୍ତ୍ତ ଉଦାରତା। କିନ୍ତୁ ଦ୍ୱିତୀୟଟିରେ ଥାଏ ବାଧ ବାଧକତା; ଚାପିହୋଇ ରହିଥିବା ଘୃଣା ଅସୂୟା, ହିଂସା, ବାଦ ଆଦି ଅବଦମିତ ଅସହିଷ୍ଣୁତା। ଯେଉଁଠି ଆପଣାପଣ ନଥାଏ, ସ୍ନେହ ସଦିଚ୍ଛା ନଥାଏ, ସେଠି ଅନ୍ୟର ସବୁ ପ୍ରକାର କାର୍ଯ୍ୟକଳାପ ବିଷ ପରି ଲାଗିଥାଏ। ଯିଏ ଯାହାକୁ ରସିଲା, ତାକୁ କିଆ ଫୁଲ ପରି ବାସିଲା। ଏହି ରସିବା ପଣ ଯେଉଁଠି ନାହିଁ, ସେଠି ଖାଲି ନିଆଁ ଝୁଲ ଓ ବାରୁଦ ଗଦାର ସ୍ଥିତି। କେତେବେଳେ ଯେ ତାହା ବିସ୍ଫୋରକ ରୂପ ନେବ, ତାହା କଳ୍ପନାର ବାହାରେ। ଆନ୍ତରିକତାର ସହ ମାନିଯିବାରେ, ହୃଦୟ ଭରି ଆପଣେଇବାରେ ଅସହିଷ୍ଣୁତାର ଆଶଙ୍କା ନଥାଏ। ତେଣୁ ସଂଘର୍ଷର ଭୟ ନଥାଏ। କିନ୍ତୁ ଯେଉଁଠି ସହି ଯିବାର ପ୍ରକ୍ରିୟା ଥାଏ, ସେଠି ମଣିଷ ଓର ଉଣ୍ଡୁଥାଏ। ଅନ୍ୟର ମତକୁ, ଅନ୍ୟର ପଥକୁ ଅଙ୍ଗୁଳି ନିର୍ଦ୍ଦେଶ କରୁଥାଏ। ଖଣ୍ଡ ପ୍ରଳୟ ରଚିବାର ପ୍ରସ୍ତୁତିରେ ଥାଏ।

ଗାଁ ଝିଅମାନେ ଭାଦ୍ରବ ମାସରେ ଖୁଦୁରୁକୁଣୀ ଓଷା କରନ୍ତି। ମାଆ ମଙ୍ଗଳାଙ୍କ ମୃଣ୍ମୟୀ ମୂର୍ତ୍ତି କରି ପୂଜା କରନ୍ତି। ଗୋଟିଏ ଗାଁରେ ହୋଇଥାଏ ଏକାଧିକ ଓଷା କୋଠି। ଗୋଟାଏ ଓଷା କୋଠିର ଝିଅମାନେ ଅନ୍ୟ ଓଷା କୋଠିର ଖୁଦୁରୁକୁଣୀ ବା ଭାଲୁକୁଣୀକୁ ଥଟ୍ଟା କରି ଗୀତ ବୋଲନ୍ତି- 'ନଈରେ ପଡ଼ିଲା ଚଟ୍ଟୁ, ଆମ ଭାଲୁକୁଣୀ ଚହଟଚିକ୍କଣ ତମ ଭାଲୁକୁଣୀ ଫାଟୁ। ଖଇର କୁଣ୍ଡି ତମ ଭାଲୁକୁଣୀ ଉକୁଣିମୁଣ୍ଡି।' ଏସବୁ ବାଳଖିଲ୍ୟତା। ସେଇ ଅବୋଧ ବାଳିକାମାନେ ଜାଣି ନଥାନ୍ତି ଯେ ଦୁଇ ଓଷା କୋଠିର ଦେବୀ ସେଇ ଜଣେ- ମାଆ ମଙ୍ଗଳା। ସେମାନଙ୍କର ଏ ଅବୋଧପଣ ସମାଜର କିଛି କ୍ଷତି କରି ନଥାଏ। କିନ୍ତୁ ପରିପକ୍ୱ ମଣିଷ ମଧ୍ୟରେ ଏ ପ୍ରକାରର ବାଳଖିଲ୍ୟତା ସମାଜର ଅଶେଷ କ୍ଷତି ସାଧନ କରେ। ସେତେବେଳେ ଏହା ଆଉ ଓଷା କୋଠି କିମ୍ବା ସାହି ମେଢ଼ ଭିତରେ ସୀମିତ ହୋଇ ରହି ନଥାଏ; ବିଶ୍ୱ ସ୍ତରକୁ ସଂକ୍ରମିତ

ହୋଇଯାଏ। ନିଜ ନିଜ ଇଷ୍ଟ ଆରାଧ୍ୟଙ୍କୁ ଅନ୍ୟର ଇଷ୍ଟ ଆରାଧ୍ୟଙ୍କଠାରୁ ବଡ଼ କରି ଦେଖାଇବାର ପ୍ରବଣତା ବିଶ୍ୱରେ କେତେ ଯେ ମହାଯୁଦ୍ଧ ସଂଘଟିତ କରିଛି, ତା'ର ଇୟତ୍ତା ନାହିଁ।

ଧର୍ମକୁ କୁହାଯାଏ ଅଫିମ ନିଶା। କାର୍ଲ୍ ମାର୍କ୍ସ ଯେଉଁ ଅର୍ଥରେ ଏହା କହିଥାନ୍ତୁ ନା କାହିଁକି, ଏଇ ନିଶାରେ ଯେତେବେଳେ ମଣିଷ ମସ୍‌ଗୁଲ୍ ହୋଇଯାଏ, ସେ ପ୍ରମତ୍ତ ହୋଇ ଅନେକ ସମୟରେ ଉନ୍ମତ୍ତ କାଣ୍ଡମାନ କରି ବସେ। ତାକୁ ଆୟତ୍ତକୁ ଆଣିବା କଷ୍ଟସାଧ୍ୟ ହୋଇପଡ଼େ। ମଣିଷ ଦେବତା ସୃଷ୍ଟି କରିଛି କି ଦେବତାମାନଙ୍କ ଦ୍ୱାରା ମଣିଷ ସୃଷ୍ଟି ହୋଇଛି, ତାହା ଏକ ଅଛିଣ୍ଡା ବିତର୍କ। ଏହା ଅଣ୍ଡାରୁ କୁକୁଡ଼ା କି କୁକୁଡ଼ାରୁ ଅଣ୍ଡା ପରି ବିତର୍କ। ଗ୍ରୀକ୍ ମାଇଥୋଲୋଜିରେ ରହିଛି- ସଦାସର୍ବଦା ସବୁ ପ୍ରକାର ବିଳାସ ବ୍ୟସନରେ କାଳାତିପାତ କରୁଥିବା ଦେବତାମାନେ ଚାହିଁଲେ ସେମାନଙ୍କର କେହି ଜୟଗାନ କରୁ; ପୂଜାର୍ଚ୍ଚନା କରୁ। ସେହି ହେତୁ ସେମାନେ ସୃଷ୍ଟି କରିଥିଲେ ମଣିଷ। ଖ୍ରୀଷ୍ଟିଆନ୍ ଧର୍ମରେ ଅଛି, ଈଶ୍ୱର ନିଃସଙ୍ଗ ଅନୁଭବ କରିବାରୁ ଆଦାମ୍ ଓ ଇଭ୍‌ଙ୍କୁ ସୃଷ୍ଟି କରିଥିଲେ। ତାଙ୍କଠାରୁ ସୃଷ୍ଟି ହେଲେ ମଣିଷ। ହିନ୍ଦୁ ଧର୍ମରେ ସୁଦ୍ଧା ବ୍ରହ୍ମାଙ୍କ ପୁତ୍ର ମନୁ ଓ ଶତରୂପା ମଣିଷ ସୃଷ୍ଟି କରିଥିଲେ ବୋଲି ଉଲ୍ଲେଖ ଅଛି। ଏ ତ ସବୁ ମଣିଷର ପରିକଳ୍ପନା। କିନ୍ତୁ ଧର୍ମଟା ଯେ ମଣିଷ ସୃଷ୍ଟ, ଏଥିରେ କାହାର ମତାନୈକ୍ୟ ନାହିଁ। ହୃଦ୍‌ବୋଧ ହୁଏ, କ୍ଷୀରରୁ ସର, ଲହୁଣୀ, ଘିଅ, ଦହି, ଛେନା ହେବା ପରି ଏକ ସମୟରେ ମଣିଷ, ଦେବତା ଓ ରାକ୍ଷସ ବା ସଇତାନର ସୃଷ୍ଟି। ସାମାଜିକ ବିବର୍ତ୍ତନ ଧାରାରେ ଯେଉଁମାନେ ଉଚ୍ଚ ଚିନ୍ତା ଚେତନାର ଅଧିକାରୀ ହେଲେ, ସମାଜର ମଙ୍ଗଳ ପାଇଁ କାର୍ଯ୍ୟ କଲେ, ସେମାନେ ସମାଜରେ ସମ୍ମାନାସ୍ପଦ ହେଲେ। ସେମାନଙ୍କୁ ଦେବତାର ମାନ୍ୟତା ମିଳିଲା। ଯେଉଁମାନଙ୍କ ଭାବନା ନୀଚ, ସ୍ୱାର୍ଥ ଓ ଭୋଗସର୍ବସ୍ୱ ହୋଇ ଯେଉଁମାନେ ରହିଲେ, ସେମାନଙ୍କୁ ରାକ୍ଷସ କୁହାଗଲା। ଦେବ ଭାବ ଓ ଆସୁରିକ ଭାବ ମଧ୍ୟରେ ସନ୍ତୁଳନ ରକ୍ଷା କରୁଥିବାମାନଙ୍କୁ କୁହାଗଲା ମଣିଷ। ସେମାନେ ଦୈବୀ ଚେତନାର ଜୟଗାନ କଲେ ଓ ଆସୁରିକ ଚେତନାର ନିନ୍ଦାଗାନ କଲେ। ଦୈବୀଗୁଣ ସମ୍ପନ୍ନମାନଙ୍କ ମଧ୍ୟରେ ଯେଉଁମାନେ ଅଧିକ ଉଚ୍ଚକୁ ଉଠିଗଲେ, ସେମାନଙ୍କୁ ଈଶ୍ୱର ରୂପେ ପୂଜା କରାଗଲା। ରାମ, କୃଷ୍ଣ, ଯୀଶୁ, ମହମ୍ମଦ, ବୁଦ୍ଧ, ନାନକ ଆଦି ମହାମାନବମାନେ ଏହି ପର୍ଯ୍ୟାୟବାଚୀ। ଏମାନେ କେବେ ଚାହାନ୍ତି ନାହିଁ ସେମାନଙ୍କୁ ବଡ଼ କରି ଦେଖାଇବା ପାଇଁ ମଣିଷମାନଙ୍କ ମଧ୍ୟରେ ହିଂସା, ବାଦ, ଯୁଦ୍ଧ ହେଉ। ସେମାନଙ୍କ ପାଇଁ ଫତୁଆ ଜାରି ହେଉ। କେହି କାହାକୁ ହତ୍ୟା ଧମକ ଦେଉ କି କାହାକୁ ଲଣ୍ଡା କରିବା କି ମୁହଁରେ କାଳି ବୋଳିବା ପାଇଁ ପୁରସ୍କାର ଘୋଷଣା କରୁ। ସେମାନଙ୍କ ଉପାସନା ପୀଠକୁ ନେଇ ସୃଷ୍ଟି ହେଉଥିବା ହିଂସା, ବାଦ, ନରସଂହାର

ଲୀଳାରେ ସେମାନେ ଯନ୍ତ୍ରଣା ପାଉଥିବେ। ବିଶ୍ୱର କଲ୍ୟାଣ ପାଇଁ ଜୀବନ ଉତ୍ସର୍ଗ କରିଥିବା ସେମାନଙ୍କୁ ନେଇ ଅକଲ୍ୟାଣକାରୀ ଘଟଣା ପାଇଁ ସେମାନେ ଲଜ୍ଜିତ ହେଉଥିବେ। ଗୋଟିଏ ଗୋଷ୍ଠୀ, ସମ୍ପ୍ରଦାୟର ଉପାସନା ସ୍ଥଳୀକୁ ନୀଚ ଦେଖାଇବା ପାଇଁ ଆମେ ତା'ଠାରୁ ବଳି ବଡ଼ ଉପାସନା ସ୍ଥଳୀ ନିର୍ମାଣ କରୁଛୁ। ଉପାସନା ସ୍ଥଳୀମାନଙ୍କରେ କିଏ କେତେ ଉଚ୍ଚ ସ୍ୱରରେ ଭଗବାନଙ୍କୁ ଡାକି ପାରିବ, ସେଥିପାଇଁ ପ୍ରତିଯୋଗିତା। ବିନା ମାଇକ୍‌ରେ ଈଶ୍ୱର ଉପାସନା ହୋଇପାରୁ ନାହିଁ।

ଯଦି ଈଶ୍ୱର ବୋଲି କେହି ଅଛନ୍ତି ବୋଲି ଆମେ ବିଶ୍ୱାସ କରିବା, ତାଙ୍କ ସମ୍ପର୍କରେ ପୈଗମ୍ବରମାନେ ଯାହା କହନ୍ତି ଅନୁଧ୍ୟାନ କରିବା, ତେବେ ଜାଣି ପାରିବା, ଈଶ୍ୱର ଆଦୌ ଏହି ବିଳାସପୂର୍ଣ୍ଣ ଉପାସନା ସ୍ଥଳୀମାନଙ୍କରେ ବିରାଜମାନ ହେବାପାଇଁ ପସନ୍ଦ କରନ୍ତି ନାହିଁ। ତାଙ୍କର ସବୁଠାରୁ ପ୍ରିୟ ସ୍ଥାନ ହେଉଛି ମଣିଷର ହୃଦୟ। ଏଇ ହୃଦୟ ରୂପକ ସିଂହାସନ ପାଇଁ ସେମାନଙ୍କର ଭାରି ଲୋଭ। ବାହ୍ୟ ଉପଚାର ଅପେକ୍ଷା ଭକ୍ତି ରୂପକ ଫୁଲ ଓ ସମର୍ପଣର ଅର୍ଘ୍ୟରେ ତାଙ୍କର ବଡ଼ ଶ୍ରଦ୍ଧା। ମଣିଷର ଅହଂକାରକୁ ସେମାନେ ଆଦୌ ବରଦାସ୍ତ କରନ୍ତି ନାହିଁ। ସେତକ ଆମେ ତାଙ୍କୁ ଅର୍ପଣ କରି ନ ପାରିଲେ, ଆମର ସବୁ ପୂଜାର୍ଚ୍ଚନା ବ୍ୟର୍ଥ। ସବୁ ଆରାଧନା କେବଳ ଅହଂକାରର ପ୍ରତିରୂପ। ତାଙ୍କୁ ନେଇ ପାଳୁଥିବା ସବୁ ମହୋତ୍ସବ ଲୋକ ଦେଖାଣିଆ। ଥରେ ଆରାଧ୍ୟ ଈଶ୍ୱରମାନଙ୍କ ପ୍ରତି ଆମ ଭିତରେ ନିର୍ମଳ ଭାବ ଭକ୍ତି ଉଦ୍ରେକ ହୋଇଗଲେ, ଆଧ୍ୟାତ୍ମିକତାର ଚେତନା ଭିତରେ ବୁଡ଼ିଗଲେ, ସମଗ୍ର ପୃଥିବୀ ଆମ ପାଇଁ ଭାବର ସାଗର ହୋଇଯିବ। ସମଗ୍ର ବିଶ୍ୱର ଉପାସ୍ୟ ଦେବତାଙ୍କୁ ଆମେ ଆମ ଦେବତାଙ୍କ ଭିତରେ ଅନୁଭବ କରିବା ଓ ଆମ ଉପାସ୍ୟଙ୍କୁ ଆମେ ବିଶ୍ୱର ଉପାସ୍ୟ ଦେବତାଙ୍କ ଭିତରେ ଦେଖିବା। ସଂକୀର୍ଣ୍ଣ ଧାର୍ମିକ ସମ୍ପ୍ରଦାୟର ଗଣ୍ଡି ଭିତରୁ ଉଠି ଆଧ୍ୟାତ୍ମିକତାର ଐଶ୍ୱର୍ଯ୍ୟରେ ଆମେ ଋଦ୍ଧିମନ୍ତ ହୋଇଯିବା। ଯୀଶୁ, କୃଷ୍ଣ, ଆଲ୍ଲା, ବୁଦ୍ଧ- ଆମ ପାଇଁ ସମସ୍ତେ ଏକ ହୋଇଯିବେ। ଆମ ଅହଂକାର ଦୂର ହୋଇଯିବ। ମଣିଷ ଭିତରେ ଦେବ ଭାବର ବନ୍ୟା ସୃଷ୍ଟି ହେବ। ଆମେ ସମସ୍ତେ ଜଣେ ଜଣେ ଈଶ୍ୱର ପାଲଟି ଯିବା। ଅସହିଷ୍ଣୁତା ଶବ୍ଦ ଆମ ଅଭିଧାନରୁ ଉଭେଇ ଯିବ।

ଅପରକୁ ମାନିନେବା କ'ଣ ସତରେ ଏତେ ଦୁଃସାଧ୍ୟ ? ବୋଧହୁଏ ନୁହେଁ। ଥରେ ଆମେ ଆମ ହୃଦୟଟାକୁ ସମୁଦ୍ର ପରି ବିସ୍ତାରି ଦେଲେ ସବୁ ଅମାନିଆପଣ ପୋଷା ବିଲେଇ ପରି କୁଙ୍କୁରି କାଙ୍କୁରି ଶୋଇଯିବ। ସେମାନଙ୍କ ଉପଦ୍ରବ ମହାସାଗରର ମହାଦେହରେ ବିଲୀନ ହୋଇଯିବ। ଧର୍ମ ପାଇଁ ବିଶ୍ୱରେ ଯେତେସବୁ ଅଘଟଣ ଘଟିଛି, ତା'ର ଆଉ ପୁନରାବୃତ୍ତି ହେବନାହିଁ। ମଣିଷଙ୍କ ମଙ୍ଗଳ ପାଇଁ ସଦା ଉନ୍ମୁଖ ଥିବା ଈଶ୍ୱରମାନେ ଆଉ ପୀଡ଼ା ପାଇବେ ନାହିଁ।

# ନିଶାର୍ଦ୍ଧରେ ରାଜରାସ୍ତାରେ ନିଶାଗ୍ରସ୍ତ ଯୁବତୀ

ମହାତ୍ମା ଗାନ୍ଧୀ କହୁଥିଲେ, ଯେଉଁଦିନ ଯୁବତୀଟିଏ ନିଶାର୍ଦ୍ଧରେ ରାଜରାସ୍ତାରେ ଏକାକିନୀ ନିର୍ଭୟରେ ଭ୍ରମଣ କରି ପାରିବ, ସେହିଦିନ ଆମେ ପ୍ରକୃତରେ ସ୍ୱାଧୀନ ହୋଇଛୁ ବୋଲି ହୃଦ୍‌ବୋଧ କରିବା। ମହାତ୍ମା ଗାନ୍ଧୀଙ୍କର ଦୂରଦୃଷ୍ଟି ଥିଲା। ସ୍ୱାଧୀନତା କହିଲେ କେବଳ ରାଜନୈତିକ ସ୍ୱାଧୀନତା ଓ ଅର୍ଥନୈତିକ ସ୍ୱାଧୀନତା କଥା ସେ ବୁଝୁ ନଥିଲେ। ସେ ସାମାଜିକ ସ୍ୱାଧୀନତା କଥା କହୁଥିଲେ। ତାଙ୍କ ବିଚାରରେ ସ୍ୱାଧୀନତାର ଅର୍ଥ, ନିଜେ ଦମ୍ଭ ହୋଇ ଠିଆ ହେବା ସହ ଅନ୍ୟକୁ ମର୍ଯ୍ୟାଦାର ସହ ଠିଆ ହେବାକୁ ସୁଯୋଗ ଦେବା। ଅନ୍ୟର ଆତ୍ମସମ୍ମାନ କ୍ଷୁଣ୍ଣ କରିବାର ଅଧିକାର କାହାର ନାହିଁ। ଆମେ ଯେଉଁ ସ୍ୱାଧୀନତା ଉପଭୋଗ କରୁଛେ, ସେଥିରେ ଅନ୍ୟର ସ୍ୱାଧୀନତା ଯେପରି ବ୍ୟାହତ ନହୁଏ, ସେଥିପ୍ରତି ସଚେତନ ରହିବା ଆମର ସର୍ବନିମ୍ନ କର୍ତ୍ତବ୍ୟ। ଅର୍ଦ୍ଧରାତ୍ରିରେ ଏକାକିନୀ ଯୁବତୀଟିଏ ଯାଉଛି ଅର୍ଥ, ସେ ଅସୁରକ୍ଷିତ ନୁହେଁ। ଅନ୍ୟ କାହାରି ଆଡୁ ସେ ବିପଦର ଆଶଙ୍କା କରୁନାହିଁ। ମାନସିକ ସ୍ତରରେ ସମସ୍ତେ ସୁସ୍ଥ ଓ ବିବେକବନ୍ତ।

ନାରୀମାନଙ୍କ ସମ୍ପର୍କରେ ସେ ଆହୁରି ମଧ୍ୟ କହୁଥିଲେ, ନାରୀଟିଏ ଯେତେଦିନ ପର୍ଯ୍ୟନ୍ତ ନିଜକୁ ମଣିଷଟିଏ ନ ଭାବି ଅବଳା ଦୁର୍ବଳା ଆଉ କାହାର ଅଙ୍କଶାୟିନୀ ବୋଲି ଭାବୁଥିବ, ଅନ୍ୟକୁ ଆକର୍ଷିତ କରିବା ପାଇଁ ନିଜକୁ ସଖୀ କଣ୍ଢେଇଟିଏ ପରି ସଜେଇ ଚାଲିଥିବ, ସେ କଦାପି ପୁରୁଷଠାରୁ ତା'ର ଯଥାର୍ଥ ମର୍ଯ୍ୟାଦା ହାସଲ କରିପାରିବ ନାହିଁ। ଅନେକ କ୍ଷେତ୍ରରେ ନାରୀ ତାର ଅନ୍ତର୍ନିହିତ ଶକ୍ତ ବ୍ୟକ୍ତିତ୍ୱ, ତା'ର ସାମର୍ଥ୍ୟ, ତା'ର ଦକ୍ଷତା, ତା'ର କଳା କୁଶଳତା ପ୍ରଦର୍ଶନ ପରିବର୍ତ୍ତେ ନିଜକୁ ଲବଣୀ ପିତୁଳା, ନରମ କୋମଳ ଦୁର୍ବଳା ବୋଲି କହି ପୁରୁଷର ସମ୍ବେଦନା ହାସଲ କରିବାରେ ଆନନ୍ଦ ଅନୁଭବ କରେ; ପୁରୁଷକୁ ନିଜ ରକ୍ଷାକର୍ତ୍ତା ବୋଲି ଭାବେ, ନିଜର ଅସହାୟତାକୁ ବହୁଗୁଣିତ କରି ପୁରୁଷ ପାଖରେ ଉପସ୍ଥାପନ କରେ। ତା'ର ଫାଇଦା ଉଠାଇଥାନ୍ତି ପୁରୁଷମାନେ। ବିଭିନ୍ନ ଉପାୟରେ ନାରୀଟିର ବିଶ୍ୱାସଭାଜନ ହେବାର ଅଭିନୟ କରି

ସ୍ୱାର୍ଥ ହାସଲ କଲା ପରେ ତାକୁ ପ୍ରତ୍ୟାଖ୍ୟାନ କରନ୍ତି। ନାରୀଟିଏ ଯେ ପର୍ଯ୍ୟନ୍ତ ନିଜକୁ ନାରୀ ବୋଲି ଭାବେ, ତା' ଆଡ଼କୁ ମାଡ଼ିଆସେ ବିପଦ। ସମସ୍ତେ ଦୁର୍ବଳତାର ସୁଯୋଗ ନେବା ପାଇଁ ବାହାରି ଆସନ୍ତି। ଏହାର ଅର୍ଥ ନୁହେଁ ଯେ ନିଜ ସାମର୍ଥ୍ୟ ପ୍ରଦର୍ଶନ ପାଇଁ ଯୁବତୀମାନେ ନିଶାର୍ଦ୍ଧରେ ମାତାଲ ହୋଇ ବୁଲିବେ, ଯାହା ଗଣମାଧ୍ୟମମାନଙ୍କରେ ପ୍ରଦର୍ଶିତ ହୋଇଥିଲା। ସ୍ୱାଧୀନତା ନାମରେ ଏପରି ଉଚ୍ଛୃଙ୍ଖଳତା ଆଦୌ ଶୋଭନୀୟ ନୁହେଁ।

ଆମ ପୂର୍ବଜମାନେ ଆମକୁ ଏକ ସୁନ୍ଦର ପରମ୍ପରା ଦେଇଛନ୍ତି। ଆମର ଐତିହ୍ୟସମ୍ପନ୍ନ ସଂସ୍କୃତି ଅଛି, ଆଗକୁ ମାଡ଼ି ଚାଲିବା ପାଇଁ ପ୍ରଶସ୍ତ ମାର୍ଗ ଅଛି। ସୀତା, ସାବିତ୍ରୀ, ଦ୍ରୌପଦୀ, ଅନସୂୟା, ଶକୁନ୍ତଳା, ଗାର୍ଗୀ ମୈତ୍ରେୟୀମାନଙ୍କ ପରି ମହାନ ନାରୀମାନେ ଆମ ହାତ ଧରି ସେଇ ମାର୍ଗରେ ବାଟ କଢ଼େଇ ଆଗକୁ ନେଉଛନ୍ତି। ତଥାପି କାହିଁକି ଆମକୁ ନେଇ ଏତେସବୁ ଅଘଟଣ ଘଟୁଛି ? ଏତେ ଅପନିନ୍ଦା, କଳଙ୍କ ଆମ ମଥାରେ ଲେପିହୋଇ ଯାଉଛି ! ଲମ୍ପଟ, କାମାତୁର ପୁରୁଷଙ୍କ ଦ୍ୱାରା ବାରମ୍ବାର ପ୍ରତାରିତ ହେଉଛେ ? ଆମ ସନ୍ତାନର ପିତୃ ପରିଚୟ ପାଇଁ ଆମେ ବ୍ୟସ୍ତ ହୋଇ ପଡୁଛେ ? ଆମର ଅଶ୍ଳୀଳ ଭିଡିଓ ସୋସାଲ୍ ମିଡିଆରେ ବୁଲୁଛି ? ନିରୁପାୟ ହୋଇ ଆମ ଭିତରୁ ଅନେକ ଲୋକଲଜ୍ଜା ଭୟରେ ଆତ୍ମହତ୍ୟା କରୁଛନ୍ତି ? ପୁଣି ଅନେକେ ନିଜ ଦାବି ସାବ୍ୟସ୍ତ କରିବାକୁ ଯାଇ ହିଂସାର ଶିକାର ହୋଇ ମୃତ୍ୟୁବରଣ କରୁଛନ୍ତି। ଲକ୍ଷ୍ମଣ ରେଖା ଡେଇଁ କପଟୀ ରାବଣକୁ ବିଶ୍ୱାସ କରିଥିବା ହେତୁ ସୀତାଙ୍କ ଜୀବନ କିପରି ଦୁର୍ବିସହ ହୋଇ ପଡ଼ିଥିଲା ଜାଣି ସୁଦ୍ଧା ଆମେ ବାରମ୍ବାର ଲକ୍ଷ୍ମଣ ରେଖା ଡେଉଁଛୁ ଓ ପ୍ରତାରଣାର ଶିକାର ହେଉଛୁ। ଗର୍ଭସ୍ଥ ସନ୍ତାନର ପିତୃ ପରିଚୟ ପାଇଁ ଶକୁନ୍ତଳାଙ୍କର ସଂଘର୍ଷ ଆମକୁ ଅବିଦିତ ନାହିଁ। ତଥାପି ପ୍ରାକ୍- ବୈବାହିକ ଶାରୀରିକ ସମ୍ପର୍କ ଆମ ଜୀବନକୁ ଅଭିଶପ୍ତ କରି ଦେଉଛୁ। କୁନ୍ତୀଙ୍କର ଅପରିଣାମଦର୍ଶିତା କର୍ଣ୍ଣଙ୍କ ପରି ଶୌର୍ଯ୍ୟବନ୍ତ, ବୀର୍ଯ୍ୟବନ୍ତ ପୁରୁଷଙ୍କୁ ହତଭାଗ୍ୟ କରି ଦେଇଥିଲା; ତାଙ୍କୁ ଅପମାନିତ, ଲାଞ୍ଛିତ, ମାତୃ ସୁଖରୁ ବଞ୍ଚିତ ହେବାକୁ ହୋଇଥିଲା। କୁମାରୀ ମାତୃତ୍ୱ ହାସଲ କରିଥିବା କୁନ୍ତୀ ସାରା ଜୀବନ ଗଭୀର ମନସ୍ତାପ ଭିତରେ ରହିଥିଲେ ବୋଲି ଆମ ପୁରାଣ, ଇତିହାସରେ ବର୍ଣ୍ଣିତ ହୋଇଛି। ତଥାପି ଆମ ସମାଜରେ କୁମାରୀ ମାତୃତ୍ୱର ଅନ୍ତ ହେଉନାହିଁ। ଅନେକ ଅବୈଧ ଶିଶୁଙ୍କୁ ପାଳଗଦା, ଖତଗଦା, ପାଉଁଶ ଗଦା ଅଥବା କାଗଜ କାର୍ଟୁନ୍‌ରେ ପରିତ୍ୟକ୍ତ ଅବସ୍ଥାରେ ଦେଖିବାକୁ ମିଳୁଛି। ଦ୍ରୌପଦୀଙ୍କର ଗୁରୁଜନଙ୍କ ପ୍ରତି ଗୋଟିଏ ଅସଂଯତ ବାକ୍ୟ (ଅନ୍ଧର ପୁଅ ଅନ୍ଧ) କୁରୁକ୍ଷେତ୍ର ଯୁଦ୍ଧ ସଂଘଟିତ କରାଇ

ଥିଲା। ଉଭୟ କୂଳ ଉଚ୍ଛନ୍ନ ହୋଇ ଯାଇଥିଲେ। ଏହା ଜାଣି ସୁଦ୍ଧା ଆମେ ଆମ ଗୁରୁଜନଙ୍କୁ ଅମର୍ଯ୍ୟାଦା କରୁଛୁ। ଆମ ସ୍ୱାର୍ଥପରତା ହେତୁ ଏବେ ସେମାନଙ୍କର ଆଶ୍ରୟ ଜରାଶ୍ରମରେ। ଆମ ସ୍ୱେଚ୍ଛାଚାରିତା ପାଇଁ ଆମ ପରିବାର ଭାଙ୍ଗି ଯିବାର ଅପବାଦ ଆମେ ମୁଣ୍ଡଉଛୁ। ବୟୋଜ୍ୟେଷ୍ଠଙ୍କ ପ୍ରତି ଆମ ବ୍ୟବହାରରେ ଶାଳୀନତା ରହୁନାହିଁ। ଆମର ମଙ୍ଗଳ ପାଇଁ ପ୍ରଣୟନ ହୋଇଥିବା ଆଇନ୍ କାନୁନ୍‌କୁ ଆମେ ଆମର ସୁରକ୍ଷା କବଚ ପରିବର୍ତ୍ତେ ଢାଲ ରୂପେ ବ୍ୟବହାର କରୁଛୁ। ଶେଷରେ ସୁପ୍ରିମକୋର୍ଟ ବି ଅତିଷ୍ଠ ହୋଇ ଏ ଆଇନ୍‌ରେ କିଛି ପରିବର୍ତ୍ତନ କରିବାକୁ ନିର୍ଦ୍ଦେଶ ଦେଲେ।

ଆମେ ଚାହିଁଲେ ଦେଶରୁ ସବୁ ଜରାଶ୍ରମ ରାତି ପାହିଲା ବେଳକୁ ବନ୍ଦ ହୋଇଯିବ। ଆମ ହାତରେ ରହିଛି ଆମ ନୂଆ ପିଢ଼ିକୁ ସଂସ୍କାରଶୀଳ କରି ଗଢ଼ିବାର ଚାବିକାଠି। ନିକଷାର ଅନୁଚିତ ଅଭିଳାଷ ରାବଣକୁ ରାକ୍ଷସରେ ପରିଣତ କରିବାରେ ଋଷି ବିଶ୍ରବା ମଧ୍ୟ ରୋକି ପାରିଲେ ନାହିଁ। ଠିକ୍ ସେମିତି ରାକ୍ଷସ ହିରଣ୍ୟକଶିପୁର ସନ୍ତାନ ପ୍ରହ୍ଲାଦକୁ ପରମ ବିଷ୍ଣୁ ଭକ୍ତ କରିବା କେବଳ କୟାଦୁଙ୍କ ପରି ଗୋଟିଏ ମାଆ ଦ୍ୱାରା ହିଁ ସମ୍ଭବ ହୋଇଥିଲା। ଆମରି ହାତରେ ଅଛି ଗଢ଼ିବାର କଳା କୁଶଳତା; ପୁଣି ଭାଙ୍ଗିବାର ହିଂସ୍ରତା। ଆମରି ସାଧନା ଫଳରେ ମର୍ତ୍ତ୍ୟ ଭୂଇଁ ସ୍ୱର୍ଗରେ ପରିଣତ ହୋଇଯାଏ ତ ସ୍ୱର୍ଗ ରାଜ୍ୟ ନରକରେ ପରିଣତ ହେବା ପାଇଁ ମୁହୂର୍ତ୍ତେ ଲାଗେ ନାହିଁ। ସମାଜର ସକଳ ସୁଖ, ଶାନ୍ତି, ସ୍ୱାଚ୍ଛନ୍ଦ୍ୟ, ପରିପୂର୍ଣ୍ଣତା ଆମରି ହାତରେ ରହିଛି। ଆମେ ଲକ୍ଷ୍ମୀ, ଆମେ ସରସ୍ୱତୀ, ଆମେ ଜଗଦମ୍ବା। ସୃଷ୍ଟିର ସକଳ ଅମଙ୍ଗଳକାରୀ ଉପାଦାନ ଆମରି ହାତରେ ନିଃଶେଷ ହୋଇ ପାରିବ। ଈଶ୍ୱର ଆମକୁ ସେଇ ଶକ୍ତି ଦେଇ ଦୁନିଆକୁ ପଠାଇଛନ୍ତି। ସମଗ୍ର ବିଶ୍ୱ ଭାରତୀୟ ନାରୀର ସେବା, ତ୍ୟାଗ, ତିତିକ୍ଷା, ସତୀତ୍ୱ ଓ ସହିଷ୍ଣୁତାକୁ ସମ୍ଭ୍ରମତାର ସହ ସ୍ୱୀକାର କରିଛି।

ଗୋଟିଏ ଜାତିକୁ ସଂସ୍କୃତିସମ୍ପନ୍ନ କରି ଗଢ଼ି ତୋଳିବାର ଦାୟିତ୍ୱ ଆମ ହାତରେ। ସଞ୍ଜ ସକାଳେ ତେତିଶ କୋଟି ଦେବତାଙ୍କ ଆବାହନ କରି ଆମେ ଆମ ପରିବାରର ମଙ୍ଗଳ ମନାସିବା ସହ ବିଶ୍ୱ କଲ୍ୟାଣ ପାଇଁ ପୂଜାର୍ଚ୍ଚନା କରିଥାଉ। ସବୁ ସନ୍ଧ୍ୟାରେ ଏଥିପାଇଁ ବୃନ୍ଦାବତୀ ମୂଳେ ସଞ୍ଜବତୀ ଜାଳି ଥାଉ। ଆମ ପିତୃପୁରୁଷ ଆମରି ହାତରୁ ପିଣ୍ଡ ପାଇ ସନ୍ତୁଷ୍ଟ ହୋଇ ରହିଥାନ୍ତି। ଆମେ ସୃଷ୍ଟିକର୍ତ୍ତ୍ରୀ, ପାଳନକର୍ତ୍ତ୍ରୀ ପୁଣି ସଂହାରିଣୀ।

ଭାରତୀୟ ନାରୀଙ୍କୁ ମାତୃ ଭାବରେ ନିରାଜନା କରାଯାଇଛି। ବାଳୁତ ଶିଶୁଠାରୁ ଶତାୟୁ ବୃଦ୍ଧା ପର୍ଯ୍ୟନ୍ତ ସମସ୍ତଙ୍କୁ ମାଆ ବୋଲି ସମ୍ବୋଧନ କରାଯାଏ। କିନ୍ତୁ ପାଶ୍ଚାତ୍ୟରେ ଏ ସଂସ୍କୃତି ନାହିଁ। ସେଠାରେ ନାରୀକୁ ସମ୍ବୋଧନ କରାଯାଏ ଡାର୍ଲିଂ ବା ପ୍ରେୟସୀ

ଭାବରେ ଯାହା ମୂଳରେ ଥାଏ ଭୋଗ ଲିପ୍‌ସା। କିନ୍ତୁ ଆମ ସମ୍ବୋଧନରେ ଥାଏ ପବିତ୍ରତା। ଆମ ବ୍ୟକ୍ତିତ୍ୱର ମହନୀୟତା। ବିବେକାନନ୍ଦ କହୁଥିଲେ, ମାତୃଭାବ ସାଧନାର ଶେଷ କଥା। ମାଆ ଯଦି ସଂହାରିଣୀ ରୂପ ନିଏ, ସୃଷ୍ଟିରେ ପ୍ରଳୟ ଘୋଟିଯାଏ। ମା'ର ସଂହାରିଣୀ ମୂର୍ତ୍ତି କସ୍ମିନ୍ କାଳେ ସମାଜ ପାଇଁ ଶୁଭଙ୍କର ନୁହେଁ। ସମସ୍ତେ ଚାହାନ୍ତି ନାରୀଟିଏ ନମ୍ର, କମ୍ର, ସୁଶୀଳା, ସୁଶୋଭନା, ସୁରୁଚି ଓ ସଂସ୍କୃତିସମ୍ପନ୍ନା ହେଉ। ସମାଜକୁ ସ୍ନେହ, ପ୍ରେମ, ସଂପ୍ରୀତି, ସଦ୍‌ଭାବନାରେ ପରିପୂର୍ଣ୍ଣ କରିଦେଉ। ଈଶ୍ୱରଙ୍କର ସୁନ୍ଦରତମ ଓ ମହନୀୟ ସୃଷ୍ଟି ହେଉଛି ନାରୀ। ତା'ର ବାହ୍ୟରୂପ ସୌନ୍ଦର୍ଯ୍ୟ ଯେମିତି ଚିତ୍ତ ଉଲ୍ଲାସକାରୀ, ତା'ର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ସେମିତି ଚମତ୍କାର ଉପାଦାନମାନଙ୍କରେ ଭରପୂର। ନାରୀମାନଙ୍କ ମୋହରେ ଦେବତାମାନେ ବି ମର୍ତ୍ତ୍ୟ ପ୍ରଦେଶକୁ ଅବତରଣ କରିଥାନ୍ତି। ଏତେ ବଡ଼ ଗୌରବର ଅଧିକାରିଣୀ ହୋଇ ଯଦି ଆମେ ତାର ମହତ୍ତ୍ୱ ଉପଲବ୍ଧି କରି ପାରିବା ନାହିଁ, ଭୋଗ ସର୍ବସ୍ୱ କାମନାରେ ଲିପ୍ତ ହୋଇ ନିଜକୁ ହାଟ ବଜାରରେ ନିଲାମ କରିବା, ଏଥିରେ ଦୋଷ କାହାର ? ଶୃଙ୍ଖଳା, ସଂଯମ, ସମ୍ଭ୍ରମତା ପରିତ୍ୟାଗ କରି ଆମେ ଯଦି ସ୍ୱତନ୍ତ୍ରା ହେବା, ମର୍ଯ୍ୟାଦାର ସୀମା ଲଂଘନ କରିବା, ସମସ୍ୟା ଆମର ପିଛା ଛାଡ଼ିବ ନାହିଁ। ଗୋଟିଏ ପୁରୁଷ ପାଖରୁ ପ୍ରତାରିତ ହୋଇ ଆମେ ଆଉ ଗୋଟିଏ ପୁରୁଷ ପାଖରେ ନ୍ୟାୟଭିକ୍ଷା କରୁ। ଏସବୁର ଅନ୍ତ ହେଉ। ଆମ ସମସ୍ୟା ଆମଦ୍ୱାରା ସମାଧାନ ହେଉ।

ଆମେ ଶକ୍ତି, ଆମେ ସଂସ୍କୃତି, ଆମେ ସ୍ୱର୍ଗ, ଆମେ ପ୍ରୀତି, ଆମେ ପ୍ରେମ, ଆମେ ପୂର୍ଣ୍ଣତା। ଆମେ ବସ୍ତ୍ରାବୃତା ହୋଇ ସୃଷ୍ଟିକୁ ଅମୃତ ଦାନ କରୁ, କିନ୍ତୁ ବିବସ୍ତ୍ରା ହେଲେ କାଳୀ ରୂପରେ ରକ୍ତପାନ କରୁ। ଏହି ରୂପରେ ସମାଜ ଆମକୁ ପରିକଳ୍ପନା କରିଛି। ରବୀନ୍ଦ୍ର ନାଥ ଠାକୁର କହିଲେ, ଆମେ କୁଆଡ଼େ ଅର୍ଦ୍ଧେକ କଳ୍ପନା, ପୁଣି ଅର୍ଦ୍ଧେକ ବାସ୍ତବ। ଆମେ କଳ୍ପନା ନୋହୁ କି କାହାର ରଙ୍ଗୀନ୍ ସ୍ୱପ୍ନର ନାୟିକା ନୋହୁଁ। ଆମେ ବାସ୍ତବ; ରକ୍ତମାଂସ ଧାରିଣୀ। ଆମେ ପ୍ରଥମେ ମଣିଷ, ତା'ପରେ ନାରୀ। ଆମର ବି ସ୍ୱପ୍ନ ଅଛି, କଳ୍ପନା ଅଛି, ଆବେଗ ଅଛି, ଲୋଭ ମୋହ ଅଛି, ହିଂସା କ୍ରୋଧ ଅଛି, ଅସହିଷ୍ଣୁତା ଅଛି। ତଥାପି ଆମେ ସୃଷ୍ଟିର ସୁନ୍ଦରତମ ଉପାଦାନ। ସୃଷ୍ଟିକୁ ଅଫୁରନ୍ତ ସୌନ୍ଦର୍ଯ୍ୟରେ ଭରି ନଦେଇ ଆମେ କୁତ୍ସିତ କଳଙ୍କିତ କାହିଁକି କରିବା ?

ଭୈରବ କଲେଜ, ଡାବୁଗାଁ, ନବରଙ୍ଗପୁର
ମୋ: ୯୪୩୭୦୩୩୦୭୪

# ଦୁର୍ଗା ଦଶଭୁଜା

କନ୍ୟା କସ୍ମାତ୍ କମନୀୟା ଭବତି। କନ୍ୟାକୁ ଆମେ କୋମଳା, ସିଗ୍ଧା, କମନୀୟା, ନମନୀୟା କରି ଦେଖିବାରେ ଅଭ୍ୟସ୍ତ। ତାକୁ ଫୁଲଟିଏ ପରି ଗେଲବସର କରି ରଖିଥାଉ। ତା' ଉପରେ ପତ୍ରଟିଏ ପଡ଼ିଲେ ଆମକୁ ପଥରଟିଏ ପଡ଼ିବାର ପୀଡ଼ା ହୁଏ। କୌଣସି ଭିଡ଼ କିମ୍ବା କଷ୍ଟକର କାମ କରିବାର ଥିଲେ ଆମେ ପୁତ୍ର ସନ୍ତାନ କିମ୍ବା ପୁରୁଷମାନଙ୍କ ଦ୍ୱାରା କରାଇ ନେଉ। ସ୍ନେହ ଶ୍ରଦ୍ଧା, ଆଦର ଓ ଗେହ୍ଲା ପଣରେ ଜୁଡୁବୁଡୁ ମୃଦୁନି କୁସୁମାଦପି କନ୍ୟାଟି ଦୁନିଆ ଦାଣ୍ଡରେ ପାଦ ଥାପିଲା ପରେ ବଜ୍ରାଦପି କଠୋରାଣି ହୋଇଯାଏ। ତା' ଜୀବନର ଅଜସ୍ର ଅନୁଭୂତି ତାକୁ ପଥର ପରି ଶକ୍ତ, ଝରଣା ପରି କ୍ରିୟାଶୀଳ କରିଦିଏ। କନ୍ୟାରୁ ପତ୍ନୀ ପଦରେ ଅଭିଷିକ୍ତା ହେବା ପରେ ପ୍ରଥମେ ସେ ହୁଏ ସର୍ଜନାମୟୀ। ସୃଷ୍ଟିର ସବୁଠାରୁ ଯନ୍ତ୍ରଣାଦାୟକ ପ୍ରକ୍ରିୟାକୁ ସ୍ୱତଃ ଆବୋରି ନିଏ। ଅଙ୍ଗକୁ ବିଦୀର୍ଣ୍ଣ କରି, ବକ୍ଷ ଚିରି ଅମୃତ ନିଗାଡ଼ି ଜୀବନଟିଏ ଗଢ଼ି ଥୋଇ ଦିଏ। ବ୍ୟକ୍ତିଗତ ସୁଖ, ସ୍ୱାଚ୍ଛନ୍ଦ୍ୟ ଭୁଲି ଲୁହ ଓ ଲହୁରେ ପରିବାରକୁ ବହୁବର୍ଣ୍ଣା କରିଦିଏ। ସେଇ କମନୀୟା ସଂହାର ମୂର୍ତ୍ତି ଧାରଣ କଲାବେଳେ କି ଯନ୍ତ୍ରଣା ପାଇଥାଏ, ତାହା କେବଳ ଅନୁଭବୀ ହିଁ କହିବ।

ନାରୀ ସର୍ଜିକା; ସର୍ଜନା ତା'ର ଧନ। ତା'ର ସକଳ କମ୍ରତା, ନମ୍ରତା କୋମଳପଣ ସ୍ନିଗ୍ଧ ସୋହାଗ ସୃଜନ କ୍ରିୟା ପାଇଁ ଉଦ୍ଦିଷ୍ଟ। ସୃଷ୍ଟିକୁ ସୁନ୍ଦର ଓ କଲ୍ୟାଣମୟ କରିବା ତା'ର ଧର୍ମ। ସଂହାରିଣୀ ସ୍ୱଭାବ ତାକୁ ଶୋଭା ପାଏନାହିଁ। ଲକ୍ଷ୍ମୀ ଓ ସରସ୍ୱତୀଙ୍କୁ ମଧ୍ୟ ନାରୀ ରୂପରେ ପରିକଳ୍ପନା କରାଯାଇଛି। ସମସ୍ତେ ଉତ୍ସର୍ଗୀକୃତ ଚେତନା ନେଇ ମାନବ କଲ୍ୟାଣ ସାଧନ କରି ଚାଲିଛନ୍ତି। ଜଣେ ପ୍ରାଚୁର୍ଯ୍ୟର ଦେବୀ ତ ଅନ୍ୟ ଜଣେ ଜ୍ଞାନ ଗରିମା, କଳା ସଂସ୍କୃତିର ଦେବୀ; ବୌଦ୍ଧିକତା ପ୍ରଦାୟିନୀ। ଠିକ୍ ସେମିତି ଭୂଦେବୀ, ଶ୍ରୀଦେବୀଙ୍କ ପରିକଳ୍ପନା। ଜଣେ ମାଟି, ଅନ୍ନ କଣିକାର ମାଲିକାଣି- ଅନ୍ନପୂର୍ଣ୍ଣା। ଆଉଜଣେ ଐଶ୍ୱର୍ଯ୍ୟ, ପ୍ରତିପତ୍ତି ଯଶ, କୀର୍ତ୍ତି, କ୍ଷମତାର ଅଧିଷ୍ଠାତ୍ରୀ ଦେବୀ ରାଜଲକ୍ଷ୍ମୀ। ଜଣେ ଅଚଞ୍ଚଳା, ସ୍ଥିରା, ଧୀରା ତ ଅନ୍ୟ ଜଣେ ଚଞ୍ଚଳା, ଚପଳା, ଅସ୍ଥିରା। ମଣିଷ ସମାଜର ମଙ୍ଗଳ କାମନା ନିମନ୍ତେ ଏ ଦେବୀମାନେ ସଦାସର୍ବଦା ଉନ୍ମୁଖ ହୋଇ ରହିଥାନ୍ତି। ଜୀବନକୁ ପ୍ରୀତିମୟ, ନୀତିମୟ କରିଥାନ୍ତି। ନାରୀ ରୂପରେ ମଣିଷ ପରିକଳ୍ପନା କରିଛି ଏ ଦେବୀମାନଙ୍କୁ। ସେହି ପୁଣି ମାନବ ଜୀବନକୁ ଦୁର୍ଭୋଗାକ୍ରାନ୍ତ କରୁଥିବା ମଣିଷମାନଙ୍କ ପାଇଁ ସାଜେ ସଂହାରିଣୀ।

ଶକ୍ତିର ଅନ୍ୟ ରୂପ ନାରୀ। ଆମ ବୈୟାକରଣିକମାନେ ଶକ୍ତି ଶବ୍ଦକୁ ସ୍ତ୍ରୀ ଲିଙ୍ଗ ବାଚକ ରୂପେ ଗ୍ରହଣ କରିଛନ୍ତି। ନାରୀଟିଏ କିପରି ଅଦ୍ଭୁତ ଶକ୍ତିର ପ୍ରତୀକ, ତାହା ତା'ର

ଦୈନନ୍ଦିନ ଜୀବନ ଚର୍ଯ୍ୟାରୁ ଅନୁଭୂତ ହୁଏ । ସେ କଲ୍ୟାଣମୟୀ । ଆଦିମ ମଣିଷ ଯେବେଠାରୁ ପାରିବାରିକ ଜୀବନ ଆରମ୍ଭ କରିଛି, ତା' ଉପରେ ଯାବତୀୟ ବୋଝ ଲଦି ହୋଇ ପଡ଼ିଛି । ଶିଶୁଟିକୁ କୋଳରେ ଧରି ସେ ପରିବାର ସଦସ୍ୟଙ୍କ ଖାଦ୍ୟ ପ୍ରସ୍ତୁତି ପାଇଁ ଜଳ ଓ ଜାଳେଣି ସଂଗ୍ରହ, ସ୍ୱାସ୍ଥ୍ୟସେବା, ପରିମଳ ବ୍ୟବସ୍ଥା, ସଂସ୍କୃତି ସୁରକ୍ଷା ଦାୟିତ୍ୱ ସମ୍ପନ୍ନ କରିଥାଏ । ପରିବାରକୁ ସକଳ ଅମଙ୍ଗଳ ଓ ଅପଶକ୍ତି ପ୍ରଭାବରୁ ମୁକ୍ତ କରିବା ପାଇଁ ଉପାସ ବ୍ରତ, ପୂଜା ଆରାଧନା କରି ଦେବଦେବୀଙ୍କୁ ସନ୍ତୁଷ୍ଟ ରଖେ । କେତେବେଳେ ଲକ୍ଷ୍ମୀ, କେତେବେଳେ ସରସ୍ୱତୀ ତ ପୁଣି କେତେବେଳେ ଭୂଦେବୀ ଅଥବା ଶ୍ରୀଦେବୀ । ଏକ ନାରୀ, ରୂପ ଅନେକ । ଦ୍ୱିଭୁଜା ନୁହେଁ କି ଦଶଭୁଜା ନୁହେଁ, ସହସ୍ରଭୁଜା । ଅଶିକ୍ଷିତ, ଶ୍ରୀ ଅକ୍ଷର ବିବର୍ଜିତ ନାରୀଟିଏବି ଏକ ସମୟରେ ବହୁବିଧ ସମସ୍ୟାର ସମାଧାନ୍ କରିବାର ସାମର୍ଥ୍ୟ ରଖୁଥିଲା । ଢିଙ୍କି, ଶିଳ, ଚକି, କାଠଚୁଲି ଆଦି ସାହାଯ୍ୟରେ ନଦୀ ନାଳ, କୂଅ ପୋଖରୀରୁ ଜଳ ଓ ଜଙ୍ଗଲରୁ ଜାଳ ଆଣି ସେ ଠିକ୍ ସମୟରେ ପରିବାର ସଦସ୍ୟଙ୍କ ମୁଖରେ ଅନ୍ନ ପରଷି ଦେଉଥିଲା । ଅବଶ୍ୟ ପରିସ୍ଥିତିରେ କିଛି ସୁଧାର ଆସିଛି, କିନ୍ତୁ ସମ୍ପୂର୍ଣ୍ଣ ନୁହେଁ । ନିଜ ପଣତ ଉହାଡ଼ି  ଯମ ଦାଢ଼ରୁ ପରିବାର ସଦସ୍ୟଙ୍କୁ ସୁରକ୍ଷା ଦେବାରେ ନାରୀର ପ୍ରଚେଷ୍ଟା ତ ଜୀବନବ୍ୟାପି । ଅନ୍ତିମ ଶଯ୍ୟାରେ ବି ସେ ନିଜର କଲ୍ୟାଣ ପରିବର୍ତ୍ତେ ପରିବାରର ମଙ୍ଗଳ ମନାସୁ ଥାଏ । ଆଉ ଏବେ ଏକବିଂଶ ଶତାବ୍ଦୀର ନାରୀ ତ ସହଜେ ଶତଧା ବିଭକ୍ତ । ତାକୁ କୁହାଯାଉଛି ଅଲଟ୍ରା ମଡର୍ଣ୍ଣ, ମଲ୍ଟି ଟ୍ୟାଲେଣ୍ଟେଡ୍ ଓ ସୁପର ୱିମେନ୍- ଅତ୍ୟାଧୁନିକା, ବହୁ ପ୍ରତିଭାର ଅଧିକାରିଣୀ, ସର୍ବଶକ୍ତିମୟୀ । ପରିବାରର ଆବଶ୍ୟକତା ମେଣ୍ଟାଇବା ପାଇଁ ସେ ଆଉ ଢିଙ୍କି ଉପରେ ପାଦ ରଖୁନି କି ଶିଳ ଚକି କିମ୍ବା କାଠଚୁଲି ଫୁଙ୍କୁନାହିଁ ସତ, କିନ୍ତୁ ତା' କାର୍ଯ୍ୟ ପରିସର ସଙ୍କୁଚିତ ହୋଇନାହିଁ । ଗ୍ୟାସ୍ କିମ୍ବା ବୈଦ୍ୟୁତିକ ଚୁଲି, ଗ୍ରାଇଣ୍ଡର, ମାଇକ୍ରୋୱେଭ୍ ଓଭେନ୍, ୱାଶିଂ ମେସିନ୍, ଭ୍ୟାକୁମ୍ କ୍ଲିନର୍‌ରେ ଯାବତୀୟ ଗୃହକର୍ମ ସମ୍ପନ୍ନ କରି ବସିପଡ଼େ କମ୍ପ୍ୟୁଟର ସାମ୍ନାରେ । କି- ବୋର୍ଡ୍‌ରେ ଅଙ୍ଗୁଳି ଚାଳନା କରି ଇ- ମେଲ୍ ଜରିଆରେ ବାହାର କାମ ସମ୍ପନ୍ନ କରିବାରେ ସେ ବେଶ୍ ନିପୁଣା । ତା ସମୟ ଅଳସ ବିଳାସରେ କଟେନାହିଁ । ଅଙ୍ଗନୱାଡ଼ିରେ ଶିଶୁମାନଙ୍କର ଯତ୍ନ ଓ ସ୍କୁଲ କଲେଜରେ ଶିକ୍ଷାଦାନ ବେଳେ ସେ ସେବିକା ଓ ଶିକ୍ଷୟିତ୍ରୀ । କୋର୍ଟ କଚେରୀରେ ଓକିଲ ଓ ବିଚାରପତି, ଥାନାରେ ପୁଲିସ, ଡାକ୍ତରଖାନାରେ ଡାକ୍ତର, ନିର୍ମାଣ କ୍ଷେତ୍ରରେ ଯନ୍ତ୍ରୀ, ଅନ୍ତରୀକ୍ଷ ଅଭିଯାନରେ ମହାକାଶଚାରିଣୀ, ବିଜ୍ଞାନ କ୍ଷେତ୍ରରେ ଗବେଷିକା, ବୈଜ୍ଞାନିକା । ସମାଜର ଏମିତି କୌଣସି କ୍ଷେତ୍ର ନାହିଁ ଯେଉଁ ପର୍ଯ୍ୟନ୍ତ ନାରୀର ସାମର୍ଥ୍ୟ ପହଞ୍ଚି ପାରିନାହିଁ । କଳା, ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ତ ସେ ପୁରୁଷ ଅପେକ୍ଷା କାହିଁ କେତେ ଗୁଣ ଉଚ୍ଚରେ । ବହୁରାଷ୍ଟ୍ରୀୟ କମ୍ପାନୀରେ ଯୋଗଦେଇ ସାରା ପୃଥିବୀକୁ ସେ ତା'ର କର୍ମକ୍ଷେତ୍ର କରିନେଇ ସାରିଛି । ରାଜନୀତି କ୍ଷେତ୍ରରେ ସେ ତା'ର ଅସ୍ତିତ୍ୱ ଜାହିର କରିଛି । ସମାଜ ସେବା କ୍ଷେତ୍ରରେ ଭୋକିଲା ପେଟକୁ ଦାନା ଓ ଫୁଙ୍ଗୁଳା ପିଠିକୁ କନାର

ବ୍ୟବସ୍ଥା କରି ପାରିଛି। ଅନେକଙ୍କ ଆଖିରୁ ଲୁହ ପୋଛି ଓଠରେ ହସ ଭରି ଦେଇଛି। ସାମାଜିକ ନ୍ୟାୟ ଦାବି କରି ରାଜରାସ୍ତା ଅବରୋଧ କରି ଅନ୍ୟମାନଙ୍କୁ ନ୍ୟାୟ ପ୍ରଦାନ କରି ପାରୁଛି। ତଥାପି ନାରୀର ନିସ୍ତାର ନାହିଁ। ପୁରୁଷଙ୍କ ଯୌନ ଲାଳସା ଓ ସ୍ୱାର୍ଥପରତାର ଅକ୍ଟୋପସୀ ଆଲିଙ୍ଗନରୁ ସେ ମୁକ୍ତ ହୋଇପାରୁ ନାହିଁ। ପୁରୁଷ ଦମିତ ସମାଜ ବ୍ୟବସ୍ଥାରେ ତଥାପି ସେ ଆକ୍ରାନ୍ତ। ବିଭିନ୍ନ ପ୍ରକାରର ସାମାଜିକ ତାଡ଼ନାରୁ ସେ ତ୍ରାହି ପାଇପାରୁ ନାହିଁ। ଆଗରେ କାର୍ଯ୍ୟର ବୋଝ। ସହସ୍ର ଭୁଜରେ ସେ ଦାୟିତ୍ୱ ନିର୍ବାହ କରିବାରେ ବ୍ୟସ୍ତ। ମାତ୍ର ତା ପାଦ ସମ୍ପର୍କରେ କେହି ସହାନୁଭୂତିସମ୍ପନ୍ନ ନୁହନ୍ତି। ଦୁଇଟି ପାଦରେ ସେ ସନ୍ତୁଳିତ ହୋଇ ଠିଆ ହେଉଛି। ପୁଣି ତା' କାର୍ଯ୍ୟ ନିର୍ଘଣ୍ଟରେ ପୁରୁଷର ଅବାଞ୍ଛିତ ହସ୍ତକ୍ଷେପ। ତାକୁ ଅନାବଶ୍ୟକ ଆଦେଶ, ଉପଦେଶ, ନିର୍ଦ୍ଦେଶନାମା। ତା' ପାଇଁ ସାମାଜିକ ଶୃଙ୍ଖଳ। ସ୍ୱାମୀ ବିବେକାନନ୍ଦ ନାରୀମାନଙ୍କ ବ୍ୟାପାରରେ ପୁରୁଷର ଅଯଥା ହସ୍ତକ୍ଷେପରେ ବ୍ୟଥିତ ହୋଇ କହୁଥିଲେ, ଦୁଇଟି ନାରୀଙ୍କ ବିବାଦରେ ପୁରୁଷଟି ଯେଉଁଠି ସମାଧାନ କରିବାକୁ ଆସେ, ସେଇଠି ମାଡ଼ିଆସେ ନାରୀ ପାଇଁ ସମସ୍ୟା। ସେମାନେ ଟାଣି ଦିଅନ୍ତି ନାରୀ ପାଇଁ ଲକ୍ଷ୍ମଣ ରେଖା। ନାରୀର ସ୍ୱଚ୍ଛନ୍ଦ ଜୀବନ ବିପର୍ଯ୍ୟସ୍ତ ହୁଏ। ବୌଦ୍ଧ ଭିକ୍ଷୁଣୀ ସଂଘର ବିଫଳତା ମୂଳରେ ତ ସେହି କାରଣ ହିଁ ଥିଲା। ଭିକ୍ଷୁଣୀ ସଂଘର ପରିଚାଳକ ଥିଲେ ପୁରୁଷ। ଅଥଚ ଏବେ ସମଗ୍ର ବିଶ୍ୱରେ ପ୍ରଜାପିତା ବ୍ରହ୍ମାକୁମାରୀ ସଂସ୍ଥାର ଅଭୂତପୂର୍ବ ସଫଳତା ମୂଳରେ ଥିବା ରହସ୍ୟ ହେଉଛି, ନାରୀମାନେ ହିଁ ହେଉଛନ୍ତି ତା'ର ପରିଚାଳିକା। ଏଥିରୁ ଆମର ଶିଖିବାର କଥା। ଦଶଭୁଜା ଦେବୀଙ୍କ ପାଇଁ ଦ୍ୱିପାଦ ପରିକଳ୍ପନା ଆମ ପୂର୍ବସୁରୀମାନଙ୍କର ଦୂରଦୃଷ୍ଟିର ଅଭାବର ହେତୁ ବୋଲି ଅନୁଭୂତ ହୁଏ। ସେହି ହେତୁ ନାନାବିଧ ଅସନ୍ତୁଳନରେ ନାରୀ ଏ ପର୍ଯ୍ୟନ୍ତ ପୀଡ଼ିତା ହୋଇ ଆସୁଛି। ପୁଣି ରୀତିନୀତି, ଐତିହ୍ୟ, ପରମ୍ପରା ନାଁରେ ଦୁଇ ପାଦରୁ ଏକ ପାଦ କରିବାର ଷଡ଼ଯନ୍ତ୍ରରେ ସେ ଅହରହ ଅତିଷ୍ଠା।

ଏବେ ପାର୍ବଣର ଋତୁ। ମହାମାୟା ଦୁର୍ଗା ଆସୁଛନ୍ତି ଧରା ଧାମକୁ। ସହରଠାରୁ ପଲ୍ଲୀ ପର୍ଯ୍ୟନ୍ତ ସବୁଠି ମହାମାୟାଙ୍କ ମହାପୂଜା। କେଉଁଠି ଷଡ଼ଭୁଜା ତ କେଉଁଠି ଅଷ୍ଟଭୁଜା, ପୁଣି କେଉଁଠି ଦଶଭୁଜା। ମାଆଙ୍କ ଶକ୍ତିର କଳନା ନାହିଁ। ଅସ୍ତ୍ରଶସ୍ତ୍ର ବିଭୂଷିତା ଐଶ୍ୱର୍ଯ୍ୟମୟୀ ମହାଦେବୀ ଆସିଛନ୍ତି ଅଜ୍ଞତା, ହିଂସ୍ରତା ଓ ପାଶବିକତାକୁ ବଳି ଦେଇ ମାନବିକତାର ଜୟଗାନ କରିବା ପାଇଁ। ମଣିଷକୁ ମଣିଷପଣରେ ବିଭୂଷିତ କରିବାକୁ। ସେଇଥିପାଇଁ ତ ଦଶହରା ପୂଜା। ଦିଗହରା ମଣିଷକୁ ଦିଗନ୍ତର ସନ୍ଧାନ ଦିଅନ୍ତୁ ମାଆ ଦୁର୍ଗତିନାଶିନୀ ଦୁର୍ଗା। ଦଶଭୁଜାର ସାମର୍ଥ୍ୟରେ ସମର୍ଥ ଜୀବନ୍ତ ଶକ୍ତିମୟୀ ମାଆଙ୍କୁ ସେମାନେ ବହୁପାଦୀ କରନ୍ତୁ; ଏକପାଦୀ କରନ୍ତୁ ନାହିଁ। ଚଳନ୍ତା କଲ୍ୟାଣମୟୀମାନଙ୍କର ଅଜସ୍ର ସମ୍ଭାବନାର ପଥ ଅବରୋଧ କରନ୍ତୁ ନାହିଁ, ଉନ୍ମୁକ୍ତ କରନ୍ତୁ। ଉତ୍‌କ୍ରାନ୍ତ ହୋଇ ସେମାନେ ସମାଜରୁ ସବୁ ଅପଘାତ ଦୂର କରିବାରେ ସମର୍ଥ ହୁଅନ୍ତୁ। ସେମାନଙ୍କ ଅବଦାନରେ ସମାଜର ଶ୍ରୀବୃଦ୍ଧି ହେଉ। ମାଆଙ୍କ ପାଦ ତଳେ ଅଜସ୍ର ପ୍ରଣାମ।



# ମାତୃପକ୍ଷ

ମହାଳୟା ଅମାବାସ୍ୟା ପରେ ଶେଷ ହେଲା ପିତୃପକ୍ଷ। ପିତୃପୁରୁଷଙ୍କୁ ଶ୍ରଦ୍ଧା ସମ୍ମାନ ଜଣାଇ ଶ୍ରାଦ୍ଧ ତର୍ପଣ କରାଗଲା। ସେମାନଙ୍କ ଆଶୀର୍ବାଦ କାମନା କରି ଜୀବନର ଯାତ୍ରା ଆରମ୍ଭ ହେଲା। ପୁଣି ଗୋଟିଏ ବର୍ଷର ପ୍ରତୀକ୍ଷା। ଠିକ୍ ତା' ପରେ ପରେ ଆରମ୍ଭ ହୋଇଛି ମାତୃ ଆବାହନୀ; ଭିନ୍ନାର୍ଥରେ ମାତୃପକ୍ଷ। ଦୁର୍ଗତି ନାଶିନୀ ଦୁର୍ଗା ଧରାଧାମକୁ ଆସିଲେ ଧରାଧାମର ସକଳ ଅପକାରୀ ଶକ୍ତିକୁ ବିନାଶ କରିବାର ପ୍ରତିଶ୍ରୁତି ନେଇ। ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଲେ ଧରାବାସୀ। ମା' ଦୁର୍ଗାଙ୍କ ଆଗମନୀରେ ସମାଜରୁ ସବୁ ଅମଙ୍ଗଳକାରୀ ଶକ୍ତିର ଧ୍ୱଂସ ହୋଇ ହିତକାରୀ ଶକ୍ତିର ଉନ୍ମେଷ ହେଉ, ଏହି କାମନାରେ ଅପଶକ୍ତିର ପ୍ରତୀକ ରାବଣ ପୋଡ଼ି ପର୍ବ ମହା ଉଲ୍ଲାସରେ ପାଳନ କରାଗଲା। ବାଣ ରୋଷଣିରେ ଥିବା ଆସୁରିକ ପ୍ରବୃତ୍ତିକୁ ଜାଳିପୋଡ଼ି ଧ୍ୱଂସ କରିବାର ଏହା ଥିଲା ପ୍ରତୀକାତ୍ମକ ପ୍ରୟାସ।

ଆମ ଅନ୍ତଃକରଣର ଆସୁରିକ ଚେତନାର ବିନାଶ ହେଲା କି ନାହିଁ, ତାହା ତ ଭିନ୍ନ ପ୍ରସଙ୍ଗ; କିନ୍ତୁ ଦୁର୍ଗାପୂଜା ପେଣ୍ଡାଲ ଉପରେ ଦିନରାତି ଅଶ୍ଳୀଳ ସଙ୍ଗୀତ ଓ ଯୌନ ଉଦ୍ଦୀପକ ନୃତ୍ୟ ଗୀତକୁ ବେଶ୍ ଉପଭୋଗ କଲେ ଜନତା। ଆଧ୍ୟାତ୍ମିକ ଚିନ୍ତନର ଗାମ୍ଭୀର୍ଯ୍ୟ ମାଦକୀୟ ଉନ୍ମାଦନାରେ ବିପର୍ଯ୍ୟସ୍ତ ହେବା ସମସ୍ତେ ଅନୁଭବ କଲେ। ତଥାପି ମା'ଙ୍କ ବିସର୍ଜନ ବେଳେ କୌଣସି ଟିକିଏ ବି ତ୍ରୁଟି ରହିଲା ନାହିଁ। ବାଣ ରୋଷଣି ସହ ସଙ୍ଗୀତ ବାଦ୍ୟ ଓ ଉଦ୍ଦଣ୍ଡ ନୃତ୍ୟ। ଅସୁର ନିଧନକାରିଣୀ ମା'ଙ୍କୁ ବିଦାୟ ଦେଇ ଅପଶକ୍ତିମାନଙ୍କର ବିନାଶ ହୋଇଛି ବୋଲି ଭାବି ଆମେ ବିଭୋର ହେଲୁ।

ଅପଶକ୍ତି ମୁକ୍ତ ସମାଜକୁ ଶ୍ରୀମଣ୍ଡିତ କରିବା ପାଇଁ ଐଶ୍ୱର୍ଯ୍ୟମୟୀ ରୂପରେ ଆବିର୍ଭାବ ହେଲେ ମହାଲକ୍ଷ୍ମୀ। ପ୍ରାଚୁର୍ଯ୍ୟର ପ୍ରତୀକ ଅନ୍ନପୂର୍ଣ୍ଣା ଲକ୍ଷ୍ମୀ। ସେ ପୁଣି ଆସୁଛନ୍ତି ଗଜଲକ୍ଷ୍ମୀ ବେଶରେ। ଗଜ ଐଶ୍ୱର୍ଯ୍ୟର ପ୍ରତୀକ। ଗଜ ବାହନରେ ରାଜରାଜେଶ୍ୱରୀ ମା' ଅପର୍ଣ୍ଣା ଧରାଧାମକୁ ଶ୍ରୀପର୍ଣ୍ଣା କରିବାର ପ୍ରତିଶ୍ରୁତି ଦେଇ ଆସିଲେ। ତାଙ୍କ ପୂଜା ଆରାଧନା ସମ୍ପନ୍ନ ହେଲା। ପୁଣି ଆଗମନୀ ହେବ କାଳିକା ମାତା ମହାକାଳୀଙ୍କର। ଭିନ୍ନଭିନ୍ନ ରୂପରେ ମା'ଙ୍କର ଆଗମନରେ ବସୁଧା ହୁଏ ମାତୃମୟ। ମାତୃଶକ୍ତି ବିନା ସୃଷ୍ଟି ସଂସାଧନ

କଳ୍ପନାତୀତ। ଅନ୍ତୁଡ଼ି ନିଆଁରୁ ଅନ୍ତ୍ୟେଷ୍ଟି ଜୁଇ ପର୍ଯ୍ୟନ୍ତ କେତେବେଳେ କଲ୍ୟାଣମୟୀ ମା' ଷଷ୍ଠୀ ଦେବୀ ରୂପେ ସେ ଆମ କପାଳରେ ଭାଗ୍ୟରେଖା ଆଙ୍କିଦିଏ ତ ପୁଣି ମଶାଣି ଚଣ୍ଡୀ ରୂପେ ଆମ ମର ଶରୀରକୁ କୋଳେଇ ନିଏ। ମାତୃଭାବ ସାଧନାର ଶେଷ କଥା- କହିଥିଲେ ବିବେକାନନ୍ଦ।

ମା' କାଳୀ ଆସିବେ। ତାଙ୍କ ଆଗମନୀ ପାଇଁ ଚାଲିଛି ପ୍ରାକ୍ ପ୍ରସ୍ତୁତି। ମା'ଆ କାଳୀ, କରାଳୀ, ନରମୁଣ୍ଡ ମାଳିନୀ। ସେ କୁଆଡ଼େ ରକ୍ତପାନ କରନ୍ତି। ବାରହାତ ଜିଭ ବାହାର କରି ଉଲଗ୍ନ ହୋଇ ତାଣ୍ଡବ ନୃତ୍ୟ କରନ୍ତି। ଏକଦମ୍ ଅରଣ୍ୟା। ଏକାନ୍ତରେ ଦେଖିଲେ ଭେଟଣା ହୋଇଯିବା ପରି ଭୟଙ୍କର ରୂପ। ତେବେ ମା'ଙ୍କର ଏ କ୍ରୂରା କରାଳୀ ରୂପର ପରିକଳ୍ପନା କି ସତ୍ୟ ବୟାନ କରୁଛି ? ଯିଏ ଆଦ୍ୟାଶକ୍ତି, ଯିଏ ସର୍ବ ମଙ୍ଗଳମାଙ୍ଗଲ୍ୟେ ଶିବେ ସର୍ବାର୍ଥ ସାଧିକା, ଯାହାଙ୍କ ବିନା ଶିବ ନିଷ୍କ୍ରିୟ, 'ଇ'କାରାନ୍ତ କଟିଯାଇ ଶିବ 'ଶବ' ପାଲଟି ଯାଆନ୍ତି, ତାଙ୍କୁ ଏପରି ଧ୍ୱଂସମୁଖିନୀ ରୂପେ କାହିଁକି ପରିକଳ୍ପନା କରାଯାଇଛି ?

ମା' କାଳିକାଙ୍କର ଏ ଅରଣ୍ୟା ଅବତାର ସମ୍ପର୍କରେ ଗୁଡ଼ାଏ ପୌରାଣିକ ଆଖ୍ୟାନ ଉପାଖ୍ୟାନ ରହିଛି। ଦୁର୍ଦ୍ଧର୍ଷ ଚଣ୍ଡ ମୁଣ୍ଡଙ୍କୁ ହତ୍ୟା କରିବା ପାଇଁ ଗୌରବର୍ଣ୍ଣା ଦୁର୍ଗା କ୍ରୋଧରେ ଏମିତି ଜଳିଗଲେ ଯେ ତାଙ୍କ ଶରୀର କଳା ପଡ଼ିଗଲା। ସେତିକି ବେଳେ ତାଙ୍କ କପାଳରୁ ବାହାରି ଆସିଲେ ମହାକାଳୀ। ସେହି ଉଗ୍ର ବ୍ୟକ୍ତିତ୍ୱ ବଧ କରିଥିଲା ଚଣ୍ଡ ମୁଣ୍ଡଙ୍କୁ। ରକ୍ତବୀଜ ରାକ୍ଷସ ମା' କାଳୀଙ୍କୁ ରକ୍ତପାନ କରିବାକୁ ବିବଶ କରି ଦେଇଥିଲା। ରକ୍ତବୀଜ ରାକ୍ଷସର ଯେତେ ବିନ୍ଦୁ ରକ୍ତ ଭୂମିରେ ପଡୁଥିଲା, ସେତେ ନୂଆ ନୂଆ ରକ୍ତବୀଜ ସୃଷ୍ଟି ହେଉଥିଲେ। ତାଙ୍କୁ ହତ୍ୟା କରିବା ମା' କାଳୀଙ୍କ ପକ୍ଷରେ କେବଳ ଦୁଃସାଧ୍ୟ ନୁହେଁ, ଅସମ୍ଭବ ହୋଇ ପଡ଼ିଥିଲା। ତେଣୁ ମା' ରକ୍ତବୀଜର ବିନ୍ଦୁଏ ବି ରକ୍ତ ଭୂମି ସ୍ପର୍ଶ କରିବାକୁ ନଦେଇ ସବୁ ପାନ କରି ନିପାତ କରିଥିଲେ ରକ୍ତବୀଜକୁ।

କୁହାଯାଏ ଶିବଙ୍କ ସଂସାରରେ ଗୌରୀ ଓ କାଳୀ ଦୁଇ ବିପରୀତମୁଖୀ ଚରିତ୍ର। ଗୌରୀ ତାଙ୍କର କୋମଳ ସ୍ନିଗ୍ଧ ଓ ନମ୍ର କମ୍ର ବ୍ୟବହାରରେ ଶିବଙ୍କର ଅମାର୍ଜିତ ରୁଦ୍ରତାକୁ ଶାନ୍ତ, କାନ୍ତ ଓ ଶୃଙ୍ଖଳିତ କରିବା ପାଇଁ ସର୍ବଦା ଯତ୍ନଶୀଳ ଥାଆନ୍ତି। ଅଥଚ କାଳୀଙ୍କର ଉଗ୍ରତାକୁ, ତାଙ୍କର ଅସଂସାରୀ ଧ୍ୱଂସାତ୍ମକ କ୍ରିୟାକଳାପକୁ ସଂଯତ ଓ ଶିଥିଳ କରିବା ପାଇଁ ଶିବ ସତତଃ ଚେଷ୍ଟିତ ଥାନ୍ତି। ଡମ୍ବରୁର ଡିବିଡିବି ନାଦରେ ତାଣ୍ଡବ ନୃତ୍ୟ କରି ଚଉଦ ବ୍ରହ୍ମାଣ୍ଡକୁ ଥରହର କରୁଥିବା ସ୍ୱାମୀ ନିଜର ହଟ୍ଟକାରିଣୀ, ଅଝଟୀ, ଅରଣ୍ୟା, ଅସାମାଜିକା ପତ୍ନୀକୁ ଶାନ୍ତ କରିବା ପାଇଁ ତାଙ୍କ ପାଦ ତଳେ ଭୂପତିତ ହେବା କେବଳ

ନିରହଙ୍କାର, ନିର୍ଲିପ୍ତ, ନିରାସକ୍ତ, ନିରଭିମାନୀ ମହାସାଧକ ଶିବଙ୍କ ଦ୍ୱାରା ସମ୍ଭବ। ମଣିଷ ଚେତନା ଭିତରେ ଥିବା ପରସ୍ପର ବିପରୀତମୁଖୀ ପ୍ରବୃତ୍ତିକୁ ସନ୍ତୁଳିତ କରିବା ପାଇଁ ଶାସ୍ତ୍ର ସଂହିତାକାରଙ୍କର ଏହା ସାଙ୍କେତିକ ସୂଚନା। ସଂସାର ଭିତରେ ଥାଇ ଅସଂସାରୀ ଶିବଙ୍କର ଏ ମହାସଂସାରୀ ସାଧନା ପ୍ରତ୍ୟେକ ସଂସାରୀଙ୍କ ପାଇଁ ଅନୁକରଣୀୟ।

ଦୁର୍ଗତି ନାଶିନୀ ଦୁର୍ଗାଙ୍କର କାଳିକା ଅବତାର ସମ୍ପର୍କରେ ପୁରାଣରେ ଆଉ ଗୋଟିଏ ଯୁକ୍ତି ସମ୍ମତ ଉପାଖ୍ୟାନ ରହିଛି। ବିଶେଷତଃ ଓଡ଼ିଶାରେ ଏହି ଉପାଖ୍ୟାନ ବହୁ ପ୍ରଚଳିତ। ମହିଷାସୁରକୁ ବଧ କରିବା ପାଇଁ ଦେବତାଙ୍କଠାରୁ ପ୍ରାପ୍ତ ସକଳ ଅସ୍ତ୍ରଶସ୍ତ୍ର ନିଷ୍ଫଳ ହେବା ପରେ ମା' ଦୁର୍ଗା ଚିନ୍ତିତ ହୋଇ ପଡ଼ିଥିଲେ। ମାନବ କଲ୍ୟାଣ ସାଧନ ନିମନ୍ତେ ସେ ଯେ କୌଣସି ପର୍ଯ୍ୟାୟରେ ଉପନୀତ ହୋଇ ପାରନ୍ତି। ଶେଷରେ ଆସୁରିକ ଶକ୍ତିକୁ ନିଷ୍କ୍ରିୟ କରିବା ପାଇଁ ସେ ଜାନୁ ଯୌବନ ପ୍ରଦର୍ଶନ କଲେ। ହୀନପ୍ରଭ ହେଲା ରାକ୍ଷସ। ଶସ୍ତ୍ରାଘାତରେ ତା'ର ନିଧନ କଲେ। କିନ୍ତୁ ଅକୃତଜ୍ଞ ପାଲଟି ଗଲେ ଦେବତାମାନେ। ଯେଉଁ କଲ୍ୟାଣକାରୀ ଶକ୍ତି ସେମାନଙ୍କ ସୁରକ୍ଷା ପାଇଁ ଏତେ ବଡ଼ ତ୍ୟାଗ କଲେ, ତାଙ୍କୁ ସେମାନେ ଥଟ୍ଟା, ଉପହାସ, ବ୍ୟଙ୍ଗ ବିଦ୍ରୂପ କଲେ। ତାଙ୍କୁ ସମ୍ଭ୍ରମହୀନା କହିଲେ। ତାଙ୍କ ଜାନୁ ଯୌବନ ପ୍ରଦର୍ଶନକୁ ଆକ୍ଷେପ କଲେ। ଏଥର ଅସହିଷ୍ଣୁ ହୋଇ ପଡ଼ିଲେ ଦୁର୍ଗା। ଅସୁର ଶକ୍ତିଠାରୁ ଦେବତାମାନଙ୍କର ଏ ଅକୃତଜ୍ଞତା ଆହୁରି ମାରାତ୍ମକ। ଏମାନଙ୍କୁ ଧ୍ୱଂସ କରିବାକୁ ହେବ। ସେ ରକ୍ତମୁଖା ହୋଇ ବ୍ରହ୍ମାଣ୍ଡ ପ୍ରଦକ୍ଷିଣ କଲେ। ତାଙ୍କର ଏ ଉଗ୍ରତାରେ ପୁଣି ଥରହର ହେଲେ ଦେବତାମାନେ। ସମାଜ କଲ୍ୟାଣ ପାଇଁ ହଳାହଳ ବିଷକୁ ଗଳସ୍ଥ କରିଥିବା ଶିବଙ୍କ ବ୍ୟତୀତ କିଏ କାତ୍ୟାୟିନୀଙ୍କର ଏ କରାଳ ରୂପକୁ ଶୃଙ୍ଖଳିତ କରିବ ? ସେ ଉର୍ଦ୍ଧ୍ୱମୁଖା ହୋଇ ପଡ଼ିଗଲେ ମା' କାଳୀଙ୍କ ପାଦତଳେ। ଅସଂଯତବଶତଃ ମା'ଙ୍କର ଗୋଟାଏ ପାଦ ପଡ଼ିଗଲା ଶିବଙ୍କ ବକ୍ଷଦେଶରେ। ଜିହ୍ୱାକୁ କାମୁଡ଼ି ନିଜକୁ ରୋକିନେଲେ ମା'। ନିଜକୁ ସଙ୍କୁଚିତ କଲେ। କ୍ଷମା ଦେଲେ ଜିହ୍ୱା ଅସଂଯତକାରୀ ଦେବତାମାନଙ୍କୁ।

ଏବେ ସୁଦ୍ଧା ଏ ଅପଶକ୍ତିମାନେ ଜିହ୍ୱା କଣ୍ଠକୁ ନିୟନ୍ତ୍ରଣ କରି ପାରନ୍ତି ନାହିଁ। ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଜଣେ ଦାୟିତ୍ୱସମ୍ପନ୍ନ ପ୍ରଫେସର ଦୁର୍ଗାଙ୍କୁ କହିଲେ ବେଶ୍ୟା, ସେକ୍ସି, ଯୌନ ଉତ୍ତେଜିକା। କେଉଁ ଶାସ୍ତ୍ର ଆଧାରରେ ସେ ଏପରି ଅଶାଳୀନ ମନ୍ତବ୍ୟ ଦେଲେ, କେବଳ ସେ ହିଁ ଜାଣନ୍ତି। ଚର୍ଚ୍ଚାରେ ରହିବାକୁ ସୌଖୀନ ବିଳାସ ମଣୁଥିବା ଏ ମନ୍ତବ୍ୟ ଆମ ବୁଦ୍ଧିଜୀବୀମାନଙ୍କୁ ବେଶୀ କିଛି ଆଘାତ ଦେବା ପରି ମନେ ହେଲାନାହିଁ।

କିନ୍ତୁ ଭୁବନେଶ୍ୱରର ଏକ ପୂଜା ମଣ୍ଡପରେ ଘଟିଥିବା ଘଟଣାଟିଏ ଆମ ଜୀବନ୍ତ ଦୁର୍ଗାମାନଙ୍କ ପାଇଁ ବେଶ୍ ପ୍ରେରଣାପ୍ରଦ ଥିଲା । ଆତ୍ମରକ୍ଷା କୌଶଳ ଶିକ୍ଷା କରୁଥିବା ଉତ୍କଳ କରାଟେ ସ୍କୁଲର ଜୀବନ୍ତ ଦୁର୍ଗାମାନେ ମହିଳାମାନଙ୍କୁ ଅଶାଳୀନ ମନ୍ତବ୍ୟ ଦେଉଥିବା ଅସାମାଜିକମାନଙ୍କୁ ମାଡ଼ ଦେଇ ପୁଲିସ ଜିମା ଦେବା ସାବ୍ୟସ୍ତ କରିଦେଲା ଯେ ପ୍ରକୃତରେ ଏବେ ମାତୃପକ୍ଷ ଚାଲିଛି । ମାତୃଶକ୍ତିକୁ ଅପମାନ ଦେଉଥିବା ଅପଶକ୍ତିମାନଙ୍କୁ ଉଚିତ ଶାସ୍ତି ଯଦି ମାତୃଶକ୍ତି ଦ୍ୱାରା ସମ୍ଭବ ନହେଲା, ତେବେ କି ଲାଭ ଦେବୀ ଆବାହନ କରି ସେମାନଙ୍କୁ ଆରାଧନା କରିବାରେ !

ମାତୃପକ୍ଷରେ ମା'ଙ୍କର ଆବାହନ ଚାଲିଛି ମଣ୍ଡପମାନଙ୍କରେ । ଦୁର୍ଗତି ନାଶିନୀ ମହାମାୟୀ ଦୁର୍ଗା ହୁଅନ୍ତୁ କି କମଳା ଶ୍ରୀହରିପ୍ରିୟା ଅନ୍ନପୂର୍ଣ୍ଣା ଅଥବା ମୃତ୍ୟୁ ଓ କାଳର ଦେବୀ ମହାକାଳୀ, ଏମାନେ ସମସ୍ତେ ମାତୃଶକ୍ତିର ଏକ ଏକ ଅବତାର । କର୍ମଯୋଗୀ ଶ୍ରୀକୃଷ୍ଣଙ୍କୁ ମଧ୍ୟ ଯୋଗନିଦ୍ରାରୁ ଜାଗ୍ରତ କରିବାର ଭୂମିକା ନେବା ପାଇଁ ଏମାନଙ୍କୁ ଯୋଗମାୟା ରୂପ ଧାରଣ କରିବାକୁ ପଡ଼ିଥାଏ । ଏମାନଙ୍କ ଆଶୀର୍ବାଦ ବିନା କୌଣସି କାର୍ଯ୍ୟ ସିଦ୍ଧ ହୁଏନାହିଁ । ମା'ଙ୍କୁ ଆଶୀର୍ବାଦ ମାଗିବାକୁ ହୁଏନାହିଁ । ତାଙ୍କ ଆଶୀର୍ବାଦ ସଦାସର୍ବଦା ଆମ ମସ୍ତକରେ ଢାଳି ହେଉଥାଏ ।

ମାତୃଶକ୍ତି ସର୍ବଦା ଅଭୟ ବରଦାୟିନୀ ମୁଦ୍ରାରେ ରହୁ । ତାଙ୍କର କଲ୍ୟାଣକାରୀ ଶକ୍ତି ପୃଥ୍ୱୀ ପାଳନ ପାଇଁ ବିନିଯୋଗ ହେଉ । ସର୍ଜନା ପାଇଁ ସଦା ଉନ୍ମୁଖ ହୋଇ ରହୁ, ବିନାଶ ପାଇଁ ନୁହେଁ । ସେ ରାଜରାଜେଶ୍ୱରୀ ଦୁର୍ଗା ହୋଇ ରୁହନ୍ତୁ; ଶ୍ରୀମୟୀ ଲକ୍ଷ୍ମୀ ହୋଇ ରୁହନ୍ତୁ । ଏମିତି ପରିସ୍ଥିତି ସୃଷ୍ଟି ନହେଉ ଯେତେବେଳେ ମାତୃଶକ୍ତି ସର୍ଜନାକାରିଣୀ ପରିବର୍ତ୍ତେ ସଂହାରିଣୀ ହେବା ପାଇଁ ବାଧ୍ୟ ହେବ, ପ୍ରଚଣ୍ଡା ହେବ, ରୌଦ୍ର ହେବ । ବକ୍ଷ ବିଦାରୀ ଅମୃତ ଦାନରେ ଜୀବ ପାଳନ କରୁଥିବା ଶକ୍ତିକୁ ରକ୍ତପାନରୁ ବିରତ କରିବା ପାଇଁ ସମସ୍ତେ ପାଲଟି ଯାଆନ୍ତେ ନି ଜଣେ ଜଣେ ଶିବ ? ସୃଷ୍ଟି କେତେ ମଙ୍ଗଳମୟ ହୁଅନ୍ତା ସତେ !



# ସୁରକ୍ଷା କବଚ ବନାମ ଢାଲ

ସକଳ ବାଦ ବିସମ୍ବାଦ ସତ୍ତ୍ୱେ ଏହା ସ୍ୱୀକାର୍ଯ୍ୟ ଯେ ଭାରତୀୟ ସମାଜରେ ନାରୀମାନଙ୍କୁ ଯେଉଁ ସମ୍ମାନଜନକ ସ୍ଥାନ ଦିଆ ଯାଇଛି, ବିଶ୍ୱର ଅନ୍ୟ କୌଣସି ରାଷ୍ଟ୍ରରେ ତାହା ପରିଲକ୍ଷିତ ହୁଏନାହିଁ। କନ୍ୟା ସନ୍ତାନଙ୍କ ସହିତ ପର ଗୋତ୍ରୀ, ପର ଧନ, ଝିଅ ଜନମ ପର ଘରକୁ ଆଦି କେତେକ କରୁଣ ଭାବୋଦ୍ଦୀପକ ଶବ୍ଦ ଏମିତି ଯୋଡ଼ି ଦିଆଯାଇଛି ଯେ ସ୍ୱାଭାବିକ ଭାବେ ସେମାନଙ୍କ ପ୍ରତି ସମସ୍ତେ ସହାନୁଭୂତିଶୀଳ ହୋଇ ପଡ଼ନ୍ତି। ନିଷ୍ଠୁରରୁ ନିଷ୍ଠୁରତମ ବ୍ୟକ୍ତିଟି ମଧ୍ୟ କନ୍ୟାର ବିବାହକାଳୀନ ବିଦାୟ ଉତ୍ସବରେ ଚକ୍ଷୁରୁ ନିଗାଡ଼ି ଦେଇଥାଏ ଦୁଇଧାର ଲୁହ। କନ୍ୟା ସନ୍ତାନ ପ୍ରତି ଏସବୁ ଆମମାନଙ୍କର ସ୍ୱଭାବସିଦ୍ଧ ଶ୍ରଦ୍ଧାଞ୍ଜଳି। ଏବେ ସୁଦ୍ଧା ନାରୀମାନଙ୍କ କୃତ କେତେକ ତ୍ରୁଟିକୁ ସାଧାରଣ ଦୋଷ ବୋଲି ଗ୍ରହଣ କରା ଯାଉଥିବା ବେଳେ ପୁରୁଷ କୃତ ସେହି ତ୍ରୁଟିକୁ ଅପରାଧ ବୋଲି ଗ୍ରହଣ କରା ଯାଇଥାଏ। ପୁରୁଷଟିଏ ପର ନାରୀକୁ ପ୍ରେମ ନିବେଦନ କଲେ ଅପରାଧ। ତା' ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଏ। କିନ୍ତୁ ନାରୀଟିଏ ପର ପୁରୁଷ ପାଖରେ ପ୍ରେମ ନିବେଦନ କଲେ ଏବଂ ପୁରୁଷଟି ତାହା ଅଗ୍ରାହ୍ୟ କଲେ ପୁରୁଷଟି ଅପରାଧୀ ବୋଲି ଆମ ପ୍ରାଚୀନ ସଂହିତାମାନଙ୍କରେ ଅନୁଶାସନ ରହିଛି। ଅତିଶୟ ସ୍ନେହଶ୍ରଦ୍ଧା ବଶତଃ ନାରୀମାନଙ୍କୁ ବିପଜ୍ଜନକ ଓ କଷ୍ଟସାଧ୍ୟ କାର୍ଯ୍ୟରୁ ବିରତ ରଖାଯାଏ। ଏହି ଭାବରୁ ବୋଧହୁଏ ନାରୀମାନଙ୍କର କାର୍ଯ୍ୟ ପରିସର ସଂକୁଚିତ କରି ଦିଆଯାଇଛି ଯାହା ପରବର୍ତ୍ତୀ ପର୍ଯ୍ୟାୟରେ ରୁଢ଼ିବାଦୀଙ୍କ ବିଚାର ଆଧାରରେ ଶିକୁଳି ରୂପ ପରିଗ୍ରହ କରିଛି। ସାମ୍ପ୍ରତିକ ନାରୀ ସେଥିରୁ ମୁକ୍ତି ପାଇବା ପାଇଁ ଅହରହ ସଂଗ୍ରାମ କରି ଚାଲିଛି।

ନାରୀର ସକଳ ନମ୍ର, କମ୍ର ଓ ସ୍ନିଗ୍ଧପଣ ସତ୍ତ୍ୱେ ଆମେ ନାରୀକୁ କହୁ ଶକ୍ତି। ତା' ଭିତରେ ଥିବା ଦାମ୍ଭିକତା, ସହିଷ୍ଣୁତା, ସମ୍ଭ୍ରମତା ଓ ଲଜ୍ଜାଶୀଳତା ଏକ ସଂସ୍କାରବନ୍ତ ସମାଜ ଗଠନରେ ସହାୟକ ହୋଇଥାଏ। ପୁରୁଷର ଉଦ୍‌ଭ୍ରାନ୍ତ ଉଦ୍ଦାମତାକୁ ସେ ଶ୍ଳୀଳ, ସଂଯମ୍‌ରେ ଅଭିଷିକ୍ତ କରିବାର ସାମର୍ଥ୍ୟ ରଖିଥାଏ। ସମାଜର ବାହ୍ୟ ଦୃଢ଼ତା ପାଇଁ ପୁରୁଷର ଶୌର୍ଯ୍ୟ, ବୀର୍ଯ୍ୟ ଓ ବିଚାରଶୀଳତାର ଆବଶ୍ୟକତା ରହିଛି। ଅନ୍ତଃକରଣର

ପରିପୁଷ୍ଟତା ନାରୀର କଲ୍ୟାଣକାରୀ ଶକ୍ତି ଓ ସଂସ୍କାର ବିନା ସମ୍ଭବ ନୁହେଁ। ସୃଷ୍ଟିର ସବୁଠାରୁ ଯନ୍ତ୍ରଣାଦାୟକ ପ୍ରସୂତି ଯନ୍ତ୍ରଣାକୁ ଅନ୍ତର୍ଗର୍ଭିତ କରିବାର ସାମର୍ଥ୍ୟ ଯେଉଁ ନାରୀର ରହିଛି, ଅନ୍ୟର ସାମାନ୍ୟତମ ବ୍ୟଥା ବେଦନାରେ ବିଗଳିତ ହୋଇ ଯିବାର କୋମଳପଣ ସେହି ନାରୀ ହୃଦୟରେ ବିଧାତା ଖଞ୍ଜି ଦେଇଛନ୍ତି। ସୁସ୍ଥ ସମାଜ ଗଠନରେ ନାରୀ ଓ ପୁରୁଷ ଉଭୟ ଉଭୟଙ୍କ ସ୍ଥାନରେ ଗରୀୟାନ ଓ ମହୀୟାନ ହେଲେ ସୁଦ୍ଧା ସ୍ଥଳ ବିଶେଷରେ ଉଭୟ ସୀମା ଲଂଘନ କରିଥାନ୍ତି। ସେତେବେଳେ ମନେହୁଏ ସତେ ଯେମିତି ଶତ୍ରୁତା କରିବାକୁ, ହିଂସା ଆଚରଣ କରିବାକୁ, ଈର୍ଷା, ଅସୂୟା ଉଦ୍‌ଗୀରଣ କରିବାକୁ ସେମାନେ ପରସ୍ପରର ସବୁତକ ସାମର୍ଥ୍ୟ ଉପଯୋଗ କରୁଛନ୍ତି। ପୁରୁଷଟିଏ ନିଜର ସକଳ ବିଫଳତା ପାଇଁ ନାରୀକୁ ଦୋଷ ଦେବା ବେଳେ ନାରୀଟିଏ ନିଜର ସକଳ ଦୁର୍ଭୋଗ ପାଇଁ ପୁରୁଷକୁ ଦାୟୀ କରୁଛି।

ସମଗ୍ର ବିଶ୍ୱ ବିଚାରରେ ନାରୀମାନଙ୍କୁ ପୁରୁଷମାନେ ଯେଉଁ କଟୁ ମନ୍ତବ୍ୟମାନ ଦେଇଛନ୍ତି, ସେସବୁ ଅନୁଧ୍ୟାନ କଲେ ମନେହୁଏ ବିଶ୍ୱର ଯଦି କେବେ ସର୍ବଶେଷ ଯୁଦ୍ଧ ହୁଏ, ତାହା ହେବ ନାରୀ ଓ ପୁରୁଷଙ୍କ ମଧ୍ୟରେ। ଭାରତୀୟ ଚିନ୍ତନରେ ନାରୀକୁ ନରକର ଦ୍ୱାର ବୋଲି କୁହାଯାଇଛି। ଗୋଟିଏ ଛାତ ତଳେ ଶହେ ଜଣ ପୁରୁଷ ରହି ପାରିବେ, କିନ୍ତୁ ଦୁଇଜଣ ନାରୀ ରହି ପାରିବେ ନାହିଁ ବୋଲି ଚୀନ୍ ଦେଶରେ କୁହାଯାଏ। ଯେତେ ବଡ଼ ସୁଦୃଢ଼ ପ୍ରାଚୀର ହେଉ ପଛେ ନାରୀ ତାହା ଭାଙ୍ଗିବାରେ ସମର୍ଥ ବୋଲି ସେମାନେ କହନ୍ତି। ଜର୍ମାନ ଦେଶରେ ନାରୀମାନଙ୍କ ପ୍ରତି କଟୁ ମନ୍ତବ୍ୟ ହେଲା- ନାରୀର ରୂପ ପରୀ ପରି, ହୃଦୟ ସର୍ପ ପରି ଓ ବୁଦ୍ଧି ଗଧ ପରି। ଆୟାର୍ଲ୍ୟାଣ୍ଡ୍‌ରେ କୁହାଯାଏ ଯେ ତିନୋଟି ଜୀବ ଆଇନ କ'ଣ, ଜାଣନ୍ତି ନାହିଁ- ଘୁଷୁରୀ, ଘୋଡ଼ୀ ଓ ନାରୀ। ନାରୀ ପଣସ ପରି। ଖାଇବା ପାଇଁ ବେଶ୍ ସ୍ୱାଦଯୁକ୍ତ। କିନ୍ତୁ ତା'ର ଅଠା ଭାରି ଅଡୁଆ ବୋଲି ପାଶ୍ଚାତ୍ୟ ମନୀଷୀ ମତ ଦିଅନ୍ତି। ନୋବେଲ ବିଜେତା ଆର୍ଣ୍ଣଲ୍ଡ ଟଏନ୍‌ବୀ କହିଥିଲେ, ନାରୀମାନେ ଗୃହତ୍ୟାଗ କରି ବାହାରକୁ ଆସିବା ଦିନଠାରୁ ସାମାଜିକ ସଂହତି ନଷ୍ଟ ହୋଇଛି।

ଏସବୁ ସତ୍ତ୍ୱେ ନାରୀର ସାମର୍ଥ୍ୟକୁ ପୁରୁଷ ସ୍ୱୀକାର କରିଛି। ନାରୀ ବିନା ସେମାନଙ୍କ ସ୍ଥିତି ଅସମ୍ଭବ ବୋଲି ମାନି ନେଇଛି। ନାରୀକୁ ପ୍ରେରଣାମୟୀ ଦେବୀ ଆଖ୍ୟା ଦେଇଛି; ରାଧା ବିନା କୃଷ୍ଣ ଅଧା ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରିଛି। ଦେହି ପଦପଲ୍ଲବମୁଦାରମ୍ କହି ନିଜକୁ ତା' ପାଦ ତଳେ ସମର୍ପି ଦେଇଛି। ପୁଣି ନାରୀକୁ ମାତୃଶକ୍ତି ରୂପେ କଳ୍ପନା କରି ଅସହାୟତାକୁ ଅର୍ପି ଦେଇଛି। ଯେଉଁଠାରେ ନାରୀମାନେ

ପୂଜା ପାଅନ୍ତି, ସେଠାରେ ଦେବତାମାନେ ସନ୍ତୁଷ୍ଟ ହୁଅନ୍ତି ବୋଲି ଉଦାତ୍ତ ଉଚ୍ଚାରଣ କରିଛି। ନାରୀ ଶକ୍ତିକୁ ପରାକ୍ରମଶାଳିନୀ ଦେବୀ ଦୁର୍ଗା, କଳାପ୍ରବୀଣା ବାଗ୍‌ଦେବୀ ସରସ୍ୱତୀ ଓ ଅନ୍ନଦାତ୍ରୀ ଲକ୍ଷ୍ମୀ ରୂପେ ଆରାଧନା କରି ଆତ୍ମସନ୍ତୋଷ ପାଇଛି। ଏସବୁ ଅଧିକାର ଓ ସମ୍ମାନ ବିନିମୟରେ ବୈଦିକ ପୁରୁଷମାନେ ନାରୀକୁ ତିନୋଟି ପ୍ରତିଶ୍ରୁତି କାମନା କରିଥିଲେ- ଅଧଃ ପଶସ୍ୱ ଅର୍ଥାତ୍ ତଳକୁ ଚାହିଁ ଚାଲ; ବିନମ୍ରତା ଓ ଶାଳୀନତା ପ୍ରକାଶ କର। ଦ୍ୱିତୀୟତଃ, ମା ଉପରି- ଉପରମୁହାଁ ହୁଅନାହିଁ; ବିଶୃଙ୍ଖଳିତ ହୋଇ ଗୁରୁ ଗୁରୁଜନମାନଙ୍କୁ ଅସମ୍ମାନ କରନାହିଁ। ତୃତୀୟଟି ହେଲା, ପାଦକୌ ସନ୍ତରାଂହର- ପାଦ ଦୁଇଟିକୁ ନିଜ ନିୟନ୍ତ୍ରଣରେ ରଖ। ଏସବୁର ତାତ୍ପର୍ଯ୍ୟ- ଏକ ସଂସ୍କାରଶୀଳ, ରୁଚିମନ୍ତ, ସମ୍ଭ୍ରାନ୍ତ ସମାଜ ଗଠନ ନାରୀଦ୍ୱାରା ହିଁ ସମ୍ଭବ। ଏ ଆଶା ରଖିଥିଲେ ଆମ ସମାଜଶାସ୍ତ୍ରୀମାନେ।

ଏବେ ଯେତେସବୁ ଜନକଲ୍ୟାଣଧର୍ମୀ ଯୋଜନା କାର୍ଯ୍ୟକାରୀ ହେଉଛି, ସେଥିରେ ତାହା ନାରୀ ପାଇଁ କେତେଦୂର ଫଳପ୍ରଦ ହେବ, ପ୍ରଥମେ ତା'ର ତର୍ଜମା କରାଯାଉଛି। ନାରୀ ସମାଜର ସର୍ବାଙ୍ଗୀନ ଉନ୍ନତି, ତା'ର ସ୍ୱଚ୍ଛନ୍ଦ ବିହାରରେ ଏତେ ଟିକେ ଅବହେଳାକୁ ବରଦାସ୍ତ କରାଯାଉ ନାହିଁ, ସତେ ଯେମିତି ଅତୀତରେ ନାରୀକୁ ଅସୂର୍ଯ୍ୟଂପଶ୍ୟା କରି ରଖି ଆସିଥିବା ତା' ପ୍ରତି ଅବହେଳା ପ୍ରଦର୍ଶନ କରିଥିବା ସମାଜ ଏବେ କଡ଼ାଗଣ୍ଡା କରି କ୍ଷତି ପୂରଣ ଦେଉଛି। ସୁଖ ଶାନ୍ତି ଦେବା ପାଇଁ ନାରୀକୁ ସୁହାଇଲା ପରି ସବୁ ପ୍ରକାର ନୀତି ନିୟମ ପ୍ରଣୟନ କରାଯାଉଛି।

କିନ୍ତୁ ବିଡ଼ମ୍ବନାର ବିଷୟ, ନାରୀର ସୁରକ୍ଷା, ସ୍ୱାଧିକାର ଓ ସ୍ୱାଭିମାନ ରକ୍ଷା ଉଦ୍ଦେଶ୍ୟରେ ଯେଉଁ ଆଇନ କାନୁନ୍ ପ୍ରଣୟନ କରାଯାଉଛି, ତାକୁ ଢାଲ ରୂପେ ବ୍ୟବହାର କରୁଛନ୍ତି ମୁଷ୍ଟିମେୟ ସ୍ୱାର୍ଥସର୍ବସ୍ୱ ମହିଳା। ସୁରକ୍ଷା କବଚ ଆତ୍ମରକ୍ଷା ପାଇଁ, କିନ୍ତୁ ଢାଲର ଉଦ୍ଦେଶ୍ୟ ତ ସର୍ବଦା ଆକ୍ରମଣାତ୍ମକ। ଯୌତୁକ ନିରୋଧ ଆଇନର ଯେଉଁ ପରି ଅପବ୍ୟବହାର ହେଲା, ସେ ସମ୍ପର୍କରେ ଆମେ ସମସ୍ତେ ଅବଗତ। ମାତ୍ର ୧୫ ପ୍ରତିଶତ ଅଭିଯୋଗ ସତ୍ୟ ପ୍ରମାଣିତ ହେଲା ବେଳକୁ ୮୫ ପ୍ରତିଶତ ଅଭିଯୋଗ ଥିଲା ଭିତ୍ତିହୀନ। ଅନେକ ନିରୀହ ବ୍ୟକ୍ତି ଜେଲ୍ ଭୋଗିଲେ। ଏବେ ଆଉ ଗୋଟିଏ ସ୍ପର୍ଶକାତର ପ୍ରସଙ୍ଗ ହେଉଛି ଯୌନ ନିର୍ଯାତନା ପ୍ରସଙ୍ଗ। ଏଥିରେ ମଧ୍ୟ ମାନ୍ୟବର ସୁପ୍ରିମକୋର୍ଟଙ୍କ ନିର୍ଦ୍ଦେଶ ରହିଛି ଯୌନ ନିର୍ଯାତନାର ଶିକାର ହୋଇଥିବା ପୀଡ଼ିତାଙ୍କର ବୟାନ ହିଁ ସର୍ବଶେଷ ଓ ଅକାଟ୍ୟ। ଏଥିପାଇଁ ସାକ୍ଷୀ ପ୍ରମାଣର ଆବଶ୍ୟକତା ନାହିଁ, କାରଣ ଭାରତୀୟ ନାରୀ ପାଇଁ ତା'ର ସତୀତ୍ୱ ହିଁ ସର୍ବଶ୍ରେଷ୍ଠ ସମ୍ପଦ। ନିଜର ସତୀତ୍ୱ ଲୁଣ୍ଠିତ ହୋଇଥିବା

ନାରୀଟି ସବୁକିଛି ହରେଇ ଦେବାର ଯନ୍ତ୍ରଣା ଅନୁଭବ କରେ; ଅସହାୟ ହୋଇପଡ଼େ। ସମାଜ ଦୃଷ୍ଟିରେ ସେ ନିଜକୁ ଅତ୍ୟନ୍ତ ହୀନ, ହେୟ ଓ ପତିତା ବୋଲି ଭାବିଥାଏ। ସେହି ହେତୁ ଅତ୍ୟଧିକ ମର୍ଯ୍ୟାଦା ସଚେତନ ନାରୀ ନିଜେ ଦୁଷ୍କର୍ମ ପୀଡ଼ିତା ହୋଇଥିଲେ ସୁଦ୍ଧା ବାହାରେ ପ୍ରକାଶ କରିବାକୁ ଚାହେଁନାହିଁ। କିନ୍ତୁ ଗଭୀର ପରିତାପର ବିଷୟ, ଆଜିର ଭୋଗସର୍ବସ୍ୱ ଯୁଗରେ ସତୀତ୍ୱ ଶବ୍ଦ ତା'ର ପ୍ରାସଙ୍ଗିକତା ହରେଇ ସାରିଲାଣି। ତା' ପାଇଁ ନୈତିକ ମୂଲ୍ୟବୋଧ ଅର୍ଥହୀନ। ଶାରୀରିକ ମିଳନ ପାଇଁ ପ୍ରେମ, ପ୍ରଣୟ, ଅନୁରାଗ, ପୂର୍ବରାଗ, ସ୍ନେହ, ସୋହାଗ ପରି ପବିତ୍ର ଶବ୍ଦ ଅଭିଧାନରେ ଅଚଳ ହୋଇ ଗଲାଣି। ଏକାଧିକ ବ୍ୟକ୍ତିଙ୍କ ସହ ଶାରୀରିକ ମିଳନକୁ ଅପମାନଜନକ ବୋଲି ଗ୍ରହଣ କରାଯାଉ ନାହିଁ। ପୁରୁଷଟିଏ ଯେପରି କାମନାର ପରିପୂର୍ତ୍ତି ପାଇଁ ହେଉ କି ପ୍ରତିଶୋଧ ନେବା ପାଇଁ ନାରୀ ପ୍ରତି ଶାରୀରିକ ଅତ୍ୟାଚାର କରିବାକୁ ପଶ୍ଚାତ୍‌ପଦ ହେଉନାହିଁ, ନାରୀଟିଏ ସେହିପରି ପୁରୁଷର ଗର୍ବ ଅହଂକାରକୁ ପଦାନତ କରିବା ପାଇଁ, ନିଜର ସ୍ୱାର୍ଥସିଦ୍ଧି ପାଇଁ ପୁରୁଷ ବିରୋଧରେ ମିଥ୍ୟା ଯୌନ ନିର୍ଯାତନା ଅଭିଯୋଗ ଆଣିବା ପାଇଁ କୁଣ୍ଠାବୋଧ କରୁନାହିଁ। କହିବା ବାହୁଲ୍ୟ, ଉଚ୍ଚ ଶିକ୍ଷିତାମାନଙ୍କ କ୍ଷେତ୍ରରେ ଏହା ଦିନକୁ ଦିନ ଅଧିକ ସଂଖ୍ୟାରେ ପରିଲକ୍ଷିତ ହେଉଛି।

ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଓ ପ୍ରଫେସରମାନଙ୍କ ବିରୋଧରେ ଛାତ୍ରୀ ଓ ଗବେଷକିମାନେ ଅଭିଯୋଗ କରୁଛନ୍ତି। କାର୍ଯ୍ୟାଳୟଗୁଡ଼ିକରେ ଉପରିସ୍ଥ ଅଫିସରମାନଙ୍କ ବିରୋଧରେ ଅଧସ୍ତନ ମହିଳାମାନେ ଅଭିଯୋଗ କରୁଛନ୍ତି। ସ୍ଥଳ ବିଶେଷରେ ଏହା ସତ୍ୟ ସାବ୍ୟସ୍ତ ହେଲେ ସୁଦ୍ଧା ଅନେକ ସ୍ଥଳରେ ଏହି ଅଭିଯୋଗ ଭିତ୍ତିହୀନ ବୋଲି ସାବ୍ୟସ୍ତ ହେଉଛି। ଏପରିକି ଜଣେ ଆଇଏସ୍‌ଏସ୍ ଅଫିସରଙ୍କ ବିରୋଧରେ ଅଭିଯୋଗ ଆଣିଥିବା ମହିଳା ଓଏଏସ୍ ଅଧିକାରୀଙ୍କ ଅଭିଯୋଗ ଭିତ୍ତିହୀନ ବୋଲି ଗତ ସପ୍ତାହରେ ଗଣମାଧ୍ୟମରେ ପ୍ରକାଶିତ ହେବା ପରିଲକ୍ଷିତ ହୋଇଥିଲା। ଗଣଦୁଷ୍କର୍ମର ଶିକାର ହୋଇ ମୃତ୍ୟୁବରଣ କରିଥିବା ବେବିନା ହେଉ କି କୁନ୍ଦୁଲିର ପୀଡ଼ିତା, ପରବର୍ତ୍ତୀ ପର୍ଯ୍ୟାୟରେ ଏସବୁ ଅଭିଯୋଗ ମଧ୍ୟ ଭିତ୍ତିହୀନ ବୋଲି ଅଭିଯୋଗ ହେଉଛି।

ମାନବିକ ଅଧିକାର କମିଶନ କୁନ୍ଦୁଲି ଗଣଦୁଷ୍କର୍ମକୁ ମିଥ୍ୟା ସାବ୍ୟସ୍ତ କରିବା ପରେ ଅନେକ ପ୍ରଶ୍ନ ବୁଦ୍ଧିଜୀବୀମାନଙ୍କୁ ବିଚଳିତ କରିବା ସ୍ୱାଭାବିକ। ମୁଖ୍ୟମନ୍ତ୍ରୀଙ୍କ ବିଚାର ବିଭାଗୀୟ ତଦନ୍ତ ନିର୍ଦ୍ଦେଶ ସତ୍ୟ ଓ ମିଥ୍ୟା ମଝିରେ ଯେଉଁ ସନ୍ଧି ରହିଛି, ତାହା ଉନ୍ମୋଚନ କରିବାରେ କେତେଦୂର ସଫଳ ହେଉଛି, ତାହା ହିଁ ଅନୁଧ୍ୟାନର ବିଷୟ।

ନବମ ଶ୍ରେଣୀରେ ପଢୁଥିବା ନାବାଳିକାଟିଏ ପୁଲିସ ଅଥବା ବିଏସ୍ଏଫ୍ ଯବାନଙ୍କ ସମ୍ପର୍କରେ ଯେଉଁ ପ୍ରକାର ମନ୍ତବ୍ୟ ଗଣମାଧ୍ୟମରେ ଦେଲା, ତାହା ଯଦି ସତ୍ୟ ହୋଇଥାଏ, ତା'ହେଲେ ଅତିଶୟ ଭୟଙ୍କର; ମିଥ୍ୟା ହୋଇଥିଲେ ତା'ଠାରୁ ବଳି ବଡ଼ ଭୟଙ୍କର। ଆମ ସମାଜ ବ୍ୟବସ୍ଥା ଓ ନୈତିକ ମୂଲ୍ୟବୋଧ କିପରି ଅସୁରକ୍ଷିତ ଓ ବିପର୍ଯ୍ୟସ୍ତ ହୋଇ ପଡୁଛି, ଏହା ତା'ର ଏକ ମର୍ମାନ୍ତିକ ନମୁନା।

ଏ ଯୁଗ ବିଚାର ବିଶ୍ଳେଷଣର ଯୁଗ; ପରୀକ୍ଷା ନିରୀକ୍ଷାର ଯୁଗ। କୌଣସି ନିଷ୍କର୍ଷରେ ପହଞ୍ଚିବା ପୂର୍ବରୁ ଆମ ବିଚାରକୁ ଏକପାଖିଆ କରିଦେଲେ ଆମେ ମୌଳିକ ସମସ୍ୟାକୁ ଉପେକ୍ଷା କରୁଛୁ ବୋଲି ବୁଝିବାକୁ ହେବ। ଆହୁରି ତର୍ଜମା ଆବଶ୍ୟକ; ଆହୁରି ଆତ୍ମସମୀକ୍ଷା ଆବଶ୍ୟକ। ଏହା ହୋଇ ପାରିଲେ ହୁଏତ ମୌଳିକ ସମସ୍ୟାର ସମାଧାନ ପାଇଁ ଆପେ ଆପେ ରାସ୍ତା ଖୋଲିଯିବ।



# ଆତ୍ମହତ୍ୟା ଅନ୍ତରାଳେ

ପୃଥିବୀର ପ୍ରଥମ ଅବସାଦଗ୍ରସ୍ତ ବ୍ୟକ୍ତି ଥିଲେ ଅର୍ଜୁନ। କର୍ତ୍ତବ୍ୟ କର୍ମ ଓ ପରିସ୍ଥିତିର ସମ୍ମୁଖୀନ ହୋଇ ନପାରି ସମ୍ପୂର୍ଣ୍ଣ ଭାଙ୍ଗି ତୁଟି ଯାଇଥିଲେ; ଜୀବନ ପ୍ରତି ବୀତସ୍ପୃହ ହୋଇ ପଡ଼ିଥିଲେ। ତାଙ୍କୁ ଜୀବନମୁଖୀ କରିବା ପାଇଁ ଶ୍ରୀକୃଷ୍ଣଙ୍କୁ ଅଠର ଅଧ୍ୟାୟ ଶ୍ଳୋକ ଆବୃତ୍ତି କରିବାକୁ ହୋଇଥିଲା। ଆତ୍ମହତ୍ୟା ସମସ୍ୟାର ସମାଧାନ ନୁହେଁ, ପ୍ରତିକୂଳ ପରିସ୍ଥିତି ସହ ସଂଘର୍ଷ କରି ନିଜ ଅସ୍ତିତ୍ୱକୁ ବଜାୟ ରଖିବାର କଳା ଯିଏ ହାସଲ କରିଛି, ବିଫଳତା ତା' ପାଇଁ ବରଦାନ ପାଲଟି ଯାଏ। ମୃତ୍ୟୁ ତାକୁ ଭୟ କରେ।

ଭାରତୀୟ ଜନ ଜୀବନକୁ ସମ୍ପୂର୍ଣ୍ଣ ଅନୁପ୍ରାଣିତ କରିଥିବା ଦୁଇଖଣ୍ଡ କାବ୍ୟ ରାମାୟଣ ଓ ମହାଭାରତ। କେମିତି ବଞ୍ଚିବାକୁ ହୁଏ, ଆମକୁ ରାମାୟଣ ଶିକ୍ଷା ଦେଲା ବେଳେ ବଞ୍ଚିବାର କୌଶଳ ଆମକୁ ମହାଭାରତ ଶିଖାଏ। ରାମାୟଣର ଚରିତ୍ରମାନେ ନୀତି, ଆଦର୍ଶ, ମୂଲ୍ୟବୋଧ ପାଖରେ ବନ୍ଧା ପଡ଼ିଥିବା ବେଳେ ମହାଭାରତର ଚରିତ୍ରମାନେ ପରିସ୍ଥିତି ସହ ସଂଘର୍ଷ କରି ନିଜେ ନୂତନ ମୂଲ୍ୟବୋଧ ସୃଷ୍ଟି କରିଛନ୍ତି। ରାମାୟଣର ତିନୋଟି ମୁଖ୍ୟ ଚରିତ୍ର ସୀତା, ଲକ୍ଷ୍ମଣ ଓ ରାମ କ୍ରମାନ୍ୱୟରେ ଆତ୍ମବିସର୍ଜନ ଦେଇଛନ୍ତି। କିନ୍ତୁ ମହାଭାରତର କୌଣସି ଚରିତ୍ର ଜୀବନ ହାରି ଦେବାର ନିଷ୍ପତ୍ତି ନେଇ ନାହାନ୍ତି। ପ୍ରତ୍ୟେକ ଚରିତ୍ର ଯେଉଁ ଉଦ୍ଦେଶ୍ୟ ନେଇ ସୃଷ୍ଟି ହୋଇଛନ୍ତି, ସେହି ଲକ୍ଷ୍ୟ ସାଧନ ନହେବା ପର୍ଯ୍ୟନ୍ତ ସଂଘର୍ଷ ଜାରି ରଖିଛନ୍ତି। ତେଣୁ କୌଣସି ପରିସ୍ଥିତିରେ ସେମାନେ ଆତ୍ମବିସର୍ଜନ କରି ନାହାନ୍ତି। ସେହି ହେତୁ ରାମାୟଣ ଅପେକ୍ଷା ମହାଭାରତର ଚରିତ୍ରଗୁଡ଼ିକ ଅଧିକ ଗତିଶୀଳ, ଜୀବନ୍ତ, ବାସ୍ତବ ଓ ପ୍ରେରଣାଦୀପ୍ତ ମନେ ହୁଅନ୍ତି।

ଶିର ବ୍ୟଥା ହେଲେ ଶିର କାଟିଦେବା କସ୍ମିନ୍ କାଳେ ସମସ୍ୟା ସମାଧାନର ପନ୍ଥା ନୁହେଁ। ପଶୁମାନେ ଆତ୍ମହତ୍ୟା କରନ୍ତି ନାହିଁ। ସ୍ୱର୍ଗର ଦେବତାମାନେ ମଧ୍ୟ ଆତ୍ମହତ୍ୟା କରିବା ତଥ୍ୟ ଆମ ଶାସ୍ତ୍ର ସଂହିତାରେ ନାହିଁ। ପଶୁମାନଙ୍କର ଚେତନା ନାହିଁ। ଚେତନାର ଉତ୍ତରଣ ହେଲେ ମଣିଷ ଦେବତା ପାଲଟି ଯାଏ। ସନ୍ଧି ସ୍ଥଳରେ ରହୁଥିବା ମଣିଷର ହିଁ ଚେତନା ରାଜ୍ୟରେ ସଙ୍କଟ ସୃଷ୍ଟି ହୁଏ। ସେହି ସଙ୍କଟର ସମାଧାନ କରି ନପାରି ସେ ମାନସିକ ଭାରସାମ୍ୟ ହରାଇ ବସେ। ଜୀବନ ବିମୁଖ

ହୋଇପଡ଼େ। ଜୀବନ ଅପେକ୍ଷା ସମସ୍ୟା ତା' ପାଇଁ ବଡ଼ ହୋଇଯାଏ। ପ୍ରାଚୁର୍ଯ୍ୟ ଓ ଦାରିଦ୍ର୍ୟ ଦୁଇଟିଯାକ ସ୍ଥିତି ମଣିଷ ପାଇଁ ଘାତକ ସିଦ୍ଧ। ଦାରିଦ୍ର୍ୟ ପ୍ରପୀଡ଼ିତ ମଣିଷ ଅପେକ୍ଷା ପ୍ରାଚୁର୍ଯ୍ୟ କ୍ଲାନ୍ତ ମଣିଷ ଅତି ଶୀଘ୍ର ଅବସାଦଗ୍ରସ୍ତ ହୋଇ ଯିବାର ଅନେକ ଦୃଷ୍ଟାନ୍ତ ରହିଛି। ବିଶ୍ୱ ବିଜୟୀ ଆଲେକ୍‌ଜାଣ୍ଡର ବିଶ୍ୱ ବିଜୟ କରି ସାରିବା ପରେ ବିଜୟ ପାଇଁ ଆଉ ଦେଶ ନାହିଁ ବୋଲି କାନ୍ଦି ପକାଇ ଥିଲେ। ବିଶ୍ୱର ସବୁଠାରୁ ବିଳାସମୟୀ ନାରୀ ଡାଏନା ଦୁର୍ଘଟଣାରେ ପ୍ରାଣ ହରାଇବା ପୂର୍ବରୁ ପାଞ୍ଚ ଥର ଆତ୍ମହତ୍ୟା ଉଦ୍ୟମ କରିଥିଲେ। ଏପରିକି ଅନ୍ତସତ୍ତ୍ୱା ଥିବା ବେଳେ ଶିଡ଼ିରୁ ଡେଇଁ ଆତ୍ମହତ୍ୟା ପାଇଁ ଚେଷ୍ଟା କରିଥିଲେ। ସଫଳତାର ଶୀର୍ଷରେ ପହଞ୍ଚି ଥିବା ଇଂରେଜ ଅଭିନେତା ରବିନ୍ ୱିଲିୟମ୍ ଓ ଗାୟକ ଚେଷ୍ଟର ବେନିଂଟନ୍ ମଧ୍ୟ ଆତ୍ମହତ୍ୟାଜନିତ ମୃତ୍ୟୁବରଣ କରିଥିଲେ। ବଡ଼ଲୋକମାନଙ୍କ ଆତ୍ମହତ୍ୟାର ଏମିତି ଅନେକ ଉଦାହରଣ ରହିଛି।

ଉଚ୍ଚାଭିଳାଷ ଚରିତାର୍ଥ ହୋଇ ସାରିବା ପରେ ଯେମିତି ମଣିଷ ଜୀବନ ବିମୁଖ ହୋଇଥାଏ, ଉଚ୍ଚାଭିଳାଷ ଚରିତାର୍ଥ ହୋଇ ନ ପାରିବାର ବେଦନା ସେମିତି ଅତିଷ୍ଠ କରେ ମଣିଷକୁ। ଅବସାଦଗ୍ରସ୍ତ ହୋଇ ସେ ଜୀବନ ଶେଷ କରିଦେବା ପାଇଁ ପ୍ରୟାସ କରିଥାଏ। ମାର୍ଟିନ୍ ଲୁଥର କିଙ୍ଗ୍ ଜୁନିଅର୍ ୧୩ ବର୍ଷ ବୟସରେ ଆତ୍ମହତ୍ୟା ଉଦ୍ୟମ କରିଥିଲେ। ଇଂରେଜ ଲେଖକ ଜେ କେ ରାଓ୍ୱଲିଂ ମଧ୍ୟ ସମାନ ଉଦ୍ୟମ କରିଥିଲେ। ବିଶ୍ୱ ବିଖ୍ୟାତ ଇଂରାଜୀ କବି ଜନ୍ କିଟ୍‌ସ୍ ମଧ୍ୟ ଯୁବାବସ୍ଥାରେ ଆତ୍ମହତ୍ୟା ଉଦ୍ୟମ କରି ବିଫଳ ହୋଇଥିଲେ। ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ ଅଥବା ଅଭିଳଷିତ ବିଷୟରେ ପାଠ ପଢ଼ିବାର ସୁଯୋଗ ନ ପାଇଲେ ହତାଶ ହୋଇ ଛାତ୍ରଛାତ୍ରୀମାନେ ଆତ୍ମହତ୍ୟା କରିବା ସମ୍ପ୍ରତି ଏକ ବହୁଚର୍ଚ୍ଚିତ ବିଷୟ। ଚଳିତ ବର୍ଷ ମେଡିକାଲ କଲେଜ୍‌ରେ ସିଟ୍ ନପାଇ ଏକାଧିକ ଛାତ୍ରଛାତ୍ରୀ ଆତ୍ମହତ୍ୟା କରିବା ପ୍ରସଙ୍ଗ ଗଣମାଧ୍ୟମରେ ପ୍ରସାରିତ ହୋଇଥିଲା। ରାଜସ୍ଥାନର କୋଟାଠାରେ ଥିବା ଛାତ୍ରାବାସମାନଙ୍କରେ ଆତ୍ମହତ୍ୟା ନିରୋଧୀ ଫ୍ୟାନ୍‌ସବୁ ଲଗା ଯାଇଛି ଓ ଛାତ୍ରଛାତ୍ରୀମାନଙ୍କୁ ଡିପ୍ରେସନ୍‌ରୁ ରକ୍ଷା କରିବା ପାଇଁ ବିଭିନ୍ନ ପଦକ୍ଷେପମାନ ନିଆଯାଉଛି।

ଜାପାନ୍‌ରେ ଏକ ବିଷାକ୍ତ ମାଛ ମିଳେ। ଏହାକୁ ଖାଇ ପ୍ରାୟ ୫୦ ପ୍ରତିଶତ ଲୋକ ମୃତ୍ୟୁବରଣ କରିଥାନ୍ତି। ତଥାପି ଜୀବନ କାଳ ଭିତରେ ସେମାନେ ଅନ୍ତତଃ ଥରେ ସେ ସାମୁଦ୍ରିକ ଜୀବଟିକୁ ଭକ୍ଷଣ କରିବାର ପ୍ରଲୋଭନକୁ ଏଡ଼ାଇ ପାରନ୍ତି ନାହିଁ। ପ୍ରକାରାନ୍ତରେ ଏହା ଆତ୍ମହତ୍ୟା ସହ ହିଁ ସମକକ୍ଷ। ଆତ୍ମହତ୍ୟା ଏଠି ଏକ ଖାନ୍‌ଦାନୀ ବିଳାସ। ଭାରତରେ ଆତ୍ମହତ୍ୟାର ପ୍ରେକ୍ଷାପଟ୍ଟ କିନ୍ତୁ ଭିନ୍ନ। ପ୍ରାଚୁର୍ଯ୍ୟ କ୍ଲାନ୍ତ ମଣିଷଙ୍କ

ଆତ୍ମହତ୍ୟା ସଂଖ୍ୟା କମ୍। ଦାରିଦ୍ର୍ୟ ଓ ଯନ୍ତ୍ରଣାକ୍ଲିଷ୍ଟ ମଣିଷମାନଙ୍କ ଆତ୍ମହତ୍ୟା ବହୁ ପରିମାଣରେ ପରିଲକ୍ଷିତ ହୋଇଥାଏ। ଅଜସ୍ର ଦୁଃଖ, କଷ୍ଟ, ପୀଡ଼ା, ପୀଡ଼ନରେ ଜୀବନ ଯେତେବେଳେ ତା' ପାଇଁ ବୋଝ ପାଲଟି ଯାଏ, ପାରିପାର୍ଶ୍ୱିକ ସ୍ଥିତି ଉପରୁ ଭରସା ତୁଟିଯାଏ, ଆତ୍ମବିଶ୍ୱାସ ସମ୍ପୂର୍ଣ୍ଣ ଦୁର୍ବଳ ହୋଇଯାଏ, ଜୀବନଟା ସେ ମଣିଷ ପାଇଁ ମୃତ୍ୟୁଠାରୁ ବଳି ଭୟଙ୍କର ମନେହୁଏ, ସେତେବେଳେ ସେ ଅନନ୍ୟୋପାୟ ହୋଇ ଆତ୍ମହତ୍ୟାର ଆଶ୍ରୟ ନିଏ। ପୂର୍ବରୁ ଆମ ଦେଶରେ ପୁରୁଷମାନଙ୍କ ଅପେକ୍ଷା ନାରୀମାନେ ବହୁ ସଂଖ୍ୟାରେ ଆତ୍ମହତ୍ୟା କରିବା ପରିଲକ୍ଷିତ ହେଉଥିଲା। ଯୌତୁକ ସମସ୍ୟା ଥିଲା ଏହାର ମୁଖ୍ୟ କାରଣ। କିନ୍ତୁ ଯୌତୁକ ନିରୋଧ ଆଇନ୍ ଫଳରେ ଏହା କିଛି ପରିମାଣରେ ପ୍ରଶମିତ ହୋଇଛି। ପ୍ରେମ ଘଟିତ ବ୍ୟାପାରରେ ପ୍ରତାରିତା ହୋଇ ହେଉ ଅଥବା ବିବାହକୁ ପରିବାର ପ୍ରତିରୋଧ କରିବା ହେତୁ ହେଉ, ଯୁବତୀମାନେ ବହୁ ସଂଖ୍ୟାରେ ଆତ୍ମହତ୍ୟା କରୁଥିଲେ। କିନ୍ତୁ ଏବେ ଯୁବତୀମାନେ ବିଭିନ୍ନ କ୍ଷେତ୍ରରେ ଅବସ୍ଥାପିତ ହୋଇ ନିଜେ ରୋଜଗାରକ୍ଷମ ହେବାଦ୍ୱାରା ଏ ପ୍ରକାର ଆତ୍ମହତ୍ୟା ମଧ୍ୟ ହ୍ରାସ ପାଇ ଆସିଛି। ଏବେ ଭିନ୍ନ କାରଣରୁ ମହିଳାମାନଙ୍କୁ ଆତ୍ମହତ୍ୟା ରାକ୍ଷସ କବଳିତ କରୁଛି। ସଭ୍ୟତାର ମନ୍ଥନରୁ ଉଦ୍‌ଭୂତ ହେଲା ସାଇବର କ୍ରାଇମ୍। ଯୁବତୀମାନଙ୍କୁ ଅସାମାଜିକମାନେ ସେକ୍ସ ସ୍କାଣ୍ଡାଲ୍‌ରେ ଜଡ଼ିତ କରି ଫଟୋ ଭାଇରାଲ କରିବାର ଭୟ ପ୍ରଦର୍ଶନ କଲେ। ସାମାଜିକ ଲଜ୍ଜା, ଭୟ, ଲାଞ୍ଛନାର ଆଶଙ୍କା ସେମାନଙ୍କୁ ଅବସାଦଗ୍ରସ୍ତ କରିବାକୁ ଲାଗିଲା। ଫଳରେ ଗତ କିଛିବର୍ଷ ତଳେ କେନ୍ଦ୍ରାପଡ଼ାରେ ଯୁବତୀମାନଙ୍କର କ୍ରମାଗତ ଆତ୍ମହତ୍ୟା ସ୍ତବ୍ଧ କରି ଦେଇଥିଲା ସମସ୍ତଙ୍କୁ। ଗୋଟାକ ପରେ ଗୋଟାଏ ଏକାଧିକ ଆତ୍ମହତ୍ୟାର ତଦନ୍ତ କରି ଏହାକୁ ନିୟନ୍ତ୍ରଣ କରିବାରେ ସଫଳ ହୋଇଥିଲା ପ୍ରଶାସନ। କୁମାରୀ ମାତୃତ୍ୱ ମଧ୍ୟ ମହିଳାମାନଙ୍କ ଆତ୍ମହତ୍ୟାର ଅନ୍ୟତମ କାରଣ ହୋଇ ପଡ଼ିଛି। ଲୋକଲଜ୍ଜା ଭୟରେ ଅନେକ ତଥ୍ୟ ପରିବାର ମଧ୍ୟ ଗୋପନୀୟ ରଖିଥାନ୍ତି।

ଅତ୍ୟାଧୁନିକ ଜୀବନ ଶୈଳୀ ଆମ ଯୁବ ବର୍ଗକୁ ଅତି ମାତ୍ରାରେ ଆକ୍ରାନ୍ତ କରୁଛି। ଭୌତିକ ସଫଳତାକୁ ସେମାନେ ଜୀବନର ଏକମାତ୍ର କାମ୍ୟ ବୋଲି ଗ୍ରହଣ କରୁଛନ୍ତି। ଏଥିପାଇଁ ବଞ୍ଚିବାର ଆବେଗମୟ ଦିଗକୁ ସମ୍ପୂର୍ଣ୍ଣ ଉପେକ୍ଷା କରୁଛନ୍ତି। ସ୍ନେହ, ପ୍ରେମ, ଧୈର୍ଯ୍ୟ, ସହିଷ୍ଣୁତା ଆଦି ଗୁଣାବଳୀର ଅଭାବ ହେତୁ ଥରେ ଅବସାଦଗ୍ରସ୍ତ ହୋଇ ଜୀବନ ପ୍ରତି ବୀତସ୍ପୃହ ହୋଇଗଲେ, ସେଥିରୁ ମୁକୁଳିବା ସେମାନଙ୍କ ପାଇଁ ଦୁରୂହ ବ୍ୟାପାର ହୋଇପଡ଼େ। ଆମ ସଫ୍ଟୱେର୍ ଇଞ୍ଜିନିୟରମାନଙ୍କ କ୍ଷେତ୍ରରେ ଏହି ମାନସିକତା ତୀବ୍ର ଭାବରେ ଅନୁଭୂତ ହେଉଛି। ଏଥିପାଇଁ ବାଙ୍ଗାଲୋର ସହରକୁ କୁହା ଗଲାଣି ଆତ୍ମହତ୍ୟାର ସହର।

ପ୍ରାଚୁର୍ଯ୍ୟ କ୍ଳାନ୍ତ ମଣିଷର ଆତ୍ମହତ୍ୟା ପ୍ରବଣତା ଓ ଦାରିଦ୍ର୍ୟ ପ୍ରପୀଡ଼ିତ ମଣିଷର ଜୀବନ ସଂଗ୍ରାମରେ ପରାଜିତ ହୋଇ ଆତ୍ମହତ୍ୟା କରିବାର ପ୍ରବଣତା ଦୁଇଟି ଯାକ ଭିନ୍ନ ପ୍ରସଙ୍ଗ । ପ୍ରଥମଟିକୁ ସମ୍ପୂର୍ଣ୍ଣ ବ୍ୟକ୍ତିଗତ ବ୍ୟାପାର ବୋଲି ଗ୍ରହଣ କରା ଯାଉଥିବା ବେଳେ ଦ୍ୱିତୀୟଟିକୁ ବ୍ୟବସ୍ଥାର ବିଫଳତା ବୋଲି ଗ୍ରହଣ କରା ଯାଇଥାଏ । ନିକଟରେ ଦାରିଦ୍ର୍ୟର କଷାଘାତରେ ପୀଡ଼ିତ ହୋଇ ସମ୍ବଲପୁରର ଜଣେ ସଙ୍ଗୀତ ଶିକ୍ଷକ ନିଜ ପତ୍ନୀ ଓ ତିନିଗୋଟି କନ୍ୟା ସନ୍ତାନଙ୍କ ସହ ରେଳ ଧାରଣାକୁ ଡେଇଁ ପଡ଼ି ଆତ୍ମହତ୍ୟା କରିବା ସମ୍ବାଦ ଆମମାନଙ୍କୁ ସ୍ତବ୍ଧ କରି ଦେଇଥିଲା ।

ଏବେ ଆମ ଆଗରେ ସବୁଠାରୁ ବଡ଼ ସମସ୍ୟା ହୋଇ ଠିଆ ହୋଇଛି ଚାଷୀ ଆତ୍ମହତ୍ୟା । ଅନ୍ୟମାନଙ୍କ ମୁହଁରେ ଦାନା ଦେବାର ଦାୟିତ୍ୱ ନେଇଥିବା ଚାଷୀମାନେ ନିଜ ସମସ୍ୟାର ସମାଧାନ କରି ନପାରି ଆତ୍ମହତ୍ୟା କରିବା ଆମକୁ ବିଚଳିତ କରି ଦେଇଛି । ଏହାକୁ ଯେତେ ରାଜନୀତିକରଣ କଲେ ସୁଦ୍ଧା ଚାଷୀକୁଳ ଯେ ଭଲରେ ନାହାନ୍ତି, ଏହା ସୁସ୍ପଷ୍ଟ । ଉଭୟ ପ୍ରାକୃତିକ ବିପର୍ଯ୍ୟୟ ଓ ମଣିଷକୃତ ପ୍ରତାରଣା ତା' ପାଇଁ ସଙ୍କଟ ହୋଇ ଠିଆ ହୋଇଛି । ବନ୍ୟା, ବାତ୍ୟା, ଅନାବୃଷ୍ଟି, ରୋଗପୋକର ପ୍ରାବଲ୍ୟ ଯେମିତି ଚାଷୀମାନଙ୍କୁ କବଳିତ କରୁଛି, ନିମ୍ନ ମାନର ବିହନ ଯୋଗାଣ, ନକଲି କୀଟନାଶକ ଔଷଧ, ଅଭାବୀ ବିକ୍ରି, ଋଣ ବୋଝ ପରି ଗୁଡ଼ାଏ ସମସ୍ୟା ଜାଲରେ ସେମିତି ଛନ୍ଦି ହୋଇ ପଡୁଛି ଚାଷୀ । ବାଣିଜ୍ୟେ ବସତି ଲକ୍ଷ୍ମୀ ତଦର୍ଦ୍ଧଂ କୃଷି କର୍ମାଣି ପରି ଆପ୍ତବାକ୍ୟ ତା'ର ଯାଥାର୍ଥତା ହରେଇ ସାରିଲାଣି । ଏବେ ସମାଜରେ ସବୁଠାରୁ ଦରିଦ୍ର ଚାଷୀ । ତା'ର ମନୋବଳ ଭାଙ୍ଗି ଯାଇଛି । ନିଜ ଉପରୁ ଭରସା ତୁଟିଛି । ତା' ପରିବାର ଦୁର୍ଦ୍ଦଶା ଭୋଗୁଛନ୍ତି । ଝିଅ ବାହାଘର ହୋଇପାରୁ ନାହିଁ । ପୁଅ ଅଧାରୁ ପାଠ ଛାଡୁଛି । ସରକାର ଦେଇଥିବା କୀଟନାଶକରେ କୀଟମାନେ ସିନା ମରୁ ନାହାନ୍ତି, କିନ୍ତୁ ସେଥିରେ ତା' ନିଜ ଜୀବନ ଚାଲି ଯାଉଛି ।

ଏହା କେବଳ ଆମ ରାଜ୍ୟର ସମସ୍ୟା ନୁହେଁ, ସର୍ବଭାରତୀୟ ସମସ୍ୟା । ସେମାନଙ୍କୁ ଉଦ୍ଧାର କରିବାକୁ ହେବ । ସେମାନଙ୍କ ସ୍ୱାଭାବିକ ଜୀବନ ଫେରାଇ ଦେବାକୁ ହେବ । ଚାଷୀ ହସିଲେ ଦୁନିଆ ହସେ । ସିଏ ଯଦି ଏମିତି ଜୀବନ ଯାତ୍ରାରେ ବିଫଳ ହୋଇ ଆତ୍ମହତ୍ୟା କରେ, ଆମର ଅଖ ଚକ ବନ୍ଦ ହୋଇଯିବ । ତା' ହାତରେ ପୁଣିଥରେ ହଳ ଲଙ୍ଗଳ ଧରେଇ ଦେବାକୁ ହେବ । ଦା' କଟୁରୀ ଧରାଇବାକୁ ହେବ । ସେମାନଙ୍କ ଜୀବନ ପସରା ପୁଣି ଖୁସିରେ ନ ଭରିଲେ ମାନବ ସମାଜ ଧ୍ୱଂସ ହୋଇଯିବ ।



# ସରକାରୀ ସଂସ୍ଥା ଓ ଜନତାଙ୍କ ଶ୍ରଦ୍ଧା

କମ୍ପାନୀକା ମାଲ୍ ଦରିଆମେ ଡାଲ୍ ଗୁଡ଼ିଟି ଆମ ଜନଜୀବନରେ ବେଶୀ ଦିନର ନୁହେଁ। ଇଂରେଜମାନଙ୍କ ଇଷ୍ଟ୍ ଇଣ୍ଡିଆ କମ୍ପାନୀ ଭାରତରେ କାର୍ଯ୍ୟକାରୀ ହେବା ପରେ ଏ ଆପ୍ତବାକ୍ୟଟିର ସୃଷ୍ଟି ହୋଇଥିବା ଅନୁମିତ ହୁଏ। ଇଷ୍ଟ୍ ଇଣ୍ଡିଆ କମ୍ପାନୀ ମାଧ୍ୟମରେ ଭାରତବର୍ଷକୁ ଅକ୍ତିଆର କରି ସାରିବା ପରେ ଇଂରେଜମାନେ ଭାରତରେ ଦମନ ଲୀଳା ଆରମ୍ଭ କରି ଦେଇଥିଲେ। ଆମ ଦେଶର ସକଳ ସଞ୍ଚିତ ସମ୍ପଦ ବିଦେଶ ଭୂଇଁକୁ ଚାଲି ଯାଉଥିଲା। ଶୋଷଣ, ଲୁଣ୍ଠନ, ଖଜଣା, ଟିକସ ଆଦି ବିଭିନ୍ନ କୌଶଳ ଥିଲା ସେମାନଙ୍କ ଅର୍ଥ ସଂଗ୍ରହର ମାଧ୍ୟମ। ଭାରତୀୟ ଜନମାନସରେ ସେମାନଙ୍କ ପ୍ରତି ଯେଉଁ ତୀବ୍ର ଅସନ୍ତୋଷ ସୃଷ୍ଟି ହୋଇଥିଲା, ତାହା ପାର୍ଶ୍ୱ ପ୍ରତିକ୍ରିୟା ରୂପେ ପ୍ରକାଶ ପାଉଥିଲା। ସେମାନେ କମ୍ପାନୀର ଲାଭ କ୍ଷତି ସହ ଯେହେତୁ ଜଡ଼ିତ ନଥିଲେ ତେଣୁ କମ୍ପାନୀର କ୍ଷତି କରିବାର ସର୍ବନିମ୍ନ ସୁଯୋଗକୁ ହାତଛଡ଼ା କରୁ ନଥିଲେ। ବେଠି ବେଗାରୀ ଓ କେବଳ ଦରମା ଗଣ୍ଡାକର ଅଧିକାରୀ ଥିବା ଭାରତୀୟମାନେ କମ୍ପାନୀର ମାଲ୍‌କୁ ଯଥେଚ୍ଛାଚାର କରିବା ସ୍ୱାଭାବିକ ପ୍ରକ୍ରିୟା ଥିଲା। କେବଳ ଇଂରେଜମାନଙ୍କ ଅମଳ ନୁହେଁ, ଦୀର୍ଘ ଏକ ହଜାରରୁ ଊର୍ଦ୍ଧ୍ୱ ବର୍ଷ ଧରି ଭାରତୀୟମାନଙ୍କ ସ୍ଥିତି ଏହିପରି ଥିଲା। ଅଧିକାର, ଦାବି- ଏସବୁ ଶବ୍ଦ ସେମାନଙ୍କ ପାଇଁ ଅର୍ଥହୀନ ଥିଲା। ଆରବୀ, ମୋଗଲ, ପଠାଣ, ପର୍ତ୍ତୁଗୀଜ- ସମସ୍ତଙ୍କ ଦୃଷ୍ଟି ଭାରତୀୟମାନଙ୍କ ଧନ ସମ୍ପତ୍ତି ଉପରେ ଥିଲା। ଭାରତୀୟମାନଙ୍କ ଉପରେ ଯଥେଚ୍ଛାଚାର କରି ଅର୍ଥ ଆହରଣ ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା। ତେଣୁ ନିଜ ଦେଶ ଓ ଜାତି ପ୍ରତି ଥିବା କର୍ତ୍ତବ୍ୟ ପ୍ରତି ଆମ ଲୋକମାନେ ନିରାସକ୍ତ ରହିଲେ। ବ୍ୟକ୍ତିଗତ ସମ୍ପତ୍ତି ଉପରେ ସେମାନଙ୍କର ଦାବି ନ ରହିବାରୁ ସେମାନେ କର୍ମ ତତ୍ପରତା ହରାଇ ବସିଲେ। ରାଜାଘର କିମ୍ବା କମ୍ପାନୀର ପିଆଦାକୁ ନିଜର ସଞ୍ଚିତ ଦ୍ରବ୍ୟ ଅଜାଡ଼ି ଦେବାର ଯେଉଁ ଯନ୍ତ୍ରଣା ସେମାନେ ଭୋଗୁଥିଲେ, ତା'ର ଉପଶମ ପାଇଁ ସେମାନେ ଦାରିଦ୍ର୍ୟ ବରଣ କରିବାକୁ ଶ୍ରେୟ ମନେ କଲେ। ଆଳସ୍ୟରେ ଦିନ କାଟିଲେ। ସେମାନଙ୍କ ଭିତରେ କର୍ମ କରିବାର, କିଛି ସଞ୍ଚୟ କରିବାର ସ୍ପୃହା ସମ୍ପୂର୍ଣ୍ଣ ନଷ୍ଟ ହୋଇଗଲା। ଯେଉଁମାନଙ୍କ ପାଖରେ ଯାହା ଧନ ସମ୍ପତ୍ତି

ଥିଲା, ସେମାନେ ତାହା ଏହି ଲୁଣ୍ଠନକାରୀ ଶକ୍ତି ପାଖରୁ ଯଥା ସମ୍ଭବ ଗୋପନ କରି ରଖିଲେ। ଏପରିକି ନିଜ ସୁଦୃଶ୍ୟ ବାସଗୃହ ସମ୍ମୁଖରେ ଝାଟିମାଟିର ଗୁହାଳ କରି ନିଜର ପ୍ରାଚୁର୍ଯ୍ୟକୁ ଲୁଚେଇବା ପାଇଁ ଚେଷ୍ଟା କଲେ। ପରେ ଏହା ଆମ ସଂସ୍କୃତିରେ ଅନ୍ତର୍ଭୁକ୍ତ ହୋଇଗଲା। ଘର ଆଗରେ ଗୁହାଳ ରହିଲେ ଶୁଭ ବୋଲି କୁହାଗଲା। ସ୍ୱାଧୀନତା ପରେ ସୁଦ୍ଧା କେତେକ ଅଞ୍ଚଳରେ ଏ ପରମ୍ପରା ବଞ୍ଚି ରହିବା ପରିଲକ୍ଷିତ ହୁଏ।

ଭାରତୀୟମାନେ ଦରିଦ୍ର ହେବା ମୂଳରେ ବୈଦେଶିକ ଶକ୍ତିମାନଙ୍କର ମୁଖ୍ୟ ଭୂମିକା ରହିଛି ବୋଲି ଆମ ସ୍ୱାଧୀନତା ସଂଗ୍ରାମୀମାନେ ଜନସାଧାରଣଙ୍କୁ ସଚେତନ କରୁଥିଲେ। ଏପରିକି ଦରିଦ୍ର ହେବାର ଅଭିମାନଟିଏ ସୁଦ୍ଧା ଭାରତୀୟ ଜନମାନସରେ ବସା ବାନ୍ଧି ସାରିଥିଲା। କାରଣ ଏମାନେ ନିଜ ନିଷ୍କର୍ମାପଣରୁ ଦରିଦ୍ର ହୋଇ ନାହାନ୍ତି, ବରଂ ସେମାନଙ୍କୁ ଅପାରଗ ଓ ନିଷ୍କର୍ମା କରି ଦିଆଯାଇଛି। ଇଂରେଜମାନଙ୍କ ଶାସନ ନୀତି ହିଁ ଆମ ଲୋକମାନଙ୍କୁ ସର୍ବହରା କରି ଦେଇଛି। ଇଂରେଜମାନଙ୍କ ବିରୁଦ୍ଧରେ ଭାରତୀୟ ଜନତାଙ୍କୁ ଏକତ୍ରିତ କରିବାର ଏହା ଅନ୍ୟତମ ରଣକୌଶଳ ଥିଲା। ଶାସନ କଳକୁ ଅଚଳ କରିବା ପାଇଁ ଧର୍ମଘଟ, ଘେରାଉ, ଅନଶନ ଆଦି ହେଉଥିଲା। ସରକାର ଥିଲା ଜନତାର ପ୍ରଧାନ ଶତ୍ରୁ। ସରକାରଙ୍କ ଉପରେ ପ୍ରଜାମାନଙ୍କର ଆସ୍ଥା ନଥିଲା, ଭରସା ନଥିଲା। ଇଂରେଜମାନେ ଯେ ଆଦୌ ଜନହିତକର କାର୍ଯ୍ୟ କରୁ ନଥିଲେ, ତାହା ଠିକ୍ ନୁହେଁ। ସେମାନଙ୍କର ଯେ କୌଣସି କାର୍ଯ୍ୟକୁ ପ୍ରଜାମାନେ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ। ସରକାରଙ୍କର ସବୁ ଯୋଜନା ଜନସ୍ୱାର୍ଥ ବିରୋଧୀ ଓ ସରକାରଙ୍କ ସ୍ୱାର୍ଥ ପ୍ରଣୋଦିତ ବୋଲି ଜନମାନସରେ ବଦ୍ଧମୂଳ ହୋଇଥିଲା।

ବିଡ଼ମ୍ବନାର କଥା, ସ୍ୱାଧୀନତାର ସତୁରୀ ବର୍ଷ ପରେ ସୁଦ୍ଧା ଆମେ ଜନମାନସରେ ସେଇ ଧାରଣାର ପ୍ରତିଫଳନ ଅନୁଭବ କରୁଛୁ। ସରକାରଙ୍କର ପ୍ରତ୍ୟେକ କାର୍ଯ୍ୟକୁ ସନ୍ଦେହ ଦୃଷ୍ଟିରେ ଦେଖିବା ଏକ ସୌଖୀନ୍ ବିଳାସରେ ପରିଣତ ହୋଇ ଗଲାଣି ବୋଲି କହିବାକୁ ହେବ। ସରକାରଙ୍କର ଯେ କୌଣସି କାର୍ଯ୍ୟକୁ ଭୋଟ୍ ପାଇବା ଉଦ୍ଦେଶ୍ୟରେ କରାଯାଉଛି ବୋଲି ନିରକ୍ଷର, ମୂର୍ଖ, ବୋକା ଲୋକଟିଏ ମୁଖରୁ ସୁଦ୍ଧା ଶୁଣିବାକୁ ମିଳୁଛି। ଆମ ସାହିତ୍ୟିକ, ବୁଦ୍ଧିଜୀବୀମାନେ ତ ସରକାର ବିରୋଧୀ ଚିନ୍ତାଧାରାକୁ ବୌଦ୍ଧିକତାର ଏକ ବିଶେଷ ଲକ୍ଷଣ ବୋଲି ମାନି ନିଅନ୍ତି। ସରକାର ବିରୋଧୀ ଚେତନା ସାହିତ୍ୟରେ ପ୍ରତିଫଳିତ ହେଲେ ତାହା ଉଚ୍ଚକୋଟୀର ସାହିତ୍ୟ ବୋଲି ଅନେକଙ୍କର ବଦ୍ଧମୂଳ ଧାରଣା। ଏ ପ୍ରକାର ଚିନ୍ତାଧାରା ସର୍ବଦା ସାଧାରଣ ଜନତାଙ୍କର ହିତ ସାଧନ କରିପାରେ ନାହିଁ। ସରକାରୀ ଯୋଜନା ଓ ଆଇନ୍ କାନୁନ୍ ପ୍ରତି ଜନତାର ଶ୍ରଦ୍ଧା,

ସହାନୁଭୂତି, ଆନ୍ତରିକତା ନ ରହିଲେ ଯୋଜନାମାନ ଅନୁରୂପ ଫଳପ୍ରଦ ହୋଇପାରେ ନାହିଁ। ଅବଶ୍ୟ ଗଣତନ୍ତ୍ରର ବହୁଦଳୀୟ ପଦ୍ଧତି ଏଥିପାଇଁ ଅନେକାଂଶରେ ଦାୟୀ। ସାଧାରଣ ଜନତା ସମସ୍ତେ ସକ୍ରିୟ ରାଜନୀତିର ବିରୋଧୀ ଗୋଷ୍ଠୀରେ ନଥାନ୍ତି ସତ, କିନ୍ତୁ ସବୁ ସରକାରୀ ଯୋଜନାକୁ ଉଦ୍ଦେଶ୍ୟ ପ୍ରଣୋଦିତ ବୋଲି ଧରି ନେଇଥାନ୍ତି। ସରକାରୀ ଉଦ୍ୟୋଗରେ ସାହାଯ୍ୟ ସହାନୁଭୂତି ତ ପର କଥା, ଅପରନ୍ତୁ ସରକାରୀ ସମ୍ପତ୍ତି ନଷ୍ଟ ବିନଷ୍ଟ ହେଉଥିଲେ ବି କୌଣସି ପ୍ରତିକ୍ରିୟା ପ୍ରଦର୍ଶନ କରନ୍ତି ନାହିଁ; ସେଥିପାଇଁ ସମ୍ବେଦନଶୀଳ ହୁଅନ୍ତି ନାହିଁ। ସରକାରଙ୍କ ସମ୍ପତ୍ତି ସମସ୍ତଙ୍କର ସମ୍ପତ୍ତି। ସମସ୍ତଙ୍କର ସମ୍ପତ୍ତି କାହାର ବ୍ୟକ୍ତିଗତ ସମ୍ପତ୍ତି ନୁହେଁ ନ୍ୟାୟରେ ଯେ ଯାହାର ଲୁଟ୍‌ତରାଜ କରିବାରେ ବ୍ୟସ୍ତ ରହନ୍ତି। କମ୍ପାନୀକା ମାଲ୍ ଦରିଆମେ ଡାଲ୍ ଆପ୍ତବାକ୍ୟଟି ଏବେ ସରକାର କା ମାଲ୍ ଦରିଆ ମେ ଡାଲ୍‌ରେ ପରିଣତ ହୋଇ ଗଲାଣି।

ଇଂରେଜ ଅମଳର କମ୍ପାନୀମାନେ ଦରିଆ ପାରିରେ ରହୁଥିଲେ। ତେଣୁ ସେମାନଙ୍କ ସମ୍ପତ୍ତିକୁ ଦରିଆରେ ଢାଳିବାର କଳ୍ପନା କରା ଯାଉଥିଲା କିନ୍ତୁ ଆଜିକାଲିକାର ବହୁରାଷ୍ଟ୍ରୀୟ କମ୍ପାନୀର ମାଲ୍‌କୁ ଛୁଞ୍ଚି ମୁନରେ ବି ମୁନଟିଏ ଆଡ଼ବାଙ୍କ କରିବାର ଜୁ କାହାର ନାହିଁ। ଦେଶୀ କମ୍ପାନୀ କିମ୍ବା ବେସରକାରୀ ଉଦ୍ୟୋଗମାନଙ୍କରେ ତ ଆହୁରି ଛୁଞ୍ଚିମାଛି ପରଖ। ତେଣୁ ସବୁ ସଫଳତାର ଅଧିକାରୀ ସେମାନେ ହେବା ବେଳକୁ ଆମ ସରକାରୀ ଉଦ୍ୟୋଗ ସବୁ ଖତ ଖାଉଛି; ଆଣ୍ଠେଇ, ପେଟେଇ, ଘୁଷୁଡ଼ି ଘୁଷୁଡ଼ି ଚାଲୁଛି। କେବଳ କ୍ଷତି ହିଁ କ୍ଷତି। ବିଶେଷଜ୍ଞ ଓ କର୍ମଚାରୀ ନିଯୁକ୍ତିଠାରୁ ସଂସ୍ଥା ଚାଲିବାର ଅନ୍ୟାନ୍ୟ ଆବଶ୍ୟକୀୟ ପ୍ରକ୍ରିୟା ପର୍ଯ୍ୟନ୍ତ ସବୁଠି ଥାଏ ଅଖ ଢିଲାକୁ ଚକ ଢିଲା ନ୍ୟାୟ। ପ୍ରତ୍ୟେକଙ୍କର ଦାୟିତ୍ୱ କାହାରି ଦାୟିତ୍ୱ ନୁହେଁ ସୂତ୍ରରେ ଚାଲେ ଆମ ସରକାରୀ ଉଦ୍ୟୋଗ, ଅନୁଷ୍ଠାନ।

ଆମ ଦେଶରେ ଶିଶୁଟିଏ ଭୂମିଷ୍ଠ ହେବା କାଳରୁ ହିଁ ସରକାରୀ ବେସରକାରୀ ଅନୁଷ୍ଠାନମାନଙ୍କ ମଧ୍ୟରେ ଥିବା ପାର୍ଥକ୍ୟର ପରିଚୟ ପାଇଥାଏ। ଥିଲାବାଲାମାନେ ବେସରକାରୀ ଉଦ୍ୟୋଗ/ ଅନୁଷ୍ଠାନ ଉପରେ ଆସ୍ଥା ସ୍ଥାପନ କରିବା ବେଳକୁ ନଥିଲାବାଲା ହିଁ ନିରୁପାୟ ହୋଇ ସରକାରୀ ଅନୁଷ୍ଠାନ ଉପରେ ନିର୍ଭର କରେ। ସରକାରୀ ହସ୍‌ପିଟାଲ୍‌ରେ ଗରିବ ପ୍ରସୂତୀ ଶିଶୁକୁ ଜନ୍ମ ଦିଏ। କିନ୍ତୁ ଧନୀକ ଶିଶୁ ଘରୋଇ ନର୍ସିଂହୋମ୍‌ରେ ଜନ୍ମ ହୁଏ। ଘରୋଇ ଶିକ୍ଷାନୁଷ୍ଠାନମାନଙ୍କରେ ସମ୍ଭ୍ରାନ୍ତ ଶିଶୁମାନଙ୍କର ବିଦ୍ୟା ଶିକ୍ଷା ହେଲା ବେଳକୁ ନିଃସ୍ୱ, ନିଃସମ୍ବଳ ପରିବାରର ଶିଶୁମାନେ ସରକାରୀ ଅନୁଷ୍ଠାନରେ ପଢ଼ନ୍ତି। ଉଚ୍ଚଶିକ୍ଷା କ୍ଷେତ୍ରରେ ସୁଦ୍ଧା ସେଇ ଏକା କଥା। ଲକ୍ଷଲକ୍ଷ ଟଙ୍କା

ନିର୍ବିବାଦରେ ଦେଇ ପାରିବାରିକ ସାମର୍ଥ୍ୟ ଥିବା ଅଭିଭାବକଙ୍କ ପିଲାମାନେ ଭଲ ଘରୋଇ ଅନୁଷ୍ଠାନରେ ପଢ଼ନ୍ତି। ଗରିବଙ୍କ ଭାଗ୍ୟରେ ତାହା ଜୁଟେ ନାହିଁ। ସରକାରୀ ସଂସ୍ଥାର ଗାଡ଼ି ମଟରରେ ଧନୀମାନେ ଯାଆନ୍ତି ନାହିଁ। ସରକାରୀ ଡାକ ସେବା ଧନୀମାନେ ବ୍ୟବହାର କରନ୍ତି ନାହିଁ। ସରକାରୀ ଔଷଧ ଦୋକାନରୁ ସେମାନେ ଔଷଧ କିଣନ୍ତି ନାହିଁ। ସରକାରୀ ସମବାୟ ସମିତିମାନଙ୍କ ଉପରେ ଜନତାର ଭରସା ନଥାଏ। ଏପରିକି ସରକାରୀ ମନୋରଞ୍ଜନ କାର୍ଯ୍ୟକ୍ରମ ପରିବର୍ତ୍ତେ ବେସରକାରୀ କାର୍ଯ୍ୟକ୍ରମ ସମସ୍ତଙ୍କର ପ୍ରିୟ ଥାଏ। ଦୂରଦର୍ଶନରେ ଜାତୀୟ ଚ୍ୟାନେଲ୍‌ଗୁଡ଼ିକ କମ୍ ଦର୍ଶକ ଉପଯୋଗ କରିଥାନ୍ତି। ସରକାରୀ ସଂସ୍ଥା ପରିବର୍ତ୍ତେ ବେସରକାରୀ ଓ ଘରୋଇ ସଂସ୍ଥା ଉପରେ ଜନତାର ଆସ୍ଥା ଆଦୌ ଶୁଭ ଲକ୍ଷଣ ନୁହେଁ। ଏକ ଜନମଙ୍ଗଳ ରାଷ୍ଟ୍ରରେ ରାଷ୍ଟ୍ରୀୟ ଯୋଜନା ଜନତାଙ୍କ ପାଖରେ ପହଞ୍ଚାଇବାରେ ଏହା ବାଧକ ହୋଇଥାଏ। ସଙ୍ଗେସଙ୍ଗେ ଜନତା ଓ ସରକାରଙ୍କ ମଧ୍ୟରେ ଥିବା ବ୍ୟବଧାନ ଏହାଦ୍ୱାରା ବଢ଼ି ଚାଲେ। ତେଣୁ ସରକାରଙ୍କ ତରଫରୁ ଜନ ହିତକର କାର୍ଯ୍ୟକ୍ରମ ପ୍ରଣୟନ କରାଗଲା ବେଳେ ଏହାକୁ ରାଜନୈତିକ ଅଭସନ୍ଧିଠାରୁ ଯଥେଷ୍ଟ ଦୂରରେ ରଖା ଯିବାର ଆବଶ୍ୟକତା ଯେମିତି ରହିଛି, ସେସବୁର ତର୍ଜମା କରି ଜନ ସମୁଦାୟକୁ ସଚେତନ କରିବା ଦିଗରେ ମଧ୍ୟ ଆମ ବୁଦ୍ଧିଜୀବୀମାନଙ୍କର ଭୂମିକା ରହିଛି।



# ଗେରସ୍ତ ଅଯୋଗ୍ୟ ପଣେ...

'ଗେରସ୍ତ ଅଯୋଗ୍ୟ ପଣେ ଭାରିଯା ଶୋଇଛି ଚାକୁଣ୍ଡା ବଣେ'– ଆମ ପୁରପଲ୍ଲୀର ଏକ ବହୁ ପ୍ରଚଳିତ ରୁଢ଼ି। ମଣିଷର ଦାୟିତ୍ୱହୀନତା ଓ ନିପାରିଲା ପଣକୁ ଆକ୍ଷେପ କରି ଏ ରୁଢ଼ି ପ୍ରୟୋଗ କରାଯାଇଥାଏ। ନିଜର କର୍ତ୍ତବ୍ୟ ପ୍ରତି ଉଦାସୀନ ରହି ନିଜ ପାଇଁ ଓ ଅନ୍ୟମାନଙ୍କ ପାଇଁ ଦୁର୍ଭୋଗ ବରଣ କରି ଆଣୁଥିବା ଏହି ନିଷ୍କର୍ମା ମଣିଷମାନେ ବେଶ୍ ବାକ୍‌ପଟୁ। ପୂର୍ବପୁରୁଷଙ୍କ ଐତିହ୍ୟ, ଗରିମାକୁ ନେଇ ବେଶ୍ ବାହାସ୍ଫୋଟ ମାରନ୍ତି। କିନ୍ତୁ ଏମାନଙ୍କ ବର୍ତ୍ତମାନ ଥାଏ ସମ୍ପୂର୍ଣ୍ଣ ନିଃସ୍ୱ, ନିଃସମ୍ବଳ। ଏମାନେ ହିଡ଼ ମୁଣ୍ଡକୁ ଗଡ଼ନ୍ତି ନାହିଁ। ବାପଅଜା ତେପନ ପୁରୁଷଙ୍କ ସମ୍ପତ୍ତିକୁ ବିକିଭାଙ୍ଗି ଚଳୁଥିବା ଏ ବ୍ୟକ୍ତିମାନେ ସ୍ୱପ୍ନରେ ଅନେକ ଦୁଃସାଧ୍ୟ କାର୍ଯ୍ୟ ସାଧନ କରି ପାରିବାର ପ୍ରୋଢ଼ୀ କରନ୍ତି ଅଳସୁଆର ବାରବାଟି ଚାଷ ପରି। ଏଥିରେ ବାସ୍ତବତାର ଲେସମାତ୍ର ଚହ୍ନବର୍ଣ୍ଣ ନଥାଏ। ଏମାନେ ନିଜ ନିଜର ସୁରକ୍ଷା ବଳୟ ଭିତରେ ରହି ବେଶ୍ ଆତ୍ମସନ୍ତୋଷ ଲାଭ କରନ୍ତି। କାଦୁଅକୁ ଗୋଡ଼ ବଢ଼ାନ୍ତି ନାହିଁ କି ଧୁଅନ୍ତି ନାହିଁ। ଏଇ ସ୍ୱପ୍ନଭୁକ୍ ମଣିଷମାନଙ୍କ ପାଇଁ ସମାଜର ଅଶେଷ କ୍ଷତି ସାଧନ ହୋଇଥାଏ। ଏମାନେ ନିଜେ କିଛି କରନ୍ତି ନାହିଁ କି କରୁଥିବା ଲୋକଙ୍କୁ ଉତ୍ସାହିତ କରନ୍ତି ନାହିଁ। ଗୁଡ଼ାଏ ଉଭଟ ଚିନ୍ତା ଓ ଅବାସ୍ତବ ପରିକଳ୍ପନାର ଜାଲ ବୁଣି ବୁଣି ଏମାନେ ଜୀବନ କାଟି ଦିଅନ୍ତି। ବାସ୍ତବତାର ରଡ଼ ନିଆଁକୁ ଭୟ କରି ଏମାନେ ଅତୀତର ଲିଭିଲା ପାଉଁଶର ଉଷ୍ମତା ଭିତରେ ଆତ୍ମଗୋପନ କରି ଚରମ ଆହ୍ଲାଦ ପାଇଥାନ୍ତି। ଯେତେ ଶ୍ରୁତିକଟୁ, ଅପ୍ରିୟ ଓ ନିଷ୍ଠୁର ହେଲେ ସୁଦ୍ଧା ଆମ ଭିତରୁ ଅନେକ ଓଡ଼ିଆଙ୍କର ଏହା ଯେ ଏକ ବିଶେଷ ଗୁଣ, ତାହା ଅସ୍ୱୀକାର କରିହେବ ନାହିଁ।

ଆମର ଅଯୋଗ୍ୟ ପଣ ହେତୁ ଉତ୍କଳର ଏକତ୍ରୀକରଣ ପାଇଁ ଲଢୁଥିବା ଆମ ମହାମନୀଷୀମାନଙ୍କ ସ୍ୱପ୍ନ ସମ୍ପୂର୍ଣ୍ଣ ସାକାର ହୋଇ ପାରିଲା ନାହିଁ। ଉତ୍କଳ ଜନନୀ ତଥାପି ଖଣ୍ଡିତା ଓ ଛିନ୍ନା ହୋଇ ରହିଗଲା। ୧୯୩୬ ମସିହା ଏପ୍ରିଲ ପହିଲାରେ ଆମେ ଯେଉଁ ଉତ୍କଳ ଜନନୀକୁ ପାଇଲୁ, ତାହା ତା'ର ପ୍ରକୃତ ଭୌଗୋଳିକ ରୂପରେଖ ନୁହେଁ। ସରେଇକଳା, ଖରସୁଆଁ, ମେଦିନୀପୁର, ଚକ୍ରଧରପୁର ସମେତ ଅନ୍ୟୁନ ୭୫ଟି ଗ୍ରାମ ପ୍ରତିବେଶୀ ରାଜ୍ୟମାନଙ୍କ ଅକ୍ତିଆରରେ ରହିଗଲା। ଆମେ ଆଉ ଟିକେ ଚେଷ୍ଟା

କରିଥିଲେ ଏସବୁ ଆମ ହାତକୁ ଆସି ପାରିଥାନ୍ତା। ଆମେ ପାରିଲୁ ନାହିଁ। ଅଥଚ ଯାହା ଆମର ନୁହେଁ, ତାକୁ ଆମର ବୋଲି କହିବାରେ ପ୍ରଗଲ୍‌ଭ ହୋଇଥାଉ। ଏକଦା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଆମ ଓଡ଼ିଶାର ସୀମା ପରିବ୍ୟାପ୍ତ ଥିଲା ବୋଲି କହିବାରେ, ଗାଇବାରେ, ଲେଖିବାରେ ଆମେ କେବେ କ୍ଳାନ୍ତ ଅନୁଭବ କରୁନାହୁଁ। ଜଣେ ରାଜାଙ୍କର ସାମର୍ଥ୍ୟ ଅସାମର୍ଥ୍ୟ ଅନୁସାରେ ଅତୀତରେ ରାଜ୍ୟଗୁଡ଼ିକର ସୀମା ବର୍ଦ୍ଧିତ କିମ୍ବା ସଂକୁଚିତ ହେଉଥିଲା। ଏହା ସେହି ରାଜ୍ୟର ରାଜନୈତିକ ସୀମାରେଖା। ଏହା ପୁଣି ଫେରିଆସେ ତା'ର ସ୍ୱାଭାବିକ ସୀମାରେଖାକୁ; ତାର ସାଂସ୍କୃତିକ ଓ ଭୌଗୋଳିକ ସୀମାରେଖାର ସ୍ଥିତାବସ୍ଥାକୁ। ଏହି ସ୍ୱାଭାବିକ ଭୌଗୋଳିକ ସୀମାରେଖାକୁ ବଞ୍ଚେଇ ରଖିବା ପାଇଁ ଆମର ଯେତିକି ପ୍ରଯତ୍ନ ନାହିଁ, ତା'ଠାରୁ ଅଧିକ ପ୍ରଗଲ୍‌ଭ ଆମେ ଆମ ରାଜ୍ୟର ସୀମାକୁ ଗଙ୍ଗାଠାରୁ ଗୋଦାବରୀ ବୋଲି କହିବାରେ।

ଆମ କବି ଜୟଦେବଙ୍କୁ ତଥାପି ଆମେ ଆମ ମାଟିର କବି ବୋଲି ସାବ୍ୟସ୍ତ କରି ପାରିଲୁ ନାହିଁ। ବଙ୍ଗାଳୀମାନେ ଜୟଦେବ ସେମାନଙ୍କର ବୋଲି ସର୍ବଭାରତୀୟ ସ୍ତରରେ ସ୍ୱୀକୃତି ନେଇଗଲେ। ଆମ ନିଷ୍କ୍ରିୟତା ସେ ସମ୍ପର୍କରେ ଅଧିକ ଗବେଷଣା କରିବାକୁ ମଧ୍ୟ ଉଚିତ ମଣିଲା ନାହିଁ। ଅଥଚ ଅଳସୁଆର ବାରବାଟି ଚାଷ ପରି ଆମେ ସଂସ୍କୃତ କବି କାଳିଦାସଙ୍କୁ ଆମ ଓଡ଼ିଶାରେ ଜନ୍ମ ବୋଲି ସାବ୍ୟସ୍ତ କରିବାକୁ ଅନେକ ସମୟ, ସାମର୍ଥ୍ୟ ଓ ଅର୍ଥ ବ୍ୟୟ କରି ଚାଲିଛୁ। ତାଙ୍କ ଜନ୍ମଭୂମି ଅମରକଣ୍ଟକ ନୁହେଁ, ଉମରକୋଟ ଓ ତାଙ୍କ ବର୍ଣ୍ଣିତ ରାମଗିରି ପର୍ବତ ଓଡ଼ିଶାର ରାମଗିରି ବୋଲି ଦାବି କରୁଛୁ। କଟକ ସହରରେ ଜନ୍ମିତ ଓ ଶୈଶବ ଅତିବାହିତ କରିଥିବା ସୁଭାଷ ବୋଷଙ୍କୁ ବଙ୍ଗାଳୀମାନେ ନିଜସ୍ୱ କରିନେଲେ। ଏସବୁ ପ୍ରତି ସଚେତନ ନହୋଇ ଆମେ ଗୌତମ ବୁଦ୍ଧଙ୍କର ଏକୁଡ଼ି ପାଉଁଶର ସନ୍ଧାନ କରୁ ଓଡ଼ିଶା ମାଟିରେ। ଏଥିପାଇଁ ଗବେଷଣା ଓ ପ୍ରକଳ୍ପମାନଙ୍କରେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟିତ ହୁଏ। ସ୍ୱର୍ଣ୍ଣଲଙ୍କାର ସନ୍ଧାନ ମଧ୍ୟ ଆମ ମାଟିରେ କରନ୍ତି ଆମ ଗବେଷକମାନେ। ସୋନପୁର ହୋଇଯାଏ ଲଙ୍କା। ଲଙ୍କେଶ୍ୱରୀ ତ ସହଜେ ଏବେ ବି ଓଡ଼ିଶାରେ ପୂଜିତା। ସେଥିପାଇଁ ପୃଷ୍ଠା ପୃଷ୍ଠା ବହି ଲେଖାଯାଏ। ତାହା ଛପା ଯାଇ ଯୁକ୍ତି ଓ ପ୍ରମାଣକୁ ସୁଦୃଢ଼ କରାଯାଏ। ଏପରିକି ସେକ୍ସପିୟରଙ୍କୁ କେହି କେହି ସଖାପିଅର (ପଞ୍ଚସଖା) ଓ ଯୀଶୁଖ୍ରୀଷ୍ଟଙ୍କୁ ଯଶୋକୃଷ୍ଣ କହିବାର ଧୃଷ୍ଟତା ମଧ୍ୟ କରିଥାନ୍ତି। ଆମର ଏଇ ନିଷ୍କର୍ମାପଣ ହେତୁ ଆମେ ଅନେକ କିଛି ହରାଇ ସାରିଛୁ। ଓଡ଼ିଆ ଏକ୍‌ଟା ସ୍ୱତନ୍ତ୍ର ଭାଷା ନୟ କହି କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଓଡ଼ିଆ ଭାଷାକୁ ବଙ୍ଗଳା ଭାଷା ଭିତରେ ନିଶ୍ଚିହ୍ନ କରିବାର ଯେଉଁ ଚକ୍ରାନ୍ତ କରିଥିଲେ, ଫକୀର ମୋହନ ସେନାପତି

ନଥିଲେ ବୋଧହୁଏ ଆଜି ଓଡ଼ିଆ ଭାଷା ନଥାନ୍ତା କି ଆମ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇଲା ବୋଲି ଆମେ ଉଲ୍ଲସିତ ହୋଇ ନଥାନ୍ତୁ। ଚାଟଶାଳୀ ପାଠ ପଢ଼ିଥିବା, ଅଞ୍ଚଳ ସିଲେଇ ତଦାରଖ କରି ପେଟ ପୋଷୁଥିବା ମଣିଷଟିଏ ନିଜ ଚେଷ୍ଟାରେ ଓଡ଼ିଆ ଜାତିର ସ୍ଥିତି ଓ ସ୍ୱାଭିମାନର ଯେପରି ଟେକ ରଖିଥିଲେ, ତାଙ୍କ ପ୍ରତି ଯେତେ କୃତଜ୍ଞତା ଜ୍ଞାପନ କଲେ ବି ତାହା ଯଥେଷ୍ଟ ହେବନାହିଁ। ଅଥଚ ନିଜକୁ ଅଧିକ ଗୁଣୀଜ୍ଞାନୀ ଓ ଦାୟିତ୍ୱସମ୍ପନ୍ନ ବୋଲି ଡିଣ୍ଡିମ ପିଟୁଥିବା ଆମେ ଦେଶ ଓ ଜାତି ସମ୍ପର୍କରେ କେତେ ସଚେତନ? ଚୋର ଆମ ଘରେ ପଶି ଆମକୁ ସର୍ବସ୍ୱାନ୍ତ କରି ସାରିବା ପରେ ହିଁ ଆମର ଜ୍ଞାନ ଉଦୟ ହୁଏ। ଆମ ରସଗୋଲାକୁ ଅନ୍ୟମାନେ ତାଙ୍କ ରାଜ୍ୟର ବୋଲି ପ୍ରମାଣ କରି ଜିଆଇ ମାନ୍ୟତା ନେଇ ସାରିଲା ପରେ ଆମେ ରସଗୋଲା ଉତ୍ସବ ପାଳନ କରି ରସଗୋଲା ଆମର ବୋଲି ବେଶ୍ ଆତ୍ମସନ୍ତୋଷ ଲାଭ କରୁ। ଧାନର ପ୍ରଥମ ଜନ୍ମସ୍ଥାନ କୋରାପୁଟ ଜିଲ୍ଲାର ବାସୁମତୀ ଚାଉଳକୁ ବିଦେଶୀ ପେଟେଣ୍ଟ କରିନେଲେ; ଆମେ ନିସ୍ପୃହ ରହିଲୁ। କର୍ପୂର ଉଡ଼ି ଯାଇଥିବା କନାକୁ ଧରି ଭାଷଣବାଜି ମାରିବାରେ ଆମ ସାମର୍ଥ୍ୟ ଶତସିଂହର ବିକ୍ରମରେ ମାତି ଉଠେ।

ଏବେ ଆମ ଆଗରେ ଆହୁରି ଗୋଟିଏ ସ୍ପର୍ଶକାତର ପ୍ରସଙ୍ଗ। ମାଲକାନଗିରି ଅଞ୍ଚଳର କୁଟିଆ ଗ୍ରାମପୁଞ୍ଜ ସହ ବାଲେଶ୍ୱର ଜିଲ୍ଲାର ସୀମାନ୍ତ ଉଦୟପୁର ଓ ଶଙ୍ଖାମୋଦୀ ଗାଁ ଉପରେ ପ୍ରତିବେଶୀ ରାଜ୍ୟମାନଙ୍କର ଲୋଲୁପ ଦୃଷ୍ଟି। ଉଦୟପୁରରେ ଦାଦାଗିରି ତ ଶଙ୍ଖାମୋଦୀରେ ଚତୁରତା। କୁଟିଆ ଗ୍ରାମ ପଞ୍ଚାୟତରେ ମଧ୍ୟ ସେହିପରି ମିଛ ସହାନୁଭୂତି ଦର୍ଶାଇ ସେ ଅଞ୍ଚଳ ଅକ୍ତିଆର କରିବାର ମସୁଧା ଚାଲିଛି। ତଥାପି ଆମେ ସୁଖନିଦ୍ରାରେ।

୧୯୩୬ରେ ସ୍ୱତନ୍ତ୍ର ଉତ୍କଳ ଗଠନ କାଳରେ ରାଜା ବିକ୍ରମ ଦେବ ବର୍ମାଙ୍କ ପ୍ରଚେଷ୍ଟାରେ ଜୟପୁର ଇଷ୍ଟେଟ୍ ମାଡ୍ରାସ ପ୍ରେସିଡେନ୍ସିରୁ ଆସି ଓଡ଼ିଶାରେ ମିଶିଥିଲା। ଫଳରେ ଏହି କୁଟିଆ ଗ୍ରାମ ପଞ୍ଚାୟତରେ ଥିବା ୨୮ଟି ଗାଁ ସ୍ୱତଃ ଆମ ରାଜ୍ୟରେ ମିଶିଲା। ଏ ଅଞ୍ଚଳ ମୂଲ୍ୟବାନ୍ ଖଣିଜ ସମ୍ପଦରେ ସମୃଦ୍ଧ ବୋଲି କୁହାଯାଉଛି। ଏହାର ୧୭ ବର୍ଷ ପରେ ୧୯୫୩ରେ ସ୍ୱତନ୍ତ୍ର ଆନ୍ଧ୍ରପ୍ରଦେଶର ସୃଷ୍ଟି। ଏହି ୨୮ଟି ଗ୍ରାମ ମଧ୍ୟରୁ ୨୧ଟି ଗ୍ରାମ ଉପରେ ଆନ୍ଧ୍ର ନିଜର ଅଧିକାର ସାବ୍ୟସ୍ତ କରିବାରୁ ବାରମ୍ବାର ବିବାଦ ଲାଗି ରହିଲା। ଫଳରେ ୧୯୬୮ରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ସମୟରୁ ଏହି ବିବାଦ ପାଇଁ ସୁପ୍ରିମ୍‌କୋର୍ଟର ଦ୍ୱାରସ୍ଥ ହୋଇଛି ଓଡ଼ିଶା। ନ୍ୟାୟ ବିଳମ୍ବିତ ହେବାରୁ ଏଠାରେ ବିକାଶମୂଳକ କାର୍ଯ୍ୟ ମଧ୍ୟ ସୁଚାରୁ ରୂପେ ହୋଇପାରୁ ନାହିଁ। ଏ ଅଞ୍ଚଳରେ ପୂର୍ବରୁ ଦୁଇଜଣ ସରପଞ୍ଚ ଥିଲେ, ଜଣେ ଓଡ଼ିଆ ଓ ଜଣେ

ତେଲୁଗୁ। ଏବେ କିନ୍ତୁ ଚାରିଜଣ ସରପଞ୍ଚ ଅଛନ୍ତି ଯେଉଁମାନଙ୍କ ମଧ୍ୟରୁ ଜଣେ ଓଡ଼ିଆ ଓ ଅନ୍ୟ ତିନିଜଣ ତେଲୁଗୁ।

ଆଗକୁ ନିର୍ବାଚନ ଥିବାରୁ ଏ ଅଞ୍ଚଳ ଅଧିବାସୀମାନଙ୍କୁ ପ୍ରବାହିତ କରିବା ପାଇଁ ଆନ୍ଧ୍ର ସରକାରଙ୍କର କମ୍ବଳ ବାଣ୍ଟିବା ପରି ଅହେତୁକ ଅନୁକମ୍ପାମୂଳକ କାର୍ଯ୍ୟ ଆମର ମୁଣ୍ଡବ୍ୟଥାର କାରଣ ହୋଇଛି। ଏହି ମୁଣ୍ଡବ୍ୟଥା ପାଇଁ ମଲମ ଟିକେ ଲଗାଇ ସାମୟିକ ନିଦ୍ରା ଗଲେ ହେବନାହିଁ। ଏହାର ସ୍ଥାୟୀ ପ୍ରତିକାର କରି ବ୍ୟଥାର ମୂଳୋତ୍ପାଟନ କରିବା ହିଁ ବିଜ୍ଞତାର ପରିଚାୟକ ହେବ। କେବଳ କୁଟିଆ ଗ୍ରାମପୁଞ୍ଜ ନୁହେଁ, ଆମ ରାଜ୍ୟର ସୀମାନ୍ତ ଅଞ୍ଚଳଗୁଡ଼ିକ କିପରି ଅବହେଳିତ ହୋଇ ପଡ଼ି ରହିଛି, ତାହା ଆମ ରାଜ୍ୟର ସୀମାରୁ ଅନ୍ୟ ରାଜ୍ୟକୁ ପ୍ରବେଶ କଲେ ସହଜରେ ବାରି ହୋଇପଡ଼େ।

ଆମ ସମ୍ପଦକୁ ହେପାଜତରେ ରଖିବା ଆମର କାମ। ଆମ ସ୍ଥିତିକୁ ସୁଦୃଢ଼ କରିବା ଆମର ଦାୟିତ୍ୱ। ଆମ ପରିଚୟକୁ ଆମେ କେତେ ସୁଦୂରପ୍ରସାରୀ କରିପାରୁଛୁ, ତାହା ଆମ କର୍ମତତ୍ପରତା, ଉଦ୍ୟମ ଓ ନିଷ୍ଠା ଉପରେ ନିର୍ଭର କରେ। ଏସବୁ ନକରି ଆମେ ଅନ୍ୟକୁ ଦୋଷ ଦେଇ କୁମ୍ଭୀର କାନ୍ଦଣା ଅଥବା ଅରଣ୍ୟ ରୋଦନ କଲେ ସମସ୍ୟାର ସମାଧାନ ହୋଇ ପାରିବ ନାହିଁ।



# ଋଣଂ କୃତ୍ୱା ଘୃତମ୍ ପିବେତ୍

ଗୌତମ ବୁଦ୍ଧ ଯେତେବେଳେ ସରଳ, ନିରାଡ଼ମ୍ବର, କାମନା ବିହୀନ ଜୀବନ ବଞ୍ଚିବା କଥା କହୁଥିଲେ, ପୀଡ଼ିତ ମଣିଷଙ୍କ ପାଇଁ ଜୀବନ ଉତ୍ସର୍ଗ କରିବା ଉପରେ ପ୍ରାଧାନ୍ୟ ଦେଉଥିଲେ, ସେତେବେଳକୁ ଆଉ ଗୋଟାଏ ବିପରୀତମୁଖୀ ଦର୍ଶନ ସମାଜକୁ ଆକ୍ରାନ୍ତ କରି ସାରିଥିଲା। ବୌଦ୍ଧ ଧର୍ମ ଓ ସଂଘର ଅସନ୍ତୁଷ୍ଟ ଗୋଷ୍ଠୀ ଏହି ଦର୍ଶନର ଅନୁଗାମୀ ହୋଇ ପଡୁଥିଲେ। ଏମାନଙ୍କୁ କୁହା ଯାଉଥିଲା ଆଜୀବକ। ବୌଦ୍ଧ ଧର୍ମର ସଂଯମ ପୀଡ଼ିତ ଜୀବନ ପ୍ରତି ବୀତସ୍ପୃହ ହୋଇ ଏମାନେ ପ୍ରବୃତ୍ତି ସର୍ବସ୍ୱ ଜୀବନ ବଞ୍ଚୁଥିଲେ। ଏହି ଦର୍ଶନକୁ ଚାର୍ବାକ୍ ଦର୍ଶନ କୁହା ଯାଉଥିଲା। ଦାର୍ଶନିକ ଚାର୍ବାକ୍ ଥିଲେ ଏହାର ପ୍ରଣେତା। ସମ୍ଭବତଃ ପ୍ରାକ୍- ବୁଦ୍ଧ କାଳରେ ତାଙ୍କର ଜନ୍ମ ହୋଇଥିଲା, ଯିଏ କେବଳ ଭୋଗର କଥା କହୁଥିଲେ। ଆତ୍ମା- ପରମାତ୍ମା, ପୂର୍ବଜନ୍ମ- ପର ଜନ୍ମରେ ତାଙ୍କର ବିଶ୍ୱାସ ନଥିଲା। ବର୍ତ୍ତମାନରେ ବଞ୍ଚିଥିବା ଜୀବନକୁ ମହୋତ୍ସବମୟ କରି ବଞ୍ଚିବା ଚାର୍ବାକ୍ ଦର୍ଶନର ମୂଳମନ୍ତ୍ର ଥିଲା। ଚାର୍ବାକ୍ ଅର୍ଥାତ୍ ଚାରୁ ବାକ୍- ସୁନ୍ଦର କଥା; ଲୋକଙ୍କୁ ଭଲ ଲାଗୁଥିବା କଥା। ଏହି ହେତୁ ଏ ଦର୍ଶନକୁ ଚାର୍ବାକ୍ ଦର୍ଶନ କୁହା ଯାଉଥିଲା ଅଥବା ନୀତି, ଆଦର୍ଶ, ମୂଲ୍ୟବୋଧକୁ ଚର୍ବ୍ୟ (ଖାଇଦେବା) କରି ସେ ବଞ୍ଚିବାକୁ କହୁଥିଲେ ବୋଲି ଏହାକୁ ଚାର୍ବାକ୍ ଦର୍ଶନ କୁହା ଯାଉଥିଲା କି ସେହି ପ୍ରକାରେ ତାଙ୍କ ନାଁ ଚାର୍ବାକ୍ ହୋଇଥିଲା, ତାହା ନିର୍ଣ୍ଣୟ କରିବା ତଥାପି ଆୟାସସାଧ। କିନ୍ତୁ ମୁଷ୍ଟିମେୟ ଲୋକ ତାଙ୍କର ଅନୁଗାମୀ ଥିଲେ, ଯେଉଁମାନେ କେବଳ ଭୋଗୈଶ୍ୱର୍ଯ୍ୟ ଚେତନାରେ ବୁଡ଼ି ରହୁଥିଲେ। କହିବା ବାହୁଲ୍ୟ, ତାଙ୍କ ଦର୍ଶନର ମୂଳମନ୍ତ୍ର ଥିଲା- 'ଯାବତ୍ ଜୀବେତ୍ ସୁଖମ୍ ଜୀବେତ୍ ଋଣଂ କୃତ୍ୱା ଘୃତମ୍ ପିବେତ୍/ ଭସ୍ମୀଭୂତସ୍ୟ ଶରୀରଂ ପୁନରାଗମନଂ କୃତଃ।' ମୃତ୍ୟୁ ପରେ ମୁଠାଏ ପାଉଁଶରେ ପରିଣତ ହେଉଥିବା ଏ ଶରୀର ଆଉ ଥରେ ଆମକୁ ମିଳିବ ନାହିଁ। ତେଣୁ ଜୀବନ ଥିବା ଯାଏଁ ଋଣ କରି ହେଉ ପଛେ ସୁଖ ସ୍ୱାଚ୍ଛନ୍ଦ୍ୟରେ ବଞ୍ଚିବା। ଚାର୍ବାକ୍ ଦର୍ଶନର ଏ ଭୋଗ ସର୍ବସ୍ୱ ଚେତନା ବୈଦିକ ଯୁଗରୁ ଥିଲା। କୁହାଯାଏ, ଅସୁରମାନଙ୍କ ପତନ ପାଇଁ ଦେବତାମାନେ ବୃହସ୍ପତିଙ୍କ ମାଧ୍ୟମରେ ଏହି ଦର୍ଶନ ଅସୁରଙ୍କ ପାଖରେ ପହଞ୍ଚାଇ ଥିଲେ। ପ୍ରାକ୍- ବୁଦ୍ଧ କାଳକୁ ଏହି

ଦର୍ଶନ ପୁଣିଥରେ ସମ୍ପ୍ରସାରିତ ହୋଇଥିଲା ଚାର୍ବାକ୍‌ଙ୍କ ପ୍ରଚେଷ୍ଟାରେ। ଏମାନଙ୍କୁ ନାସ୍ତିକ କୁହା ଯାଉଥିଲା। କିଛିକାଳ ପାଇଁ ଜନାଦୃତ ହୋଇଥିଲେ ସୁଦ୍ଧା ବେଶୀ କାଳ ସ୍ଥାୟୀ ହୋଇ ରହି ପାରିଲା ନାହିଁ। ତ୍ୟାଗ ଓ ତିତିକ୍ଷାରେ ପୂର୍ଣ୍ଣ ଭାରତୀୟ ଦର୍ଶନର ଏହା ସମ୍ପୂର୍ଣ୍ଣ ପରିପନ୍ଥୀ ଥିଲା। ସରଳ ଜୀବନ, ଉଚ୍ଚ ଚିନ୍ତନ ଆମ ସୁଖୀ ଜୀବନର କୌଶଳ। ଭଗବତ୍ ବିଶ୍ୱାସ ଆମ ବଞ୍ଚିବାର ମୂଳାଧାର। ଭୋଗରେ ନୁହେଁ, ବୈରାଗ୍ୟରେ ଆମ ଜୀବନ ଉର୍ଜ୍ଜ୍ୱସ୍ୱଳ। ପୁନର୍ଜନ୍ମରେ ବିଶ୍ୱାସ ରଖିଥିବା ଭାରତୀୟ ଚିନ୍ତନ ଇହକାଳ ଅପେକ୍ଷା ପରକାଳ ପାଇଁ ବେଶୀ ସଚେତନ ଥାଏ। ଆମେ ଆଜି ଯାହା ହୋଇଛୁ, ସେସବୁ ପୂର୍ବ ଜନ୍ମର ସୁକୃତ ଅଥବା ଦୃଷ୍କୃତର ହେତୁ। ପୁଣି ଇହ କାଳର କର୍ମ ନିୟନ୍ତ୍ରଣ କରେ ପର କାଳକୁ। ଏ ଜନ୍ମରେ ଧର୍ମକର୍ମ କରି ଆମେ ଯେଉଁ ପୂଣ୍ୟ ସଞ୍ଚୟ କରୁ, ତାହା ଆସନ୍ତା ଜନ୍ମର ପୁଞ୍ଜି- ଏହି ଚିନ୍ତନ ଆମ ସାମାଜିକ ଜୀବନକୁ ଶୃଙ୍ଖଳିତ, ସଂଯତ ଓ ମାନବୀୟ କରିଛି।

ଚାର୍ବାକ୍‌ଙ୍କ ପ୍ରବୃତ୍ତି ପିଚ୍ଛିଳ ଜୀବନ ଶୈଳୀର ପ୍ରତିକ୍ରିୟା ସ୍ୱରୂପ ଋଣ ନ କରିବାକୁ ଉପଦେଶମାନ ଦିଆଗଲା। ଚିର ପ୍ରବାସୀ, ଯୌବନରେ ଦାରିଦ୍ର୍ୟ ଭୋଗ କରୁଥିବା ବ୍ୟକ୍ତି, ଆଜନ୍ମ ରୋଗୀ ମଣିଷକୁ ସବୁଠୁ ଦୁଃଖୀ କୁହା ଯାଉଥିବା ତାଲିକାରେ ଋଣଗ୍ରସ୍ତ ବ୍ୟକ୍ତିଙ୍କୁ ମଧ୍ୟ ସାମିଲ୍ କରାଗଲା। ଏପରିକି ଋଣ କରି ଶୁଝୁ ନଥିବା ବ୍ୟକ୍ତି ଆସନ୍ତା ଜନ୍ମରେ ଋଣଦାତା ବାଡ଼ିରେ ଲଙ୍କାଗଛ ହୋଇ ଶୁଝେ ବୋଲି କହି ଋଣ କରିବା ପ୍ରବୃତ୍ତିକୁ ନିରୁତ୍ସାହିତ କରାଗଲା। ଏବେ ସୁଦ୍ଧା ମୃତ୍ୟୁଶଯ୍ୟା ନିକଟରେ ପୁତ୍ର ପ୍ରପୌତ୍ର କାହାଠାରୁ ଋଣ କରିଛ କି ନାହିଁ ପଚାରନ୍ତି ଅଥବା ସମ୍ପୃକ୍ତ ବ୍ୟକ୍ତିଙ୍କର ନିଜ ତରଫରୁ ଯଦି କିଛି ଋଣ ଶୁଝିବା ପାଇଁ ଥାଏ, ସେମାନଙ୍କୁ ଶୁଝି ଦେବା ପାଇଁ ଅନୁରୋଧ କରିଥାନ୍ତି। ଋଣ ଏକ ଭୟଙ୍କର ବ୍ୟାଧି। ଏହାକୁ ସମୂଳେ ବିନାଶ କରିବା ପାଇଁ ଆମ ଶାସ୍ତ୍ର ସଂହିତାରେ ଅନୁଶାସନ ଖଞ୍ଜି ଦିଆଗଲା।

ବିଂଶ ଶତାବ୍ଦୀର ଶେଷାର୍ଦ୍ଧ ପର୍ଯ୍ୟନ୍ତ ଏହି ଚିନ୍ତାଧାରା ବଳବତ୍ତର ଥିଲା। ଋଣ କରିବା ଥିଲା ଲଜ୍ଜାଜନକ ପରିସ୍ଥିତି। ବଞ୍ଚିବାର ସର୍ବନିମ୍ନ ଆବଶ୍ୟକତାକୁ ପୂରଣ କରି ନ ପାରିଲେ ଅସହାୟ ହୋଇ ମଣିଷ ଋଣ କରୁଥିଲା। ତାହା ଆତ୍ମୀୟସ୍ୱଜନ ଅଥବା ଭାଇବନ୍ଧୁଙ୍କ ପାଖରୁ। ଏପରିକି ବ୍ୟାଙ୍କ୍ ଋଣ ପାଇଁ ବି ଲଜ୍ଜା ଓ ଭୟ କରୁଥିଲା। କିନ୍ତୁ ବିଂଶ ଶତାବ୍ଦୀରେ ଏ ମାନସିକତା ଆଉ ନାହିଁ। ଏବେ ଏ ଶତାବ୍ଦୀର ମଣିଷ ବିଳାସ ପାଇଁ ଋଣ କରୁଛି। ପୂର୍ବରୁ ପ୍ରେମ ଓ ଯୁଦ୍ଧରେ ସବୁ କିଛି ବୈଧ ବୋଲି କୁହା ଯାଉଥିଲା। ଏବେ ଏ ଉପଭୋକ୍ତା ଯୁଗରେ ଉପଭୋଗ ପାଇଁ ସବୁ ପ୍ରକାର କୌଶଳ

ଓ ଅବଲମ୍ବନକୁ ବୈଧ ବୋଲି କୁହା ଗଲାଣି। ଭୋଗସର୍ବସ୍ୱ ହୋଇ ବଞ୍ଚିବା ପାଇଁ ସ୍ୱଅର୍ଜିତ ଧନ ଯଥେଷ୍ଟ ନହେଲେ ନିର୍ବିକାର ଭାବରେ ମଣିଷ ଋଣ କରୁଛି। ଏବେ ଋଣ ପାଇଁ ଆଉ କାହା ପାଖରେ ମୁଣ୍ଡ ନୁଆଁଇବାକୁ ପଡୁନାହିଁ। ଋଣଦାତାମାନେ ମୁଣ୍ଡ ନୁଆଁଇ ଆମ ଏରୁଣ୍ଡି ପାଖରେ ଭିଡ଼ ଜମାଉଛନ୍ତି। ଯୁବକଟିଏ ଚାକିରିରେ ଯୋଗ ଦେଉ ନ ଦେଉଣୁ ବିଭିନ୍ନ ଋଣଦାତା ସଂସ୍ଥା ସେମାନଙ୍କୁ ଗାଡ଼ି ଘୋଡ଼ା ଓ ଘରଦ୍ୱାର ଆସବାବପତ୍ର ଯୋଗାଇ ଦେବା ପାଇଁ ଆରମ୍ଭ କରି ଦିଅନ୍ତି ପ୍ରତିଯୋଗିତା। ରାଧା ନାଚିବା ପାଇଁ ଆଉ ଷାଠିଏ ମହଣ ଘିଅ ନିମନ୍ତେ ବ୍ୟସ୍ତ ହେବା ପାଇଁ ପଡ଼େନାହିଁ। ଘିଅ ଯୋଗାଣକାରୀ ସଂସ୍ଥା ବିଭିନ୍ନ ପ୍ରଲୋଭନ ସହ ଆମ ମଞ୍ଚ ପାଖରେ ହାଜର ହୋଇ ଯାଆନ୍ତି। ପରିଣତି ସମ୍ପର୍କରେ ଶୋଚନା ନ କରି ରାଧାମାନେ ଉଦଣ୍ଡ ନାଚୁଛନ୍ତି। ଆମ ଦେଶର ଶିଶୁଟିଏ ଜନ୍ମ ହେଲା ବେଳକୁ ବିଶ୍ୱ ବ୍ୟାଙ୍କ୍‌ର ଋଣ ମୁଣ୍ଡେଇ ଜନ୍ମ ହେଉ ପଛେ ଆମେ ସମସ୍ତେ ଋଣ କରି ଘୃତ ପିଇବାରେ ବ୍ୟସ୍ତ। ଋଣ କରିବା ଆମ ପାଇଁ ଆଉ ଲଜ୍ଜା କିମ୍ବା ଚିନ୍ତାଜନକ ନୁହେଁ। ଆମ ଦେଶରେ ଯିଏ ଯେତେ ପ୍ରଭାବଶାଳୀ, ସିଏ ସେତେ ଋଣଗ୍ରସ୍ତ। ବ୍ୟାଙ୍କ୍‌ର ଟ୍ରେଜେରୀ ସେମାନଙ୍କ ପାଇଁ ଉନ୍ମୁକ୍ତ ହୋଇଯାଏ। ଯେଉଁ ଉଦ୍ଦେଶ୍ୟ ଚରିତାର୍ଥ କରିବା ପାଇଁ ସେମାନେ ଋଣ କରିଥାନ୍ତି, ତାହା ନକରି ବେଶ୍ ବିଳାସ ବ୍ୟସନରେ ସେ ଅର୍ଥ ଉଡ଼େଇ ଥାନ୍ତି। ଲାଞ୍ଚମିଛ ଓ ଉପଯୁକ୍ତ ତଥ୍ୟ ନଦେଇ ସୁଦ୍ଧା ଏମାନେ କୋଟି କୋଟି ଟଙ୍କା ହଡ଼ପ କରିଥାନ୍ତି। ସବୁଠାରୁ ବଡ଼କଥା ହେଲା, ଏମାନେ ଯେତେବେଳେ ଧରା ପଡ଼ନ୍ତି, ସେତେ ବେଳକୁ ନେଡ଼ିଗୁଡ଼ କହୁଣୀକୁ ବୋହି ସାରିଥାଏ। କୋଟି କୋଟି ଟଙ୍କା ଠକେଇରେ ବ୍ୟାଙ୍କ୍ ଦେବାଳିଆ ହୋଇ ସାରିଥାଏ। କେତେକ ଦେଶ ଛାଡ଼ି ପଳାୟନ କରନ୍ତି ତ ଆଉ କାହାକୁ ଜେଲ୍ ଜୋରିମାନା କଲେ ସୁଦ୍ଧା ପଇସା ଆଉ ଫେରି ଆସି ପାରେନାହିଁ।

ଅଥଚ ନିମ୍ନ ମଧ୍ୟବିତ୍ତମାନଙ୍କ ପାଇଁ ଋଣ ଏତେ ସହଜଲଭ୍ୟ ନୁହେଁ। ବ୍ୟାଙ୍କ୍‌ରେ ଆବଶ୍ୟକୀୟ କାଗଜପତ୍ର ଓ ପ୍ରତିଭୂତି ଦେଖାଇ ପାରନ୍ତି ନାହିଁ ବୋଲି ଚଢ଼ା ସୁଧରେ ସାହୁ ମହାଜନ ଆଦି ଘରୋଇ ସଂସ୍ଥାମାନଙ୍କରୁ ଋଣ ଆଣି ଶୁଝି ନପାରି ସେମାନେ ତଳିତଳାନ୍ତ ହୋଇ ଯାଆନ୍ତି। ଏବେ ଆମ ଦେଶରେ କ୍ରମବର୍ଦ୍ଧିଷ୍ଣୁ ଚାଷୀ ଆତ୍ମହତ୍ୟା ତା'ର ଏକ ନଗ୍ନ ନମୁନା।

୧୯୬୯ରେ ଇନ୍ଦିରା ଗାନ୍ଧିଙ୍କର ବ୍ୟାଙ୍କ୍‌ଗୁଡ଼ିକୁ ଜାତୀୟକରଣ କରିଥିଲେ। ଉଦ୍ଦେଶ୍ୟ ଥିଲା ସାଧାରଣ ଜନତାଙ୍କ ପାଖରେ ବ୍ୟାଙ୍କ୍ ସେବା ସହଜରେ ଉପଲବ୍ଧ କରାଇବା। ବ୍ୟାଙ୍କ୍ ଲୋନ୍ ସହାୟତାରେ ଲଘୁ ଉଦ୍ୟୋଗ କରି ଦାରିଦ୍ର୍ୟ ସହ ଲଢ଼ିବା

ପାଇଁ ସେମାନେ ସମର୍ଥ ହେବେ। କିନ୍ତୁ କେତେକ ତ୍ରୁଟିପୂର୍ଣ୍ଣ ନୀତି ହେତୁ ସାଧାରଣ ଜନତାଙ୍କ ପାଇଁ ବ୍ୟାଙ୍କ୍‌ରୁ ଋଣ ଉଠାଇବା ସେତିକି ସହଜ ହୁଏନାହିଁ, ଯେତିକି ହୁଏ ବିତ୍ତଶାଳୀ ବା ପ୍ରଭାବଶାଳୀମାନଙ୍କ ପାଇଁ। ଶୁଝିବାର ସାମର୍ଥ୍ୟ ଦେଖି ବ୍ୟାଙ୍କ୍ ଋଣ ଦିଏ। ଅଥଚ ସେମାନଙ୍କ ପାଖରୁ କ୍ୱଚିତ୍ ଆଦାୟ ହୁଏ। ହର୍ଷଦ୍ ମେହେଟ୍ଟାଙ୍କ ପାଖରୁ ଏ ଜାଲିଆତି କମ୍ପ୍ୟୁଟର ବ୍ୟବସାୟୀ ରାମଲିଙ୍ଗା ରାଜୁ, ମଦ ଓ ଉଡ଼ାଜାହାଜ ବ୍ୟବସାୟୀ ବିଜୟ ମାଲ୍ୟା, ହୀରା ବ୍ୟବସାୟୀ ନିରବ୍ ମୋଦିଙ୍କ ପରେ ଏବେ ପହଞ୍ଚିଛି ରୋଟୋମ୍ୟାକ୍ ଗ୍ଲୋବାଲ୍ ପ୍ରାଇଭେଟ୍ ଲିମିଟେଡ୍‌ର ନିର୍ଦ୍ଦେଶକ ବିକ୍ରମ କୋଠାରୀଙ୍କ ପାଖରେ। ଜନସାଧାରଣଙ୍କ ଝାଳ, ରକ୍ତଭିଜା ଅର୍ଥରେ ଏହି ପ୍ରତାରକମାନେ ମହୋତ୍ସବ ପାଳନ କରୁଛନ୍ତି।

ଭାରତର ନଦୀମାନଙ୍କରେ କ୍ଷୀର ପ୍ରବାହିତ ହୁଏ ଓ ବୃକ୍ଷଲତାଗୁଡ଼ିକରେ ସୁନା ଫଳେ ବୋଲି ପ୍ରଲୋଭିତ ହୋଇ ବିଦେଶୀମାନେ ମାଡ଼ି ଆସିଥିଲେ ଆମ ଦେଶକୁ। ଭାରତୀୟମାନଙ୍କର ସକଳ ସଞ୍ଚିତ ଅର୍ଥ ଲୁଣ୍ଠିନେଲେ। ଆରବୀ, ମୁସଲିମ୍‌ଙ୍କଠାରୁ ପାର୍ଶୀ, ପର୍ତ୍ତୁଗୀଜ୍, ମୋଗଲ, ଇଂରେଜଙ୍କ ପର୍ଯ୍ୟନ୍ତ ସମସ୍ତେ ଏହି ଲୀଳା କଲେ। ଭାରତର ସକଳ ସଞ୍ଚୟ ଗଲା ବୈଦେଶିକ ରାଜକୋଷକୁ। ଫଳରେ ନିରୁପାୟ ଭାରତୀୟ ସ୍ୱେଚ୍ଛାକୃତ ଦାରିଦ୍ର୍ୟ ବରଣ କଲେ। ପରିଶ୍ରମ କଲେନାହିଁ। ଆଳସ୍ୟରେ ନିଷ୍କର୍ମା ହୋଇ ଦିନ କାଟିଲେ। ଏକଦା ପ୍ରାଚୁର୍ଯ୍ୟମୟ ରାଷ୍ଟ୍ର ଦରିଦ୍ର ହୋଇଗଲା। ସ୍ୱାଧୀନତା ପରେ ଦେଶବାସୀଙ୍କର ଆତ୍ମବିଶ୍ୱାସ ଫେରି ଆସୁଥିଲା। ସେମାନଙ୍କ ସଞ୍ଚିତ ଅର୍ଥ ପାଇଁ ବ୍ୟାଙ୍କ୍‌କୁ ସୁରକ୍ଷିତ ମଣୁଥିଲେ। ଏବେ ବାରମ୍ବାର ଏହି ବ୍ୟାଙ୍କ୍ ଜାଲିଆତିରେ ଜନସାଧାରଣଙ୍କର ବ୍ୟାଙ୍କ୍ ଉପରୁ ଆସ୍ଥା ତୁଟି ଗଲାଣି। ସେମାନଙ୍କ କଷ୍ଟାର୍ଜିତ ଧନର ଏମିତି ଉପଯୋଗ ହେବା ପୂର୍ବରୁ, ସେମାନେ ପୁଣି ସଞ୍ଚୟ ବିମୁଖ ହେବା ଆଗରୁ ଆମେ ଆଶା କରିବୁ ଏହାର ଅନ୍ତ ହେଉ। ଜନସାଧାରଣଙ୍କ ଅର୍ଥର ଉପଯୁକ୍ତ ରକ୍ଷଣାବେକ୍ଷଣ ହେଉ। ବ୍ୟାଙ୍କ୍‌ଗୁଡ଼ିକ ସୁରକ୍ଷିତ ହୁଅନ୍ତୁ।



# ମୃତ୍ୟୁର ମୋହ

ଅହିଂସାର ପୂଜାରୀ ମହାତ୍ମା ଗାନ୍ଧି ଆଶ୍ରମ ପାଳିତ ଏକ ବ୍ୟାଧିଗ୍ରସ୍ତ ବାଛୁରିର ଯନ୍ତ୍ରଣା ଦେଖି ବିଚଳିତ ହୋଇ ପଡ଼ିଥିଲେ। ଅକ୍ଲାନ୍ତ ସେବାଯତ୍ନ ସତ୍ତ୍ୱେ ସୁସ୍ଥ ହେବାର କୌଣସି ସମ୍ଭାବନା ପରିଲକ୍ଷିତ ନ ହେବାରୁ ତାକୁ ମାରି ଦେବାର ନିଷ୍ପତ୍ତି ନେଇଥିଲେ। ଯେମିତି ଯୁଦ୍ଧଭୂମିରେ ପରାଜିତ ଯୋଦ୍ଧାମାନେ ନିଜର ଅତି ପ୍ରିୟ ଆହତ ଅଶ୍ୱମାନଙ୍କୁ ଗୁଳି କରି ଦେଇଥାନ୍ତି। ମେବାରର ରାଜା ରାଣା ପ୍ରତାପ ତାଙ୍କର ଅତି ପ୍ରିୟ ଅଶ୍ୱ ଆହତ ଚେତକ୍‌କୁ ଗୁଳି କରି ସମାଧି ଦେଇଥିଲେ ବୋଲି ଇତିହାସ କହେ। କିନ୍ତୁ ମହାତ୍ମା ଗାନ୍ଧିଙ୍କର ଏ ନିଷ୍ପତ୍ତିକୁ ବିରୋଧ କରିଥିଲେ ତାଙ୍କ ଅନୁଗାମୀ ବିନୋବା ଭାବେ। ଈଶ୍ୱର ପ୍ରଦତ୍ତ ଜୀବନକୁ ଶେଷ କରିଦେବା ନିଷ୍ପତ୍ତି ମଣିଷର ନାହିଁ। ଏହା କେବଳ ଈଶ୍ୱରଙ୍କର ନିଷ୍ପତ୍ତି। ଅଥଚ ବିଡ଼ମ୍ବନାର କଥା, ବିନୋବାଜୀ ନିଜେ ଇଚ୍ଛାମୃତ୍ୟୁ ବରଣ କରିଥିଲେ। ଭାରତରେ ଅନୁଷ୍ଠିତ ଏସିଆନ୍ ଗେମ୍‌ର କ୍ରୀଡ଼ାବିତ୍‌ମାନଙ୍କ ଖାଦ୍ୟ ପାଇଁ ଅଗଣିତ ଗୋ- ସଂହାରରେ ସେ ଗଭୀର ଯନ୍ତ୍ରଣା ପାଇଥିଲେ। ଏହାପରେ ତାଙ୍କ ଆତ୍ମା ସହ ଶରୀର ସହଯୋଗ କରୁନାହିଁ ବୋଲି କହି ଅନଶନ ଦ୍ୱାରା ମୃତ୍ୟୁବରଣ କରିଥିଲେ।

ଜୈନ ଓ ବୌଦ୍ଧମାନେ ସ୍ୱଇଚ୍ଛାରେ ମୃତ୍ୟୁବରଣ କଲେ ନିର୍ବାଣ ପ୍ରାପ୍ତି ହୁଏ ବୋଲି ବିଶ୍ୱାସ କରନ୍ତି। ସେମାନେ ପ୍ରାୟତଃ ଅନାହାର ରହି ଶରୀରକୁ କ୍ଷୀଣ କରି ମୃତ୍ୟୁବରଣ କରନ୍ତି, ଯାହାକୁ କୁହାଯାଏ ସନ୍ଥାବ୍ରତ। ଜନ୍ମ ଓ ମୃତ୍ୟୁ- ଉଭୟ ପାଇଁ ମଣିଷ ଚାହେଁ ଶୁଭ ମୁହୂର୍ତ୍ତ। ପିତାଙ୍କଠାରୁ ଇଚ୍ଛାମୃତ୍ୟୁ ବରପ୍ରାପ୍ତ ପିତାମହ ଭୀଷ୍ମ ଶରଶଯ୍ୟାରେ ଥାଇ ଶୁଭ ମୁହୂର୍ତ୍ତରେ ମୃତ୍ୟୁବରଣ କରିବା ପାଇଁ ସୂର୍ଯ୍ୟଙ୍କ ଉତ୍ତରାୟଣ ଗତିର ପ୍ରତୀକ୍ଷାରେ ଥିଲେ। ମହାପ୍ରସ୍ଥାନ ଶବ୍ଦଟି ଆମ ହିନ୍ଦୁ ଧର୍ମରେ ରହିଛି ଯାହାକୁ ପ୍ରକାରାନ୍ତରେ ଇଚ୍ଛାମୃତ୍ୟୁ ହିଁ କୁହାଯିବ। ପରୀକ୍ଷିତଙ୍କ ହସ୍ତରେ ରାଜ୍ୟଭାର ସମର୍ପି ଦେଇ ଦ୍ରୌପଦୀଙ୍କ ସମେତ ପାଣ୍ଡବ ପାଞ୍ଚଭାଇ ମହାପ୍ରସ୍ଥାନରେ ଜଣକ ପରେ ଜଣେ ମୃତ୍ୟବରଣ କରିଥିବାର ଦୃଷ୍ଟାନ୍ତ ଆମେ ମହାଭାରତରେ ପାଉ। ଏସବୁ ଇଚ୍ଛାମୃତ୍ୟୁ ଆତ୍ମାର ମଙ୍ଗଳ ଉଦ୍ଦେଶ୍ୟରେ ଥିଲା। ଶରୀର ଏମାନଙ୍କ ପାଇଁ ଦୁର୍ବିସହ ନଥିଲା। ବରଂ ସ୍ୱଇଚ୍ଛାରେ ଏମାନେ ତିଳତିଳ କରି ଶରୀରକୁ କ୍ଷୟ କରୁଥିଲେ।

ସାମ୍ପ୍ରତିକ ପରିପ୍ରେକ୍ଷୀରେ ଯାହାକୁ ଇଚ୍ଛାମୃତ୍ୟୁ, ୟୁଥାନାସିଆ ଅଥବା ମର୍ସିକିଲିଂ କୁହାଯାଉଛି, ତାହା ସମ୍ପୂର୍ଣ୍ଣ ଶରୀରର ଅସାମର୍ଥ୍ୟ ପଣ ହେତୁ। ଦୁରାରୋଗ୍ୟ ବ୍ୟାଧିଗ୍ରସ୍ତ ଅଥବା ଦୁର୍ଘଟଣାଜନିତ କ୍ଷୟକ୍ଷତି ହେତୁ ଆତ୍ମାକୁ ଧାରଣ କରିବା ପାଇଁ ଶରୀର ଅକ୍ଷମ ଥିବାରୁ ଜୀବନୀ ଶକ୍ତି କ୍ଷୀଣ ହୋଇଯାଏ। କୃତ୍ରିମ ଜୀବନ ରକ୍ଷାକାରୀ ଯନ୍ତ୍ର ମାଧ୍ୟମରେ କିଛି କାଳ ପାଇଁ ବ୍ୟକ୍ତିକୁ ଜୀବିତ ରଖା ଯାଇଥାଏ। ଆତ୍ମା ଓ ଶରୀର ଉଭୟେ ଭୋଗନ୍ତି ଯନ୍ତ୍ରଣା; ମୃତ୍ୟୁ ହୁଏନାହିଁ। ମୃତ୍ୟୁଠାରୁ ବଳି ଯନ୍ତ୍ରଣାଦାୟକ ସ୍ଥିତିରେ ଥାଏ ରୋଗୀ। ଅସହାୟ, ଦୟନୀୟ, ଅନ୍ୟର ଦୟା ଦାକ୍ଷିଣ୍ୟ ବିନା ସେ କଡ଼ ବି ଲେଉଟାଇ ପାରେନାହିଁ। ଆତ୍ମୀୟସ୍ୱଜନ ବି ଦୀର୍ଘକାଳ ସେବାଯତ୍ନ କରି କ୍ଲାନ୍ତ ହୋଇ ପଡ଼ନ୍ତି। କେଉଁଠି ରୋଗୀର ଆଦୌ ଆତ୍ମୀୟସ୍ୱଜନ ନଥାନ୍ତି ଅଥବା ସେମାନଙ୍କ ପାଖରେ ସମୟ ନଥାଏ। ଅରକ୍ଷଣୀୟ ହୋଇ ପଡ଼ି ରହିଥାଏ ରୋଗୀ। ନିତି ମଲୁକୁ ଦୟା ନାହିଁ। ରୋଗୀଟି ଅବହେଳିତ ଅଲୋଡ଼ା ହୋଇ ପଡ଼ିଥାଏ ମୃତ୍ୟୁ ଅପେକ୍ଷାରେ। ଘୃଣା, ବ୍ୟଞ୍ଜନା ଅନାଦର ବ୍ୟତୀତ ଆଉ କିଛି ପାଇବାର ନଥାଏ। ବଞ୍ଚିବାର ମୋହ ତୁଟି ଯାଇଥାଏ। ଦୁର୍ବିସହ ମନେ କରୁଥିବା ଜୀବନକୁ ହରାଇ ଦେବା ପାଇଁ ଏମାନଙ୍କର ପ୍ରବଳ ମୃତ୍ୟୁ ମୋହ ଥାଏ।

ଆମ ସମ୍ବିଧାନର ଯେଉଁ ୨୧ତମ ଧାରା ଆମକୁ ସମ୍ମାନର ସହ ବଞ୍ଚିବାକୁ ଦେଇଛି, ସେଇ ଧାରା ହିଁ ଆମକୁ ମର୍ଯ୍ୟାଦାର ସହ ମରିବାର କଥା କହେ। ଏଥିପାଇଁ ପୂର୍ବରୁ ଅନେକ ତର୍କବିତର୍କ ହୋଇ ସାରିଛି। ଜୀବନକୁ ଭଲ ପାଉଥିବା, ଜୀବନର ଜୟଗାନ କରୁଥିବା ମଣିଷ ତଥାପି ଶେଷତମ ବିନ୍ଦୁରେ ପହଞ୍ଚି ପାରିନାହିଁ। ଜୀବନ ପରି ଅସମାପ୍ତ ହୋଇ ରହିଛି ମୃତ୍ୟୁ ସମ୍ପର୍କିତ ନିଷ୍ପତ୍ତି। ଯୌନ ନିର୍ଯାତନାର ଶିକାର ହୋଇ ୩୫ ବର୍ଷ କାଳ କୋମାରେ ଥିବା ଅରୁଣା ଶାନ୍‌ବାଗ୍‌କୁ ପ୍ରତ୍ୟକ୍ଷ ଇଚ୍ଛାମୃତ୍ୟୁ (ଆକ୍ଟିଭ୍ ୟୁଥାନାସିଆ) ପାଇଁ ସୁଯୋଗ ଦିଆଯାଇ ନଥିଲା। ୨୦୧୧ରୁ ଅରୁଣାଙ୍କ ପାଇଁ କରା ଯାଇଥିବା ଅପିଲ୍ ବିତର୍କିତ ହୋଇ ଶେଷରେ ୨୦୧୮ରେ ପରୋକ୍ଷ ଇଚ୍ଛାମୃତ୍ୟୁ ପାଇଁ ସୁପ୍ରିମକୋର୍ଟ ସ୍ୱୀକୃତି ଦେଇଥିଲେ। ତାଙ୍କ ଦେହରୁ ଜୀବନ ରକ୍ଷାକାରୀ ଯନ୍ତ୍ର ବାହାର କରି ନିଆ ଯାଇଥିଲା। ତା' ପରଠାରୁ ଇଚ୍ଛାମୃତ୍ୟୁ ପାଇଁ ବିତର୍କ ଲାଗି ରହିଥିଲା। ୨୦୧୭, ଅକ୍ଟୋବର ୧୧ରେ ବିଚାରପତି ଜଷ୍ଟିସ୍ ଦୀପକ ମିଶ୍ରଙ୍କ ଅଧ୍ୟକ୍ଷତାରେ ପାଞ୍ଚଜଣିଆ ଖଣ୍ଡପୀଠ ଶୁଣାଣି କରି ରାୟ ସଂରକ୍ଷିତ ରଖିଥିଲେ। ଏବେ ମାର୍ଚ୍ଚ ୯ ତାରିଖ ଦିନ ୫୩୮ପୃଷ୍ଠାବିଶିଷ୍ଟ ପ୍ରକାଶିତ ଏହି ରାୟରେ ଇଚ୍ଛାମୃତ୍ୟୁକୁ ସର୍ତ୍ତମୂଳକ ସ୍ୱୀକୃତି ଦେଇଛନ୍ତି। ପାର୍ଲାମେଣ୍ଟରେ ଏ ସମ୍ପର୍କୀୟ ବିଲ୍ ପାସ୍ ହେବା ପର୍ଯ୍ୟନ୍ତ ଏହି ରାୟ ବଳବତ୍ତର ରହିବ।

ଦୁରାରୋଗ୍ୟ ବ୍ୟାଧି ଭୋଗୁଥିବା, ଅତ୍ୟନ୍ତ ଦୟନୀୟ, ନିଶ୍ଚେତ ଜୀବନ ବଞ୍ଚୁଥିବା, ଆଗକୁ କୌଣସି ପ୍ରକାର ଉନ୍ନତି ହେବାର ଆଶା ନଥିବା ରୋଗୀକୁ ବିଷାକ୍ତ

ଇଞ୍ଜେକସନ୍ ଅଥବା ସିଧାସଳଖ ଉପାୟରେ ମରିବାକୁ ଦେବା ଆକ୍ଟିଭ୍ ୟୁଥାନାସିଆ, ପ୍ରତ୍ୟକ୍ଷ ଇଚ୍ଛାମୃତ୍ୟୁ ଅଥବା ମର୍ସିକିଲିଂର ଅନ୍ତର୍ଭୁକ୍ତ। ଅଥଚ ଜୀବନ ରକ୍ଷାକାରୀ ଯନ୍ତ୍ରଦ୍ୱାରା ବଞ୍ଚିଥିବା ରୋଗୀଟି ଦେହରୁ ସକଳ ଜୀବନ ରକ୍ଷାକାରୀ ଯନ୍ତ୍ର ବାହାର କରି ତାକୁ ସଅଳ ମୃତ୍ୟୁର ସୁଯୋଗ ଦେବାକୁ ପାସିଭ୍ ୟୁଥାନାସିଆ ବା ପରୋକ୍ଷ ଇଚ୍ଛାମୃତ୍ୟୁ ବୋଲି କୁହାଯାଏ। ଉଭୟ ପଦ୍ଧତିକୁ କୁହାଯାଏ ଆସିଷ୍ଟେଡ୍ ସୁଇସାଇଡ୍ ବା ଆତ୍ମହତ୍ୟାରେ ସହଯୋଗ।

ଏବେ ସୁପ୍ରିମକୋର୍ଟ ଯେଉଁ ଅନୁମତି ଦେଇଛନ୍ତି, ତାହା କେବଳ ପରୋକ୍ଷ ଇଚ୍ଛାମୃତ୍ୟୁ ପାଇଁ। ତାହା ପୁଣି ସର୍ତ୍ତମୂଳକ। ଏନ୍‌ଜିଓ ସଂସ୍ଥା କମନ୍ କଜ୍ ପକ୍ଷରୁ ଦାଏର ଏକ ଆବେଦନର ଶୁଣାଣି ପାଇଁ ମୁଖ୍ୟ ବିଚାରପତିଙ୍କ ଅଧ୍ୟକ୍ଷତାରେ ଜଷ୍ଟିସ୍ ଏକେ ସିକ୍ରି, ଏଏମ୍ ଖାନ୍‌ୱିଲ୍‌କର୍, ଡିୱାଇ ଚନ୍ଦ୍ରଚୂଡ଼ ଏବଂ ଅଶୋକ ଭୂଷଣଙ୍କୁ ନେଇ ଗଠିତ ହୋଇଥିଲା ଏହି ଖଣ୍ଡପୀଠ। ମାନ୍ୟବର ବିଚାରପତିମାନଙ୍କର ମତ ପାର୍ଥକ୍ୟ ସତ୍ତ୍ୱେ ସମସ୍ତେ ଗୋଟିଏ ବିନ୍ଦୁରେ ମିଳିତ ହେଲେ ଯେ ସମ୍ମାନର ସହ ବଞ୍ଚିବା ଅଧିକାର ସହିତ ମର୍ଯ୍ୟାଦାର ସହ ମୃତ୍ୟୁବରଣ ଜଡ଼ିତ। ତେଣୁ ବାଞ୍ଛିତ ମୃତ୍ୟୁ ପାଇଁ ମଣିଷକୁ ଅଧିକାର ଦିଆଯାଉ। ଏହି ରାୟ ପ୍ରକାଶ ଦ୍ୱାରା ପରୋକ୍ଷ ଇଚ୍ଛାମୃତ୍ୟୁକୁ ସ୍ୱୀକୃତି ଦେଇଥିବା ଜର୍ମାନୀ, କାନାଡ଼ା ଓ ଦକ୍ଷିଣ ଆଫ୍ରିକା ଆଦି ୯ଟି ରାଷ୍ଟ୍ରଙ୍କ ସହ ଭାରତ ସାମିଲ୍ ହୋଇଗଲା। ଏଥି ପୂର୍ବରୁ ବିଶ୍ୱର ଅନ୍ୟ ୮ଟି ରାଷ୍ଟ୍ର ଯଥା ଲକ୍ସମ୍‌ବର୍ଗ, ବେଲ୍‌ଜିୟମ୍, ନେଦର୍‌ଲ୍ୟାଣ୍ଡ୍ ଓ ଯୁକ୍ତରାଷ୍ଟ୍ରର ୱାଶିଂଟନ୍ ଓ ରେଗନ୍ ଆଦି ପ୍ରତ୍ୟକ୍ଷ ଇଚ୍ଛାମୃତ୍ୟୁକୁ ସ୍ୱୀକୃତି ଦେଇଛନ୍ତି।

ସୁପ୍ରିମକୋର୍ଟଙ୍କର ଏହି ଐତିହାସିକ ରାୟକୁ ବିଭିନ୍ନ ସଂଗଠନ ସହ ଇଣ୍ଡିଆନ୍ ମେଡିକାଲ୍ ଆସୋସିଏସନ୍ ସ୍ୱାଗତ କରିଛି। ଏହି ରାୟରେ ଯେଉଁ ସର୍ତ୍ତ ରହିଛି, ସେଥିରେ ମେଡିକାଲ ବୋର୍ଡର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି। ରୋଗୀର ଇଚ୍ଛାପତ୍ର ହେଉ ଅଥବା ଆତ୍ମୀୟସ୍ୱଜନଙ୍କ ଆବେଦନ, ରୋଗୀର ଅବସ୍ଥା ତର୍ଜମା କରି ମେଡିକାଲ ବୋର୍ଡ ସବିଶେଷ ରିପୋର୍ଟ ନ ଦେବା ପର୍ଯ୍ୟନ୍ତ ଏହି ନିଷ୍ପତ୍ତି କାର୍ଯ୍ୟକାରୀ ହୋଇ ପାରିବ ନାହିଁ। ଇଚ୍ଛାପତ୍ରରେ ରୋଗୀ ସାବାଳକ ଓ ଆଗକୁ ଚିକିତ୍ସା ପାଇଁ ସାହାଯ୍ୟ ଚାହୁଁ ନଥିବା ଓ ତାଙ୍କ ମୃତ୍ୟୁ ପାଇଁ କେହି ଦାୟୀ ନୁହନ୍ତି ବୋଲି ଉଲ୍ଲେଖ ରହିବା ନିହାତି ଆବଶ୍ୟକ। ଏପରି କ୍ଷେତ୍ରରେ ବର୍ଷବର୍ଷ ଧରି ମେଡିକାଲରେ ପଡ଼ି ରହିଥିବା ରୋଗୀଙ୍କ ଜାଗାରେ ଅନ୍ୟ ରୋଗୀ ସେବା ପାଇଁ ସୁଯୋଗ ପାଇବେ ବୋଲି ମେଡିକାଲ ଆସୋସିଏସନ୍ କହିଛି।

ଅପର ପକ୍ଷେ କେରଳର କ୍ୟାଥୋଲିକ୍ ବିଶପ୍ କନ୍‌ଫରେନ୍ସ ସଭାପତି ସୋସାପାଇକାର ସର୍ବୋଚ୍ଚ ଅଦାଲତଙ୍କ ଏଇ ରାୟ ଭାରତରେ ଅନେକ ବୃଦ୍ଧବୃଦ୍ଧାଙ୍କ ନିରବ ହତ୍ୟାର କାରଣ ହେବ ବୋଲି ଆଶଙ୍କା ପ୍ରକାଶ କରିଛନ୍ତି। ଅବଶ୍ୟ ଏ ଆଶଙ୍କା

ଅମୂଳକ ନୁହେଁ। ଚଳନ୍ତି ପିଢ଼ି ଅର୍ଥ ଉପାର୍ଜନ ଓ ସୁଖ ସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ ଜୀବନଯାପନ ପାଇଁ ଏତେ ତୀବ୍ର ବେଗରେ ଧାଉଁଛି ଯେ ପାଦ ତଳର ମାଟିକୁ ଭୁଲିବାକୁ ବସିଲାଣି। ବୃଦ୍ଧ ପିତାମାତା ସେମାନଙ୍କୁ ବୋଝ ବୋଲି ଲାଗିଲେଣି। ଏ ବୋଝକୁ ସେମାନେ ଆବଶ୍ୟକ ପଡ଼ିଲେ ଅଧା ରାସ୍ତାରେ ଛାଡ଼ି ଆଗକୁ ଧାଇଁ ଚାଲିବାରେ କୁଣ୍ଠବୋଧ କରୁ ନାହାନ୍ତି। କ୍ରମବର୍ଦ୍ଧିଷ୍ଣୁ ଜରାଶ୍ରମ ଆମ ଦେଶରେ ଏବେ ଯଥେଷ୍ଟ ଉଦ୍‌ବେଗର କାରଣ ହୋଇଛି। ଏହାଛଡ଼ା ନିଃସନ୍ତାନ ବିତ୍ତବାନମାନଙ୍କର ଆତ୍ମୀୟସ୍ୱଜନମାନେ ସେମାନଙ୍କ ବାର୍ଦ୍ଧକ୍ୟ ଅବସ୍ଥାର ସୁଯୋଗ ନେଇ ସମ୍ପତ୍ତି ଲୋଭରେ ନାନା ଚାପ ପ୍ରୟୋଗ କରି ଇଚ୍ଛାପତ୍ର ଲେଖାଇ ନେବାର ଆଶଙ୍କାକୁ ଏଡ଼ାଇ ଦିଆଯାଇ ନପାରେ। ରୋଗୀଟି ସ୍ୱଇଚ୍ଛାରେ ଇଚ୍ଛାପତ୍ର ଦେଲେ ବି ଆତ୍ମୀୟସ୍ୱଜନମାନଙ୍କ ମଧ୍ୟରେ ସନ୍ଦେହ, ଅବିଶ୍ୱାସ, କଳହର ସମ୍ଭାବନା ରହିଛି।

ଜନ୍ମ- ମୃତ୍ୟୁ ଦୈବାଧୀନ। ଏଥିରେ ମଣିଷର ହସ୍ତକ୍ଷେପ ଅର୍ଥ ଈଶ୍ୱରଙ୍କ କାର୍ଯ୍ୟରେ ହସ୍ତକ୍ଷେପ। ଏହା ଧର୍ମ ଓ ନୀତିବିରୋଧୀ କାର୍ଯ୍ୟକ୍ରମ। ପାପ- ପୁଣ୍ୟର ବିଚାରବୋଧ ହେତୁ ଅନେକ ରକ୍ଷଣଶୀଳ ବ୍ୟକ୍ତି ଏହାକୁ ସହଜରେ ଗ୍ରହଣ କରିପାରୁ ନାହାନ୍ତି। ତେବେ ଆଜିର ମଣିଷର ଚିନ୍ତନ ଐଶ୍ୱରୀୟ ଚେତନା ଅପେକ୍ଷା ମାନବୀୟ ଚେତନାର ଅଧିକ ନିକଟବର୍ତ୍ତୀ। ପୂର୍ବ ଜନ୍ମର ସୁକୃତ ଓ ଦୁଷ୍କୃତ ଆଧାରରେ ଏ ଜନ୍ମର ଭୋଗ ଅନୁଭୋଗ ଜଡ଼ିତ ବୋଲି ସେ ଆଉ ବିଶ୍ୱାସ କରୁନାହିଁ। ଈଶ୍ୱର ପ୍ରାପ୍ତି ନୁହେଁ, ବରଂ ମଣିଷର ଯନ୍ତ୍ରଣା ଦୂର କରିବା ଦିଗରେ ସେ ତା'ର ସକଳ ସାମର୍ଥ୍ୟକୁ ବାଜି ଲଗାଇ ଦେଉଛି। ଆମ ଚିକିତ୍ସା ବିଜ୍ଞାନ ଏତେ ଉତ୍କର୍ଷ ସାଧନ କଲାଣି ଯେ ଯେଉଁ ଜନ୍ମ- ମୃତ୍ୟୁ କେବଳ ଈଶ୍ୱରଙ୍କ ଅଧୀନ ବୋଲି କୁହା ଯାଉଥିଲା, ତାହା ସମ୍ପୂର୍ଣ୍ଣ ମାନବାଧିକୃତ ହେବାକୁ ବସିଲାଣି। ପାପ- ପୁଣ୍ୟ ଓ ଧର୍ମ- ଅଧର୍ମ, ନୀତି- ଅନୀତିର ସଂଜ୍ଞା ସ୍ୱରୂପ ବଦଳି ଗଲାଣି। କୌଣସି ପରିସ୍ଥିତିରେ ମଣିଷକୁ ଆଉ ବେଶୀ ଯନ୍ତ୍ରଣା ଭୋଗ କରିବାକୁ ଦିଆ ଯାଉନାହିଁ। 'ସବୁର୍ ଉପରେ ମାନୁଷ୍ ସତ୍ୟ ତା'ର ଉପରେ କେ ନୟ'- ବିଶ୍ୱକବି ରବୀନ୍ଦ୍ର ନାଥ ଠାକୁରଙ୍କର ଏ ଉକ୍ତି ଏବେ ବେଶ୍ ଲୋକପ୍ରିୟତା ହାସଲ କଲାଣି। ଉଚ୍ଚତର ମାନବିକ ମର୍ଯ୍ୟାଦା ଏବେ ହୋଇଛି ଏ ଯୁଗର ମୁଖ୍ୟ ପ୍ରସଙ୍ଗ। ଏକଦା ସମ୍ମାନାସ୍ପଦ ବ୍ୟକ୍ତିଟିଏ ଅସହାୟ, ଅନାଦର, ଅରକ୍ଷ, ଘୃଣା ଓ ଲାଞ୍ଛନା ଭିତରେ ବଞ୍ଚିବା ଅପେକ୍ଷା ମର୍ଯ୍ୟାଦାର ସହ ମରିବା ନିଶ୍ଚୟ ଶ୍ରେୟସ୍କର। ଏ ଦୃଷ୍ଟିରୁ ମାନ୍ୟବର ସୁପ୍ରିମକୋର୍ଟଙ୍କ ଆଦେଶ ନିଶ୍ଚୟ ସ୍ୱାଗତଯୋଗ୍ୟ। ଜୀବନ ପରି ମୃତ୍ୟୁ ମୋହର ମଧ୍ୟ ଯଥାର୍ଥତା ଅଛି। ତେବେ ଏହି ରାୟର ଯେପରି ଦୁରୁପଯୋଗ ନହୁଏ, ସେଥିପ୍ରତି ଆମେ ସମସ୍ତେ ସଚେତନ ରହିବା ନିହାତି ଜରୁରୀ।



# ସ୍ୱର୍ଗ ଓ ନରକର ଅନୁଚିନ୍ତା

ସାଧୁଙ୍କ ପ୍ରବଚନର ଭାବବସ୍ତୁ ଥିଲା ଈଶ୍ୱରଙ୍କୁ ବିଶ୍ୱାସ କରୁଥିବା ଭଲ ଲୋକମାନେ ସ୍ୱର୍ଗକୁ ଯାଆନ୍ତି ଓ ଈଶ୍ୱରଙ୍କୁ ବିଶ୍ୱାସ କରୁ ନଥିବା ଖରାପ ଲୋକମାନେ ନରକକୁ ଯାଆନ୍ତି। ଯୁବକଟିଏ ଉଠି ପ୍ରଶ୍ନ କଲା- ଈଶ୍ୱରଙ୍କୁ ବିଶ୍ୱାସ କରୁ ନଥିବା ଭଲ ଲୋକମାନେ କୁଆଡ଼େ ଯାଆନ୍ତି ? ଯୁବକଟିର ପ୍ରଶ୍ନ ସାଧୁଙ୍କୁ ମୁଗ୍ଧ କରିଥିଲା। ସେ ତା' ଆଡ଼କୁ ସସ୍ନେହ ଦୃଷ୍ଟି ଢାଳି କହିଥିଲେ, ଭଲ ଲୋକମାନେ ଯେଉଁଠିକୁ ଯାଆନ୍ତି, ତାହା ସ୍ୱର୍ଗ ହୋଇଯାଏ ଓ ଖରାପ ଲୋକମାନେ ଯେଉଁଠିକୁ ଯାଆନ୍ତି, ତାହା ନରକ ହୋଇଯାଏ।

ସ୍ୱର୍ଗ- ନରକ, ଧର୍ମ- ଅଧର୍ମ, ପାପ- ପୁଣ୍ୟ- ଏସବୁ ପାରମ୍ପରିକ ପରିକଳ୍ପନା। ପଶୁମାନେ ପାପ କରନ୍ତି ନାହିଁ କି ପୁଣ୍ୟ କରନ୍ତି ନାହିଁ। ସେମାନଙ୍କ ପାଇଁ ପାପ ପୁଣ୍ୟର କିଛି ଅର୍ଥ ହିଁ ନଥାଏ। ବଞ୍ଚିବା ପାଇଁ ସେମାନଙ୍କର କୌଣସି ଅନୁଶାସନ ନଥାଏ। ପ୍ରକୃତିର ସୃଷ୍ଟିଚକ୍ର ମଧ୍ୟ ଏପରି ଏକ ପ୍ରାକୃତିକ ନିୟମରେ ଅନୁବନ୍ଧିତ ଯେ ଶରୀର ରକ୍ଷଣ ପାଇଁ ଆହାର, ନିଦ୍ରା, ଭୟ ମୈଥୁନ ପ୍ରଭାବରୁ କୌଣସି ପ୍ରାଣୀ ମୁକ୍ତ ନୁହେଁ। ଏହାର ଊର୍ଦ୍ଧ୍ୱକୁ ସେମାନେ ଉଠି ପାରନ୍ତି ନାହିଁ। ମଣିଷ ଏକମାତ୍ର ପ୍ରାଣୀ ଯିଏ ଏହି ପ୍ରବୃତ୍ତିମାନଙ୍କୁ ବଶ କରି ପାରିବାର ସାମର୍ଥ୍ୟ ରଖିଥାଏ। ନିଜର ଊର୍ଦ୍ଧ୍ୱତର ଚେତନା ଅଥବା ଚେତନାର ଊର୍ଦ୍ଧ୍ୱଗତି ହିଁ ତାକୁ ଏହି ସାମର୍ଥ୍ୟ ପ୍ରଦାନ କରିଥାଏ। ଏହା ହିଁ ମଣିଷକୁ ଉନ୍ନତ କରିଛି। ଏହିଠାରୁ ସୃଷ୍ଟି ହୋଇଛି ସଭ୍ୟତା। ଇତର ପ୍ରାଣୀଙ୍କର ସଭ୍ୟତା ନାହିଁ। ମଣିଷ ତା'ର ଜାନ୍ତବ ପ୍ରବୃତ୍ତିକୁ ଯେଉଁ ଯୁଗରେ ଯେତେ ଶୃଙ୍ଖଳିତ କରିଛି, ସେ ଯୁଗର ସଭ୍ୟତା ସେତେ ଉନ୍ନତ ବୋଲି ଆମେ କହୁ। ସ୍ୱର୍ଗ- ନରକର ପରିକଳ୍ପନା, ପାପ- ପୁଣ୍ୟର ବିଚାର ଧାରା ମଣିଷ ସଭ୍ୟତାକୁ ପ୍ରଭାବିତ କରିଥାଏ।

ଏହି ଚିନ୍ତାଧାରାକୁ ଆଧୁନିକ ପ୍ରଗତିଶୀଳ ମଣିଷ ରଢ଼ିବାଦୀ ଚେତନା ବୋଲି ଭ୍ରୂକୁଞ୍ଚିତ କଲେ ସୁଦ୍ଧା ଏହା ହିଁ ପୃଥିବୀର ସବୁ ସଭ୍ୟତାର ମୂଳପିଣ୍ଡ। ଏହି ଚେତନା ମଣିଷକୁ ପଶୁଠାରୁ ଉନ୍ନତ କରିଛି; ଆଦିମ ନଗ୍ନତାରୁ ଟାଣିଆଣି ଏକ ସମ୍ଭ୍ରାନ୍ତ ସଭ୍ୟତାରେ ଉପନୀତ କରାଇଛି। ପ୍ରବୃତ୍ତି ଯେଉଁଠି ସମ୍ଭ୍ରମହୀନ ଭାବରେ ଚରିତାର୍ଥ କରାଯାଏ, ଆମେ କହୁ ସଭ୍ୟତା ନଷ୍ଟ ହୋଇଗଲା ଅଥବା ସଭ୍ୟତା ନରକଗାମୀ ହୋଇଗଲା।

ଇତର ପ୍ରାଣୀମାନଙ୍କ ଜାନ୍ତବ ପ୍ରବୃତ୍ତି ଚରିତାର୍ଥ ହୋଇଯିବା ପରେ ସେମାନେ ସନ୍ତୁଷ୍ଟ ରହନ୍ତି। କିନ୍ତୁ ମଣିଷ ଅହରହ ଇନ୍ଦ୍ରିୟ ତୃପ୍ତି ଲାଳସାରେ ଥାଏ। ଏଥିପାଇଁ ସେ ପର ଦ୍ରବ୍ୟ ହରଣ କରିଥାଏ; ଅନ୍ୟକୁ ପୀଡ଼ା ଦେଇଥାଏ। ପୃଥିବୀରେ ଯେତେ ଅରାଜକତା ହୋଇଛି, ବୋଧହୁଏ ଏହା ହିଁ ତା'ର ମୂଳ ହେତୁ। ମଣିଷ ଈଶ୍ୱରଙ୍କୁ ସୃଷ୍ଟି କଲା କି ଈଶ୍ୱର ମଣିଷଙ୍କୁ ସୃଷ୍ଟି କଲେ, ତାହା ଏକ ଅଛିଣ୍ଡା ପ୍ରଶ୍ନ। କିନ୍ତୁ ଉଚ୍ଛୃଙ୍ଖଳ ମଣିଷକୁ ଶୃଙ୍ଖଳିତ, ସଂଯତ ଓ ସମ୍ଭ୍ରାନ୍ତ କରିବା ପାଇଁ ଯେ ବୁଦ୍ଧିଜୀବୀମାନଙ୍କର ପାପ- ପୁଣ୍ୟ, ସ୍ୱର୍ଗ- ନରକର ଅନୁଶାସନ- ଏହା ଅସ୍ୱୀକାର କରାଯାଇ ନପାରେ। ଏହି ଆବଶ୍ୟକତାରୁ ସୃଷ୍ଟି ହୋଇଛି ଧର୍ମ; କାର୍ଲ୍ ମାର୍କ୍ସଙ୍କ ଦୃଷ୍ଟିରେ ଅଫିମର ନିଶା। ଏହି ଅଫିମ ନିଶାରେ ମଣିଷ କେତେବେଳେ ନିଜକୁ ସର୍ବଶକ୍ତିମାନ୍ ଭାବେ ତ ଆଉ କେତେବେଳେ ଭାଗ୍ୟ ଭବିତବ୍ୟ ହାତରେ ନିଜକୁ ଛାଡ଼ିଦେଇ ସମ୍ପୂର୍ଣ୍ଣ ନିଷ୍କ୍ରିୟ ହୋଇପଡ଼େ। ରାମକୃଷ୍ଣ ପରମହଂସଙ୍କ ଅନୁସାରେ ମାଙ୍କଡ଼ିଆ ପ୍ରେମ ଓ ବିରାଡ଼ିଆ ପ୍ରେମ- ମାଙ୍କଡ଼ ଛୁଆଟି ପରି ତା'ର ମାଆକୁ ଜାବୁଡ଼ି ଧରିବା ପାଇଁ ଈଶ୍ୱରଙ୍କୁ ଜାବୁଡ଼ି ଧରିବା ଅଥବା ବିରାଡ଼ି ଛୁଆ ପରି ସମ୍ପୂର୍ଣ୍ଣ ନିଷ୍କ୍ରିୟ ରହି ଈଶ୍ୱରଙ୍କ ନିକଟରେ ନିଜକୁ ସମ୍ପୂର୍ଣ୍ଣ ସମର୍ପି ଦେବା।

ଭାଗ୍ୟ ଓ ଭବିତବ୍ୟ ପାଖରେ ନିଜକୁ ସମ୍ପୂର୍ଣ୍ଣ ସମର୍ପି ଦେବା ମଣିଷମାନଙ୍କୁ ସମାଲୋଚନା କରି ଜବାହାରଲାଲ୍ ନେହରୁ କହୁଥିଲେ, ଯଦିଚ ଈଶ୍ୱର ବୋଲି କେହି ଥାଆନ୍ତି, ସଦା ସର୍ବଦା ଈଶ୍ୱର ଈଶ୍ୱର ହେବା କ'ଣ ନିହାତି ଜରୁରୀ! ସେ ଥିଲେ କର୍ମବାଦୀ। କର୍ମ ତାଙ୍କ ପାଇଁ ଈଶ୍ୱର ଥିଲେ। ମଣିଷ ନିଜେ ନିଜର ଭାଗ୍ୟ ବିଧାତା ହେଉ ବୋଲି ସେ କହୁଥିଲେ।

ଦାର୍ଶନିକ ମାର୍କ୍ ଟ୍ୱେନ୍ କହିଥିଲେ, 'ଧର୍ମ ସେତିକି ବେଳେ ସୃଷ୍ଟି ହୋଇଥିଲା, ଯେତେବେଳେ ପୃଥିବୀର ପ୍ରଥମ ଠକ ପୃଥିବୀର ପ୍ରଥମ ବୋକା ଲୋକକୁ ଭେଟିଥିଲା।' କହିବା ବାହୁଲ୍ୟ, ପୃଥିବୀର ପ୍ରତ୍ୟେକ ଧର୍ମ ସହ ଈଶ୍ୱର ବିଶ୍ୱାସ ଓ ସ୍ୱର୍ଗ- ନରକର ପରିକଳ୍ପନା ଜଡ଼ିତ। ପାପ- ପୁଣ୍ୟ ଓ ସ୍ୱର୍ଗ- ନରକର ଭୟ ହେତୁ ମଣିଷ ନିଜକୁ କୁକାର୍ଯ୍ୟରୁ ନିବୃତ୍ତ ରଖେ। ମୃତ୍ୟୁ ପରେ ସ୍ୱର୍ଗରେ ବାସ କରିବାର ଲୋଭରେ ଅଧିକାଂଶ ଉତ୍ତମ ଜୀବନ ବଞ୍ଚିଥାନ୍ତି। ଏହି ସ୍ୱର୍ଗର ପରିକଳ୍ପନା ସହ ତପଜପ, ଜାଗଯଜ୍ଞ, ଦାନଧ୍ୟାନ ଆଦି ଧାର୍ମିକ କ୍ରିୟାକଳାପ ଜଡ଼ିତ ଥାଏ। ପାପ- ପୁଣ୍ୟର ବିଚାରଧାରା ମଧ୍ୟ ଏହି ଧର୍ମ- ଅଧର୍ମ କ୍ରିୟା କର୍ମାଣୀରୁ ସୃଷ୍ଟି। ପ୍ରାୟତଃ ପୃଥିବୀର ପ୍ରତ୍ୟେକ ଧର୍ମ ବଞ୍ଚିଥିବା ଜୀବନ ପରିବର୍ତ୍ତେ ମୃତ୍ୟୁ ପରର ସୁଖ ଶାନ୍ତି କଥା କହିଥାଏ। ଇହକାଳର କର୍ମ ମୃତ୍ୟୁ ପରର ଜୀବନକୁ ନିୟନ୍ତ୍ରିତ କରିବା ସବୁ ଧର୍ମରେ ଉଲ୍ଲେଖ ରହିଛି। ପର କାଳର କାଳ୍ପନିକ

ସୁଖଶାନ୍ତି ପାଇଁ ବର୍ତ୍ତମାନର ଜୀବନକୁ ତ୍ୟାଗ, ତପସ୍ୟା ପରି କଠୋର ସଂଯମରେ ଯାପନ କରିବା ପାଇଁ ଅନେକେ ପସନ୍ଦ କରିଥାନ୍ତି। ପୁନର୍ଜନ୍ମରେ ବିଶ୍ୱାସ କରୁ ନଥିବା ଧର୍ମରେ ସ୍ୱର୍ଗ- ନରକର ଧାରଣା ତୀବ୍ର। ହିନ୍ଦୁ ଧର୍ମରେ ଉଭୟ ପୁନର୍ଜନ୍ମରେ ବିଶ୍ୱାସ ରହିଛି ଓ ସ୍ୱର୍ଗ- ନରକରେ ମଧ୍ୟ ବିଶ୍ୱାସ ରହିଛି। ସ୍ୱର୍ଗରେ ଯେମିତି ଦେବଲୋକ, ଶିବଲୋକ, ବ୍ରହ୍ମାଲୋକ ଓ ବୈକୁଣ୍ଠଲୋକ ଆଦି ବିଭିନ୍ନ ପର୍ଯ୍ୟାୟ ରହିଛି, ନରକରେ ମଧ୍ୟ ସେମିତି ଭେଦ ରହିଛି। ସେମାନଙ୍କ ମଧ୍ୟରୁ କୁମ୍ଭୀପାକ, ଅନ୍ଧକୂପ, ତମିସ୍ରା, ଅନ୍ଧ ତମିସ୍ରା, ରୌରବ, ମହାରୌରବ, କାଳସୂତ୍ର, ସୁକର ମୁଖ, ଶାଲ୍ମଳୀ, ବୈତରଣୀ, ବାତରୋଧ ଆଦି ୨୮ ପ୍ରକାରର ନରକର ପରିକଳ୍ପନା ରହିଛି। କେଉଁ ପାପ ପାଇଁ କେଉଁ ନରକ ଭୋଗ କରିବାକୁ ହୁଏ, ତାହାର ମଧ୍ୟ ଉଲ୍ଲେଖ ଆମ ଶାସ୍ତ୍ର ସଂହିତାମାନଙ୍କରେ ଅଛି।

ବରୁଣଙ୍କ ପୁତ୍ର ଭୃଗୁ କର୍ମତତ୍ତ୍ୱ ଉପରେ ଗବେଷଣା କରି ପ୍ରଣୟନ କରିଥିବା ଭୃଗୁ ସଂହିତାରେ ମଣିଷର ପ୍ରାରବ୍ଧ କର୍ମ କିପରି ତା'ର ବିଭିନ୍ନ ଜନ୍ମକୁ ପ୍ରଭାବିତ କରିଥାଏ, ତା'ର ବିସ୍ତୃତ ବର୍ଣ୍ଣନା ରହିଛି। ଏହି ସଂହିତାକୁ ଭୃଗୁପତି ପର୍ଶୁରାମ ପ୍ରଚାର ଓ ପ୍ରସାର କରିଥିଲେ। ଏହି କର୍ମତତ୍ତ୍ୱ ମଣିଷର ପଞ୍ଚତତ୍ତ୍ୱ ଯଥା ଅନ୍ନମୟ କୋଷ, ପ୍ରାଣମୟ କୋଷ, ମନୋମୟ କୋଷ, ବିଜ୍ଞାନମୟ କୋଷ ଓ ଆନନ୍ଦମୟ କୋଷ ଆଧାରିତ। କିନ୍ତୁ ଏ ଉପଭୋକ୍ତା ଯୁଗର ମଣିଷ ଆଉ ଏସବୁ ପ୍ରାଚୀନ ଭାବଧାରା ଉପରେ ଗୁରୁତ୍ୱ ଦେଉନାହିଁ। ତା' ପାଇଁ ବଞ୍ଚିବାର ସଂଜ୍ଞା ବଦଳି ଯାଇଛି। ଜୀବନର ମୂଲ୍ୟବୋଧ ଭିନ୍ନ ହୋଇ ଯାଇଛି। ସେହି ଅନୁସାରେ ପାପ- ପୁଣ୍ୟ, ସ୍ୱର୍ଗ- ନରକର ଅର୍ଥ ତା' ପାଖରେ କିଛି ନାହିଁ। ବଞ୍ଚିବା ତା' ଜୀବନର ଏକମାତ୍ର ବଡ଼ ସତ୍ୟ। ଭୁଲ୍- ଠିକ୍‌ର ବିଚାର ବୋଧ ପରିବର୍ତ୍ତେ ଭଲ ଓ ମନ୍ଦର ବିଚାର ତା' ପାଇଁ ମୁଖ୍ୟ ହୋଇ ପଡ଼ିଛି।

ଏ ପରିପ୍ରେକ୍ଷୀରେ ଏବେ ଭାଟିକାନ୍ ସିଟିସ୍ଥିତ ପୋପ୍ ଫ୍ରାନ୍‌ସିସ୍‌ଙ୍କର ସ୍ୱର୍ଗ ଓ ନରକ ଉପରେ ପ୍ରଦତ୍ତ ମନ୍ତବ୍ୟ ବିଶ୍ୱରେ ଚର୍ଚ୍ଚାର ବିଷୟ ହୋଇଛି। ପୋପ୍ ଜଣେ ସଂସ୍କାରବାଦୀ ମଣିଷ। ତାଙ୍କ ସହ ସାକ୍ଷାତ୍‌କାର ବେଳେ 'ଲା ରିପବ୍ଲିକା' ନାମକ ଏକ ସମ୍ବାଦପତ୍ରର ପ୍ରତିଷ୍ଠାତା ସାମ୍ବାଦିକ ୯୩ ବର୍ଷ ବୟସ୍କ ୟୁଜେନିଓ ସ୍କାଲ୍‌ଫାରୀଙ୍କ ପ୍ରଶ୍ନର ଉତ୍ତର ଦେବା ବେଳେ ସେ ମନ୍ତବ୍ୟ ଦେଇଛନ୍ତି ଯେ ସ୍ୱର୍ଗ ଓ ନରକ ବୋଲି କିଛି ନାହିଁ। କୁକର୍ମ କରୁଥିବା ଦୁଷ୍ଟ ମଣିଷମାନେ ଅନୁତାପଦଗ୍ଧ ହୋଇ ନିଜକୁ ସଜାଡ଼ି ଦେଲେ ଈଶ୍ୱରଙ୍କର ନିକଟତର ହୁଅନ୍ତି, କିନ୍ତୁ ଯେଉଁମାନେ ଅନୁତାପଦଗ୍ଧ ହୁଅନ୍ତି ନାହିଁ, ସେମାନେ ଶୂନ୍ୟରେ ଲୀନ ହୋଇଯାନ୍ତି।

ଏହା ଖ୍ରୀଷ୍ଟ ଧର୍ମର ମୂଳତତ୍ତ୍ୱ ଅନ୍ତିମ ବିଚାରକୁ କେତେ ପ୍ରଭାବିତ କରିବ, ତାହା

ଭିନ୍ନ ପ୍ରସଙ୍ଗ । କିନ୍ତୁ ସାମ୍ପ୍ରତିକ ମଣିଷର ଜୀବନଶୈଳୀ ଏତେ କ୍ଷିପ୍ର ହୋଇ ପଡ଼ିଛି ଯେ ତାହାର କର୍ମକର୍ମାଣୀର ପୁରସ୍କାର ଅଥବା ଅଭିଶାପ ପାଇଁ ତାକୁ ଆଉ ଜନ୍ମ ଜନ୍ମାନ୍ତର ପାଇଁ ପ୍ରତୀକ୍ଷା କରିବାକୁ ପଡୁନାହିଁ । ମଣିଷ ଏବେ ସମୟର ମିନିଟ୍, ସେକେଣ୍ଡ, ଲିତା ବିଲିତାରେ ବଞ୍ଚୁଛି । ଗୋଟାଏ ମୁହୂର୍ତ୍ତ ଅଥବା ସେକେଣ୍ଡ୍‌ର ବ୍ୟବଧାନରେ ଖେଳୁଆଡ଼୍‌ଟିଏ ବିଶ୍ୱବ୍ୟାପି ରେକର୍ଡ଼କୁ ଭଗ୍ନ କରୁଛି । ମଣିଷର କର୍ମଫଳ ମଧ୍ୟ ଆମେ ଖୁବ୍ କମ୍ ସମୟରେ ଏହି ଜୀବନ କାଳ ମଧ୍ୟରେ ଉପଲବ୍ଧି କରି ପାରୁଛୁ । ଏ ଯୁଗରେ ଦୃଷ୍ଟାତ୍ମାଙ୍କର ପାପକର୍ମ ଯେମିତି ବିଶ୍ୱବ୍ୟାପି ହୋଇ ପଡୁଛି, ସେମାନଙ୍କ ପାପର ସାମ୍ରାଜ୍ୟ ମଧ୍ୟ ଆମରି ଦୃଷ୍ଟି ସମ୍ମୁଖରେ ଖୁବ୍ କମ୍ ସମୟ ବ୍ୟବଧାନରେ ଭୁଶୁଡ଼ି ପଡ଼ିବା ପରିଲକ୍ଷିତ ହେଉଛି । ଏଥିପାଇଁ ବେଶୀ ସମୟ ଲାଗୁନାହିଁ । ଆଶାରାମ୍ ବାପୁ, ରାମ୍ ପାଲ, ଗୁରମିତ୍ ରାମ ରହିମ୍‌ଠାରୁ ସୁର ସାରଥି ପର୍ଯ୍ୟନ୍ତ; ବିଜୟ ମାଲ୍ୟା, ନିରବ ମୋଦିଠାରୁ ଚିଟ୍‌ଫଣ୍ଡ୍ ମାମଲା ସି- ସୋର୍, ଏଟି ଗ୍ରୁପ୍ ଅଥବା ଲାଲୁପ୍ରସାଦଠାରୁ ସଲମାନ୍ ଖାନ୍ ପର୍ଯ୍ୟନ୍ତ ଅଜସ୍ର ଉଦାହରଣ ଆମ ପାଖରେ ଅଛି ଓ ଯେଉଁମାନଙ୍କ କର୍ମଫଳ ତାଙ୍କୁ ଏଇ ଜନ୍ମରେ ନରକ ଯନ୍ତ୍ରଣା ଦେଇଛି ବା ଦେଉଛି ।

ତଥାକଥିତ ସ୍ୱର୍ଗ ଅଥବା ନରକର ପରିକଳ୍ପନା ସତ୍ୟ ହୋଇପାରେ ଅଥବା ମିଥ୍ୟା, କିନ୍ତୁ କର୍ମ ଫଳର ଅଲଂଘନୀୟ ପରିଣତିରୁ କେବଳ ମଣିଷ ନୁହେଁ, ଈଶ୍ୱର ମଧ୍ୟ ମୁକ୍ତ ନୁହନ୍ତି- ଏହା ଆମ ଶାସ୍ତ୍ର ସଂହିତାରେ ରହିଛି । ତେବେ ଏଇ ଜନ୍ମରେ ହିଁ ଆମେ ଆମ କର୍ମଫଳ ଅନୁସାରେ କେତେବେଳେ ସ୍ୱର୍ଗୀୟ ଐଶ୍ୱର୍ଯ୍ୟରେ ବିଭୂଷିତ ହୋଇପଡୁ ତ ପୁଣି କେତେବେଳେ ନରକର ପୁତିଗନ୍ଧମୟତାରେ କର୍ଦ୍ଦମାକ୍ତ ହୋଇଥାଉ । ଗୋଟିଏ ବାକ୍ୟରେ କହିଲେ, ଯେଉଁଠି ମହାତ୍ମାମାନେ ଥାଆନ୍ତି, ତାହା ସ୍ୱର୍ଗ ଓ ଯେଉଁଠି ଦୃଷ୍ଟ ଆତ୍ମାମାନେ ଥାଆନ୍ତି, ତାହା ନରକର ଅନୁଭବ ଦିଏ- ଏହା ଅସ୍ୱୀକାର କରିହେବ ନାହିଁ ।



# ସିନ୍ଦୁରା ଫାଟିବାର ବେଳ

ଦାର୍ଶନିକ ଅରବିନ୍ଦଙ୍କ ଭାଷାରେ ସିନ୍ଦୁରା ଫାଟିବା ଆଗରୁ ଅନ୍ଧାକାର ଅତି ମାତ୍ରାରେ ଘନୀଭୂତ ହୋଇଯାଏ। ତା'ପରେ ଆସେ ନୂଆ ସକାଳ। ଅନ୍ଧକାରର ଅନ୍ତ ଘଟେ। ଆଲୋକର ପର୍ବରେ ସମସ୍ତେ ଉଲ୍ଲସିତ ହୋଇ ଉଠନ୍ତି। ତେବେ ଏବେ ଯେଉଁପରି ନାବାଳିକାମାନଙ୍କ ଉପରେ ଦୁଷ୍କର୍ମର ମାତ୍ରା ବଢ଼ି ବଢ଼ି ଚାଲିଛି, ତାହା କ'ଣ ସୂର୍ଯ୍ୟୋଦୟ ପୂର୍ବର ଘନୀଭୂତ ଅନ୍ଧକାର ? ଏଇଠୁ କ'ଣ ଶେଷ ହୋଇଯିବ କି ଯେତେସବୁ ନାବାଳିକା ଦୁଷ୍କର୍ମଜନିତ ଅପରାଧ ? ସେମାନେ ମର୍ଯ୍ୟାଦାର ସହ ବଞ୍ଚିବାର ଅଧିକାର ପାଇବେ ?

ଅତୀତରେ ଦୁଷ୍କର୍ମ ଥିଲା। ସେଥିପାଇଁ ଦଣ୍ଡ ବିଧାନ ମଧ୍ୟ ନିର୍ଦ୍ଧାରିତ ହୋଇଥିଲା। ଯେଉଁ ଦିନଠାରୁ ଉଦ୍ଦାଳକ ଋଷିଙ୍କ ପୁତ୍ର ଶ୍ୱେତକେତୁଙ୍କ ଦ୍ୱାରା ବିବାହ ଅନୁଷ୍ଠାନ ପ୍ରବର୍ତ୍ତିତ ହେଲା, ନାରୀ ତା'ର ଉପଯୁକ୍ତ ମର୍ଯ୍ୟାଦା ପାଇଲା। ତା' ଇଚ୍ଛା ବିରୁଦ୍ଧରେ ତା' ଶରୀର ଉପରେ କାହାର ଆଧିପତ୍ୟକୁ ସେ ସ୍ୱୀକାର କଲାନାହିଁ। ସମାଜରେ ସେଥିପାଇଁ ବିଧି ବ୍ୟବସ୍ଥା ବା ଆଚରଣ ବିଧି ଲାଗୁ ହେଲା। ଏସବୁର ଉଲ୍ଲଘଂନକାରୀଙ୍କୁ ଶାସ୍ତି ବିଧାନ ହେଲା। ଏଥିରୁ ଇନ୍ଦ୍ର, ଚନ୍ଦ୍ର, ବ୍ରହ୍ମା, ବିଷ୍ଣୁ କେହି ବି ବର୍ତ୍ତି ନଥିଲେ। ଇନ୍ଦ୍ର ସହସ୍ର ଯୋନି ହେବାର ଅଭିଶାପ ପାଇଥିବା ବେଳେ ଚନ୍ଦ୍ର କଳଙ୍କିତ ହେଲେ ଓ କ୍ଷୟ-ବୃଦ୍ଧି ଦଶା ଭୋଗିଲେ। ବ୍ରହ୍ମା ଅପୂଜ୍ୟ ହୋଇ ରହିଗଲେ ଏବଂ ସାରଳା ଦାସଙ୍କ ମହାଭାରତ ଅନୁସାରେ ଶ୍ରୀକୃଷ୍ଣଙ୍କ ପିଣ୍ଡ ଦଗ୍ଧ ନହୋଇ ଅର୍ଦ୍ଧଦଗ୍ଧ ରହିଗଲା। ଏସବୁ ପୌରାଣିକ ଆଖ୍ୟାନକୁ କାଳ୍ପନିକ କହି ଏଡ଼ାଇ ଦିଆଯାଇ ପାରେ, କିନ୍ତୁ ଏହାର ଅନ୍ତରାଳରେ ଯେଉଁ ସାମାଜିକ ସତ୍ୟ ରହିଛି, ତାହା ହେଉଛି- ଯୌନ ଅପରାଧ ଅକ୍ଷମଣୀୟ। ଏଥିରୁ ଦେବତାମାନେ ବି ବାଦ୍ ପଡ଼ି ନାହାନ୍ତି। ଏବେ ଯୁଗୀୟ ସଭ୍ୟତାର ବିଷ ନାବାଳିକା ଦୁଷ୍କର୍ମ ଅଥବା ଗଣଦୁଷ୍କର୍ମ ସବୁ ସୀମା ସରହଦ ଟପି ସାରିଲାଣି। ଏ ପ୍ରକାର ଅପରାଧ ଅଶ୍ରୁତପୂର୍ବ ଓ ଅଭୂତପୂର୍ବ। ଅତୀତରେ ଏ ଦୁଷ୍କର୍ମ ଆମ ସାମାଜିକ ଜୀବନକୁ ଏପରି ଆକ୍ରାନ୍ତ କରିବାର କେଉଁଠାରେ ଉଲ୍ଲେଖ ନାହିଁ। ୧୯୩୦ ମସିହା ପର୍ଯ୍ୟନ୍ତ ଏ ସ୍ପର୍ଶକାତର ପ୍ରସଙ୍ଗ ସମ୍ପର୍କରେ ବିଶ୍ୱବାସୀ ଆଦୌ ଚିନ୍ତା କରି ନଥିଲେ।

୧୯୫୭ ମସିହାରେ ଫ୍ରେଞ୍ଚ୍ ପ୍ୟାଥୋଲୋଜିଷ୍ଟ ଓ ଫରେନ୍‌ସିକ୍ ମେଡିସିନ୍‌ର ପ୍ରବର୍ତ୍ତକ ଅଗଷ୍ଟେ ଆମ୍ବ୍ରଏସ୍ ଜାନ୍‌ଦିୟୁ ପ୍ରଥମ କରି ତାଙ୍କ ପୁସ୍ତକ ମେଡିକାଲ ଲିଗାଲ୍ ଷ୍ଟଡିଜ୍ ଅଫ୍ ସେକ୍ସୁଆଲ ଆସଲ୍ଟରେ ଏ ପ୍ରସଙ୍ଗକୁ ଆଲୋକକୁ ଆଣିଥିଲେ। ୧୯୭୦ରୁ ୮୦ ଭିତରେ ଏହାକୁ ବିଶ୍ୱ ବିଶେଷ ପ୍ରସଙ୍ଗ କଲା। ୧୯୭୯ରେ ଚାଇଲ୍ଡ ଆବ୍ୟୁଜ୍ ପ୍ରିଭେନ୍‌ସନ୍ ଆଣ୍ଡ ଟ୍ରିଟ୍‌ମେଣ୍ଟ ଆକ୍ଟ ପ୍ରଣୟନ କଲା। ପ୍ରଥମେ ପୀଡ଼ିତାଙ୍କ ବୟସ ସୀମା ୧୦ବର୍ଷ ଥିଲା। ପରେ ତାହାକୁ ୧୭ ବର୍ଷ ପର୍ଯ୍ୟନ୍ତ ବଢ଼ାଇ ଦିଆଯାଇଛି। ଅତ୍ୟନ୍ତ ଲଜ୍ଜାଜନକ ବିଷୟ ଯେ ସାତ ଆଠମାସର ଶିଶୁ କନ୍ୟା ବି ଦୁଷ୍କୃତଙ୍କ ଲୋଲୁପ ଦୃଷ୍ଟିରୁ ବର୍ତ୍ତିପାରୁ ନାହିଁ। ୧୯୯୬ ମସିହାରେ ଷ୍ଟକ୍‌ହୋମ୍‌ଠାରେ ଶିଶୁ ଯୌନ ନିର୍ଯାତନା ବିରୁଦ୍ଧରେ ବସିଥିବା ପ୍ରଥମ ବିଶ୍ୱ କଂଗ୍ରେସରେ କମର୍ସିଆଲ ସେକ୍ସୁଆଲ ଏକ୍ସପ୍ଲଏଟେସନ୍ ଅଫ୍ ଚିଲ୍‌ଡ୍ରେନ୍ (ସିଏସ୍‌ଇସି) ନାମରେ ନାମିତ କରି ଏହାକୁ ରୋକିବା ଦିଗରେ ବିଭିନ୍ନ ପଦକ୍ଷେପମାନ ନିଆଗଲା। ଆମ ଦେଶରେ ରହିଛି ପୋକ୍‌ସୋ ଆକ୍ଟ, ୨୦୧୨। ନିର୍ଭୟା ଗଣବଳାତ୍କାର ମାମଲାର ଯେପରି ବିଶ୍ୱବ୍ୟାପି ଚର୍ଚ୍ଚା ହୋଇଥିଲା, ନ୍ୟାୟ ଦାବିରେ ଦେଶବ୍ୟାପି ଆନ୍ଦୋଳନ, କ୍ୟାଣ୍ଡେଲ୍ ଶୋଭାଯାତ୍ରା ଆଦି ହୋଇଥିଲା, ତତ୍କାଳୀନ ସରକାର ଯେପରି ଏଥି ପ୍ରତି ସମ୍ବେଦନଶୀଳ ଥିଲେ, ମନେ ହେଉଥିଲା ଦେଶରୁ ଦୁଷ୍କର୍ମ ଅପରାଧ ମୂଳପୋଛ ହୋଇଯିବ। କିନ୍ତୁ କିଛି ହେଲାନାହିଁ।· ବରଂ ଅପରାଧ ବଢ଼ିବଢ଼ି ଚାଲିଲା। ଏବେ ଆମ ସମ୍ମୁଖରେ ପୁଣି ଏକ ଅଗ୍ନି ପରୀକ୍ଷା। ଶିଶୁକନ୍ୟାଙ୍କ ପ୍ରତି ମାଡ଼ି ଆସୁଛି ବିପଦ। ଏହାର ମାତ୍ରା ଏପରି ବଢ଼ି ଯାଇଛି ଯେ ସମଗ୍ର ବିଶ୍ୱରେ ଭାରତର ଛବି କଦର୍ଯ୍ୟ ହୋଇ ପଡ଼ିଛି। ଏଥିପାଇଁ ବିଦେଶ ଗସ୍ତ ବେଳେ ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦିଙ୍କୁ ମଧ ଅପଦସ୍ତ ହେବା ପାଇଁ ପଡ଼ିଛି। ବିଦେଶ ଗସ୍ତରୁ ଫେରି ଦୁଇଘଣ୍ଟା ମଧରେ ନାବାଳିକା ଦୁଷ୍କର୍ମ କରୁଥିବା ଅଭିଯୁକ୍ତଙ୍କୁ ଫାଶୀଦଣ୍ଡ ପାଇଁ ସେ ଅଧ୍ୟାଦେଶ ଜାରି କରିଛନ୍ତି। ରାଷ୍ଟ୍ରପତିଙ୍କ ଅନୁମୋଦନ ପରେ ତାହା ମୌସୁମୀ ଅଧିବେଶନରେ ପାରିତ ହୋଇ କାର୍ଯ୍ୟକାରୀ ହେବ। ମାତ୍ର ଅଧ୍ୟାଦେଶ ଜାରି ସମୟରେ ଆବଶ୍ୟକତା ଅପେକ୍ଷା ନିର୍ବାଚନର ଅବଧି ପାଖେଇ ଆସୁଥିବା ଦୃଷ୍ଟିରୁ ରାଜନୈତିକ ଉଦ୍ଦେଶ୍ୟର ବାସ୍ନା ବେଶୀ ବାରୁଛନ୍ତି ବୁଦ୍ଧିଜୀବୀମାନେ।

ମାନବିକତାର ଜୟଗାନ କରୁଥିବା ସାମ୍ପ୍ରତିକ ବିଶ୍ୱ ମୃତ୍ୟୁଦଣ୍ଡ ସପକ୍ଷରେ ନାହିଁ। ବିରଳରୁ ବିରଳତମ ହତ୍ୟା ଅପରାଧରେ କେବଳ ଫାଶୀଦଣ୍ଡର ଉପଯୋଗ ହୋଇଥାଏ। ଏହି ଫାଶୀ ପ୍ରକ୍ରିୟା ଆମ ଦେଶରେ ଏତେ ବିଳମ୍ବିତ ଯେ ଅଗଣିତ ଧନଜୀବନ ହାନି କରିଥିବା ପାକିସ୍ତାନୀ ଆତଙ୍କବାଦୀଟିଏକୁ ମଧ ଫାଶୀ ଦେବା ପାଇଁ ଆମର ବର୍ଷ ବର୍ଷ

ସମୟ ଲାଗି ଯାଇଥାଏ। ତା'ର ହାଜତ ହେପାଜତ ପାଇଁ ଭାରତୀୟ ରାଜକୋଷରୁ ଅଜସ୍ର ଅର୍ଥରାଶି ଖର୍ଚ୍ଚ ହୋଇ ଯାଇଥାଏ। ସବୁଠାରୁ ବଡ଼କଥା ହେଲା, ସ୍ୱାଧୀନତା ପରେ ଫାଶୀଦଣ୍ଡରେ ଦଣ୍ଡିତ ହୋଇଥିବା ସମସ୍ତ ଅଭିଯୁକ୍ତ ଗରିବ ଶ୍ରେଣୀର, ଯେଉଁମାନଙ୍କ ପାଖରେ ଭଲ ଓକିଲଟିଏ ଦେବାର ସାମର୍ଥ୍ୟ ନଥାଏ କିମ୍ବା ଲଢ଼ିବା ପାଇଁ ଅର୍ଥ ନଥାଏ। ଉଚ୍ଚ ବର୍ଗର ଅପରାଧୀ ଆର୍ଥିକ ଓ ରାଜନୈତିକ ଚାପ ଦ୍ୱାରା ନିର୍ଦ୍ଦୋଷରେ ଖଲାସ ହୋଇ ଯାଆନ୍ତି। ଅଥଚ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ଥାଇ ବି ନିମ୍ନ ବର୍ଗର ଅଭିଯୁକ୍ତ ସଜା କାଟିବାର ଅନେକ ଦୃଷ୍ଟାନ୍ତ ରହିଛି।

ଶିଶୁମାନଙ୍କ ଉପରେ ଯୌନ ଅତ୍ୟାଚାର ସମାଜର ସକଳ କ୍ଷେତ୍ରରେ ଘଟୁଛି। ଏକଥା ସତ୍ୟ ଯେ ମଧ୍ୟବିତ୍ତ ସମାଜରେ ଶିଶୁମାନେ ଉଚ୍ଚ ଓ ନିମ୍ନ ବର୍ଗର ଶିଶୁମାନଙ୍କ ଅପେକ୍ଷା ଅଧିକ ସୁରକ୍ଷିତ। ଉଚ୍ଚ ବର୍ଗର ଜୀବନଶୈଳୀ, ବିଶୃଙ୍ଖଳିତ ପାରିବାରିକ ସ୍ଥିତି, ବିବାହ ବିଚ୍ଛେଦ ଆଦି ହେତୁ ଶିଶୁମାନେ ଯେପରି ଅସୁରକ୍ଷିତ, ନିମ୍ନ ବର୍ଗରେ ମଧ୍ୟ ପେଟପାଟଣା ପାଇଁ କୁଲିଭୂତି କରୁଥିବା ଅଭାବୀ ପିତାମାତା ଶିଶୁମାନଙ୍କ ପ୍ରତି ବେଶୀ ଧ୍ୟାନ ଦେଇ ନ ପାରିବାରୁ ସେମାନେ ସେହିପରି ଅସୁରକ୍ଷିତ। ଶିଶୁମାନଙ୍କ ପ୍ରତି ଦୁଷ୍କର୍ମ କରୁଥିବା ୯୫ ପ୍ରତିଶତ ବ୍ୟକ୍ତି ଆପଣାର ହୋଇଥିବା ହେତୁ ସେମାନଙ୍କୁ ଚିହ୍ନଟ କରିବା ମଧ୍ୟ ଅତ୍ୟନ୍ତ ଜଟିଳ ହୋଇ ପଡ଼ିବା ସ୍ୱାଭାବିକ। ସାମାଜିକ ସମ୍ମାନ ଓ ପାରିବାରିକ ଚାପ ହେତୁ ପିତାମାତା ମଧ୍ୟ ଅଭିଯୁକ୍ତଙ୍କୁ ଘଣ୍ଟ ଘୋଡ଼ାଇବାକୁ ବାଧ୍ୟ ହୁଅନ୍ତି। କୋର୍ଟ କଚେରୀ ମାମଲାରେ ପରିବାରର ମାନସମ୍ମାନ କ୍ଷୁଣ୍ଣ ହେବାର ଆଶଙ୍କା କରି ଚୁପ୍ ରହନ୍ତି। ପ୍ରଭାବଶାଳୀମାନେ ତ ଅଭିଯୁକ୍ତଙ୍କୁ ନିର୍ଦ୍ଦୋଷ ସାବ୍ୟସ୍ତ କରିବା ପାଇଁ ବିଭିନ୍ନ ଉପାୟ ଅବଲମ୍ବନ କରି ଥାଆନ୍ତି। ଅନୁସନ୍ଧାନରୁ ଜଣାପଡ଼ିଛି, ବର୍ତ୍ତମାନ କ୍ଷମତାରେ ଥିବା ୩ ଜଣ ସାଂସଦ, ୪୫ ଜଣ ବିଧାୟକ ମହିଳାଙ୍କ ସମ୍ପର୍କିତ ଅପରାଧରେ ଅଭିଯୁକ୍ତ। ଉତ୍ତରପ୍ରଦେଶର ଉନ୍ନାଓ ପୀଡ଼ିତା ସହ ପ୍ରତ୍ୟକ୍ଷ ଭାବରେ ଜଣେ ବିଧାୟକ ସମ୍ପୃକ୍ତ ଥିବା ବେଳେ କଠୁଆରେ ଦୁଇଜଣ ବିଧାୟକ ଅଭିଯୁକ୍ତଙ୍କୁ ସମର୍ଥନ କରି ର୍‍ୟାଲି କରୁଥିବା ପରିଲକ୍ଷିତ ହୋଇଥିଲା। ଅବଶ୍ୟ ବିଶ୍ୱବ୍ୟାପି ଚର୍ଚ୍ଚା ଓ ଚାପ ଫଳରେ ଏମାନଙ୍କୁ ଏବେ ଗିରଫ କରାଯାଇଛି। ସବୁ ଘଟଣାର ବିଶ୍ୱବ୍ୟାପି ଚର୍ଚ୍ଚା ହୁଏନାହିଁ କିମ୍ବା ସବୁ ଅପରାଧୀ ଧରା ପଡ଼ନ୍ତି ନାହିଁ।

ସକଳ ଆଶଙ୍କା ସତ୍ତ୍ୱେ ଆଶ୍ୱାସନର ବିଷୟ, ଶିଶୁମାନଙ୍କ ପ୍ରତି ଦ୍ରୁତ ବର୍ଦ୍ଧମାନ ଦୁଷ୍କର୍ମ ପାଇଁ ଦିଲ୍ଲୀଠୁ ପଲ୍ଲୀ ପର୍ଯ୍ୟନ୍ତ ସକଳ କ୍ଷେତ୍ରରେ ସୃଷ୍ଟି ହୋଇଛି ସଚେତନତା। ଇନ୍ଦୋରର ୮ ମାସର ଶିଶୁକନ୍ୟା ପାଇଁ ଆଡ୍‌ଭୋକେଟ୍ ଆଲୋକ ଶ୍ରୀବାସ୍ତବ ଲଢୁଥିବା

ବେଳେ ଅଖ୍ୟାତ ପଲ୍ଲୀ ମହକାଳପଡ଼ା, ମାର୍ଶାଘାଇ, ସାଲେପୁର, ନୀଳଗିରି ଅଞ୍ଚଳରୁ ୪ ବର୍ଷର ଶିଶୁକନ୍ୟାକୁ କାନ୍ଧରେ ପକାଇ ମାଆମାନେ ଥାନା ଫାଣ୍ଡିକୁ ଆସିବା ପରିଲକ୍ଷିତ ହେଲାଣି। ତତ୍ ସଙ୍ଗେସଙ୍ଗେ ପୋକ୍‌ସୋ ଆଇନ୍, ୨୦୧୨ର ସଂଶୋଧନ ପାଇଁ ଅଧ୍ୟାଦେଶ। ଯେଉଁ ଅପରାଧ ପାଇଁ ସାତବର୍ଷ ସଜା ଥିଲା, ତାହା ଏବେ ଦଶବର୍ଷକୁ ବୃଦ୍ଧି ପାଇଥିବା ବେଳେ ୧୬ ବର୍ଷରୁ କମ୍ ନାବାଳିକାକୁ ଦୁଷ୍କର୍ମ କଲେ ୨୦ ବର୍ଷ ଜେଲ୍ ସଜା। ୧୨ ବର୍ଷରୁ କମ୍ ନାବାଳିକା ପ୍ରତି ଦୁଷ୍କର୍ମ କଲେ ଫାଶୀଦଣ୍ଡ ସଜା। ଅଭିଯୁକ୍ତମାନଙ୍କୁ ଜାମିନ୍‌ବିହୀନ ପରଓ୍ୱାନା। ଦୁଇମାସ ଭିତରେ ତଦନ୍ତ ସାରି ଆଉ ଦୁଇ ମାସ ଭିତରେ ବିଚାର ଶେଷ ପାଇଁ ନିର୍ଦ୍ଦେଶ। ଏଥିପାଇଁ ଫାଷ୍ଟ୍‌ଟ୍ରାକ୍ କୋର୍ଟ, ଫରେନ୍‌ସିକ୍ ଲାବୋରେଟୋରୀ ସହ ଆନୁଷଙ୍ଗିକ ଲୋକବଳ ଯୋଗାଇ ଦେବାର ପ୍ରସ୍ତାବନା। ଦେଖାଯାଉ, ପ୍ରତି ୨୦ ମିନିଟ୍‌ରେ ଜଣେ ଦୁଷ୍କର୍ମ ଆକ୍ରାନ୍ତ ହେଉଥିବା ଶିଶୁମାନଙ୍କୁ ସୁରକ୍ଷା ଦେବାରେ କେତେ ସମର୍ଥ ହୋଇ ପାରୁଛି ଏହି ଅଧ୍ୟାଦେଶ।

ତଥାପି ଆମେ ଆଶା ରଖିବା, ଶିଶୁମାନେ ମର୍ଯ୍ୟାଦାର ସହ ବଞ୍ଚିବାର ଅଧିକାର ପାଇବେ। ସେମାନଙ୍କ ଓଠର ହସ ଅମଳିନ ରହିବ। ସେମାନଙ୍କ ଜୀବନ ପୁଷ୍ପକୁ ଜୀର୍ଣ୍ଣ ବିଦୀର୍ଣ୍ଣ କରୁଥିବା ନୃଶଂସମାନେ ବିଶ୍ୱ ବକ୍ଷରୁ ନିଶ୍ଚିହ୍ନ ହୋଇ ଯାଆନ୍ତୁ। ସମଗ୍ର ବିଶ୍ୱକୁ ସଂଯମ, ଶୃଙ୍ଖଳା ଶିକ୍ଷା ଦେଉଥିବା ଭାରତବର୍ଷ ଆଉ ବେଶୀ ଦିନ ଲାଞ୍ଛିତ ନହେଉ। ଏ ଘନୀଭୂତ ଅନ୍ଧକାରର ଅନ୍ତ ହେଉ।



# ନିଃସ୍ୱ ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ

'ବ୍ୟାସୋଚ୍ଛିଷ୍ଟମ୍ ଇଦମ୍ ଜଗତ୍'। କୁହାଯାଏ, ଯେତେସବୁ ବେଦ, ଉପନିଷଦ, ପୁରାଣ, ଶାସ୍ତ୍ର ସଂହିତା ରହିଛି, ସବୁଠାରେ ବ୍ୟାସଙ୍କ ସ୍ପର୍ଶ ଲାଗିଛି। ପରମ୍ପରା ଅନୁକ୍ରମରେ ଶ୍ରୁତିରେ ସାଇତା ଥିବା ବେଦକୁ ଚାରି ଭାଗରେ ବିଭକ୍ତ କରିବାକୁ ଲିପିବଦ୍ଧ କରିବାର ପ୍ରୟାସ କରି ଥିବାରୁ ସେ କୃଷ୍ଣ ଦ୍ୱୈପାୟନରୁ ବେଦବ୍ୟାସ ବା ବ୍ୟାସଦେବ ନାମରେ ଖ୍ୟାତ ହୋଇଥିଲେ। ଅଷ୍ଟାଦଶ ପୁରାଣ, ଗୀତା, ଉପନିଷଦ, ମହାଭାରତର ରଚନା ଆଦି ଏତେସବୁ କାର୍ଯ୍ୟ ଯେ ବ୍ୟାସଙ୍କର ଏକକ ପ୍ରଚେଷ୍ଟା, ଏହା ବିଶ୍ୱାସ କରିହୁଏ ନାହିଁ। ଏସବୁ ଉଚ୍ଚତର ସାରସ୍ୱତ ସଂରଚନା, ସଂରକ୍ଷଣ, ଗବେଷଣା, ପ୍ରଚାର ଓ ପ୍ରସାର ପାଇଁ ବିଶ୍ୱବିଦ୍ୟାଳୟ ପରି ଅନୁଷ୍ଠାନମାନ ଥାଇପାରେ ଯାହାର କୁଳପତି ଥିଲେ ବ୍ୟାସ ଅଥବା ଏହି ବିଶ୍ୱବିଦ୍ୟାଳୟର ବିଦ୍ୟାର୍ଥୀମାନେ ବ୍ୟାସ ଉପାଧି ଧାରୀ ହୋଇ ପାରନ୍ତି। ସେ ଯୁଗର କୌଣସି ପ୍ରାମାଣିକ ତଥ୍ୟ ଆମ ପାଖରେ ନାହିଁ। ଏସବୁ କେବଳ ଆନୁମାନିକ ତଥ୍ୟ ଆଧାରିତ। ବାଜଶ୍ରବା, ଶ୍ୱେତକେତୁ, ଅଗ୍ନିବେଶ, ଗୌତମ, ସାନ୍ଦିପନୀ ଆଦି ଋଷିଙ୍କ ଆଶ୍ରମରେ ଛାତ୍ରମାନେ ପ୍ରାଥମିକ ଶିକ୍ଷା ପ୍ରାପ୍ତ ହେଉଥିଲେ। ଉଭୟ ଅନୁଷ୍ଠାନ ସମାଜରେ ଶିକ୍ଷା ସଂସ୍କାର, ଜ୍ଞାନକୌଶଳ ଓ ଆଧ୍ୟାତ୍ମିକତାର ଉତ୍କର୍ଷ ସାଧନା ପାଇଁ ବ୍ରତୀ ରହୁଥିଲେ।

ବୌଦ୍ଧ ଯୁଗରେ ନାଳନ୍ଦା ବିଶ୍ୱବିଦ୍ୟାଳୟ ବିଶ୍ୱ ପ୍ରସିଦ୍ଧି ଅର୍ଜନ କରିଥିଲା। ବିଶ୍ୱର ବିଭିନ୍ନ ଅଞ୍ଚଳରୁ ଛାତ୍ରମାନେ ଏଠାରେ ଅଧ୍ୟୟନ କରୁଥିଲେ। ଗଣିତ ଶାସ୍ତ୍ର, ଜ୍ୟୋତିର୍ବିଜ୍ଞାନ, ଆୟୁର୍ବେଦ, ଶଲ୍ୟ ଚିକିତ୍ସା, ଭୂଗୋଳ, ଯୋଗ ଦର୍ଶନ, ତର୍କଶାସ୍ତ୍ର ଆଦି ବିଭିନ୍ନ କ୍ଷେତ୍ରରେ ଭାରତ ଉତ୍କର୍ଷ ସାଧନ କରିଥିଲା। ପ୍ରାଥମିକ ସ୍ତରରେ ସୁଦୃଢ଼ ଭିତ୍ତିଭୂମି ନଥିଲେ ବିଶ୍ୱବିଦ୍ୟାଳୟସ୍ତରୀୟ ସଫଳତା ସମ୍ଭବ ନୁହେଁ। ପ୍ରାଚୀନ ଭାରତର ଏହି ଶିକ୍ଷା ବ୍ୟବସ୍ଥା ହଜାର ବର୍ଷରୁ ଊର୍ଦ୍ଧ୍ୱ କାଳ ବ୍ୟାପି ପରାଧୀନତାର ଚାପରେ ଭୁଶୁଡ଼ି ପଡ଼ିଲା। ତା' ସହ ଆମ ସଭ୍ୟତା ଓ ସଂସ୍କୃତିରେ ଅପସଂସ୍କୃତି ଓ ବିକୃତିର ବୀଜମାନ ପଶି ଆସିଲା। ସ୍ୱାଧୀନତା ପରେ ଭାରତର ପୁନର୍ଗଠନ ପ୍ରକ୍ରିୟାରେ ସର୍ବପ୍ରଥମେ ଶିକ୍ଷା ଉପରେ ଗୁରୁତ୍ୱ ଦିଆଗଲା। ପ୍ରାଥମିକ ଶିକ୍ଷାଠାରୁ ବିଶ୍ୱବିଦ୍ୟାଳୟ ଶିକ୍ଷା ପର୍ଯ୍ୟନ୍ତ ସବୁଠି ସଂସ୍କାର ଆଣିବାର

ପ୍ରୟାସ କରାଗଲା । ମହାତ୍ମା ଗାନ୍ଧି କହୁଥିଲେ, ସ୍ୱାଧୀନତା ପରେ ଗାଁ ଗାଁରେ ସ୍କୁଲମାନ ସ୍ଥାପନ ହୋଇଯିବ । ଭାରତୀୟ ସଂସ୍କୃତି ତା'ର ପାଞ୍ଚଲକ୍ଷ ଗାଁରେ ବଞ୍ଚି ରହିବ । ସେ ସଂସ୍କୃତିକୁ ଅବିକୃତ ରଖିବା ପାଇଁ ପ୍ରଥମେ ସେମାନଙ୍କୁ ଶିକ୍ଷିତ କରିବାକୁ ପଡ଼ିବ ।

ସ୍ୱାଧୀନତା ପରେ ଦେଶରେ ଶିକ୍ଷା ବ୍ୟବସ୍ଥାରେ ଅଭୂତପୂର୍ବ ଉନ୍ନତି ସାଧିତ ହେଲା । ୧୯୪୭ ମସିହା ଓଡ଼ିଶାର ଛଅ ହଜାର ଶିକ୍ଷାନୁଷ୍ଠାନ ଏବେ ୪୨ ହଜାରରେ ପହଞ୍ଚିଲାଣି । ୧୦୬ଟି ହାଇସ୍କୁଲର ସଂଖ୍ୟା ଏବେ ସାତ ହଜାର । ମାତ୍ର ପାଞ୍ଚଟି କଲେଜ ଏବେ ୨୦୯୫ ସଂଖ୍ୟାରେ ଏବଂ ଆଦୌ ବିଶ୍ୱବିଦ୍ୟାଳୟ ନଥିବା ଓଡ଼ିଶାରେ ଏବେ ୧୧ଟି ବିଶ୍ୱବିଦ୍ୟାଳୟ ଖୋଲି ସାରିଲାଣି । କିନ୍ତୁ ମହାତ୍ମା ଗାନ୍ଧିଙ୍କ ସ୍ୱପ୍ନ ସାକାର ହେଲା ନାହିଁ । ଏବେ ସୁଦ୍ଧା ଓଡ଼ିଶାର ମୋଟ ୧୨,୮୦୦ ଗାଁରେ ସ୍କୁଲ ନାହିଁ । ଆଦିବାସୀ ଅଧ୍ୟୁଷିତ ଅବିଭକ୍ତ କୋରାପୁଟ ଜିଲ୍ଲାରେ ପ୍ରାଥମିକ ଶିକ୍ଷା ବ୍ୟବସ୍ଥା ସବୁଠାରୁ ଦୟନୀୟ । ଉପସ୍ଥାନ ଅଭାବରୁ ସେ ଅଞ୍ଚଳରେ ୧୬୫ଟି ସ୍କୁଲକୁ ବନ୍ଦ କରି ଦିଆଯାଇଛି ।

ଭାରତର ଶିକ୍ଷା ନୀତି ଅନୁସାରେ ଦୁଇଟି ପ୍ରାଥମିକ ବିଦ୍ୟାଳୟକୁ ଗୋଟିଏ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ରହିବା କଥା, କିନ୍ତୁ ଆମର ୪୬,୦୦୦ ପ୍ରାଥମିକ ବିଦ୍ୟାଳୟକୁ ମାତ୍ର ୧୧,୦୦୦ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଅଛି । ସରକାରୀ ବିଦ୍ୟାଳୟମାନଙ୍କରେ ଗୁଣାତ୍ମକ ଶିକ୍ଷାର ଅଭାବ ହେତୁ ଅଭିଭାବକମାନେ ବିକଳ୍ପ ସ୍କୁଲ ଖୋଜନ୍ତି, ଏପରିକି ସରକାରୀ ସ୍କୁଲର କାର୍ଯ୍ୟରତ ଶିକ୍ଷକମାନେ ସୁଦ୍ଧା ନିଜ ପିଲାମାନଙ୍କୁ ଘରୋଇ ସ୍କୁଲରେ ପଢ଼ାଇ ଥାଆନ୍ତି । ଏହି ପରିସ୍ଥିତିର ସୁଯୋଗ ନେଇ ସମାନ୍ତରାଳ ଭାବରେ ଇଂରାଜୀ ମାଧ୍ୟମ ସ୍କୁଲ, ସରସ୍ୱତୀ ଶିଶୁ ବିଦ୍ୟାମନ୍ଦିର, ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷା କେନ୍ଦ୍ର, ଚିନ୍ମୟ ବିଦ୍ୟାଳୟ ପରି ଅନେକ ବିଦ୍ୟାଳୟ ବେସରକାରୀ ପ୍ରଚେଷ୍ଟାରେ ଗଢ଼ି ଉଠୁଛି । କହିବା ବାହୁଲ୍ୟ, ଗୁଣାତ୍ମକ ଶିକ୍ଷା ମିଳୁ କି ନମିଳୁ, ପରୀକ୍ଷା ଅଭିମୁଖୀ ପ୍ରତିଯୋଗିତାମୂଳକ ଶିକ୍ଷା ପାଇଁ ଏଠି ପର୍ଯ୍ୟାପ୍ତ ସୁବିଧା ଅଛି । ଏହି ସ୍କୁଲରେ ପଢୁଥିବା ଓ ପାସ୍ କରିଥିବା ଛାତ୍ରଛାତ୍ରୀ ସରକାରୀ ସ୍କୁଲରେ ପଢୁଥିବା ଛାତ୍ରଛାତ୍ରୀମାନଙ୍କୁ ନ୍ୟୂନ ଦୃଷ୍ଟିରେ ଦେଖନ୍ତି । ଏପରିକି ଅଭିଭାବକମାନେ ମଧ୍ୟ ସରକାରୀ ସ୍କୁଲରେ ପିଲାଙ୍କୁ ପଢ଼ାଇବା ସମ୍ମାନ ହାନିଜନକ ମନେ କରନ୍ତି ।

ଏହି ପ୍ରକାର ପ୍ରାଥମିକ ଶିକ୍ଷା ବ୍ୟବସ୍ଥାରେ ଖୁବ୍ କମ୍ ପ୍ରତିଶତ ପିଲା ଭଲ ନମ୍ବର ରଖି ଭଲ ଅନୁଷ୍ଠାନମାନଙ୍କରେ ଉଚ୍ଚଶିକ୍ଷା ପାଇଥାନ୍ତି । ପ୍ରତିଯୋଗିତାମୂଳକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଭଲ ପଦପଦବୀରେ ରହନ୍ତି । ଅନ୍ୟମାନେ ଦରପାଠୁଆ, ଅଧାପାଠୁଆ ଅଥବା ଅପାଠୁଆ ହୋଇ ରହନ୍ତି । ପଞ୍ଚମ ଶ୍ରେଣୀରେ ପଢୁଥିବା ୪୪ ଭାଗ ପିଲା

ଦ୍ୱିତୀୟ ଶ୍ରେଣୀର ପାଠ ପଢ଼ି ପାରନ୍ତି ନାହିଁ। ୩୨ ଭାଗ ପିଲା ମିଶାଣ, ଫେଡ଼ାଣ କରି ପାରନ୍ତି ନାହିଁ। ୭ ଭାଗ ପିଲା ସ୍କୁଲ ପିଣ୍ଡା ମାଡ଼ନ୍ତି ନାହିଁ। ଫଳରେ ଦେଶର ଅର୍ଥନୀତି ଅସନ୍ତୁଳିତ ହୁଏ। ଏକ ପ୍ରତିଶତ ପଦସ୍ଥ ଅଧିକାରୀଙ୍କ ହାତରେ ଅର୍ଥ ଓ କ୍ଷମତା କେନ୍ଦ୍ରୀଭୂତ ହୁଏ। ପଢ଼ିବା ଓ ବଢ଼ିବା ପାଇଁ ସମସ୍ତଙ୍କୁ ସମାନ ଭାବରେ ଅଧିକାର ଆମ ସମ୍ବିଧାନ ଦେଇଛି, କିନ୍ତୁ ପ୍ରାଥମିକ ବିଦ୍ୟାଳୟ ସ୍ତରରୁ ବିଭେଦ ଆରମ୍ଭ ହୋଇଯାଏ। ଫିନ୍‌ଫିନ୍ ସଫା ସାର୍ଟପ୍ୟାଣ୍ଟ, ବୁଟ୍ ଟାଇ ସହିତ ପାଣି ବୋତଲ ଝୁଲେଇ କିଛି ଛାତ୍ରଛାତ୍ରୀ ଏସି ରୁମ୍‌ରେ ପାଠ ପଢୁଥିବା ବେଳେ ବହୁ ସଂଖ୍ୟକ ଛାତ୍ରଛାତ୍ରୀ ମଇଳା ମକଦ୍ଦରା ପିନ୍ଧି ଛିଣ୍ଡା ବହି ବସ୍ତାନୀ ଧରି ଟଙ୍କିକିଆ ଚାଉଳର ଭାତ, ପାଣିଆ ଡାଲି ଖାଇ କୋଉଠି ଚାଳ ଛପର ତ ପୁଣି କୋଉଠି ଖୋଲା ଛାତ ତଳେ ବି ପଢ଼ନ୍ତି। ଓଡ଼ିଶାର ୪୦ ଭାଗ ସ୍କୁଲରେ ପକ୍କା ଘର ନାହିଁ। ସାତ ଶହ ସ୍କୁଲରେ ଶ୍ରେଣୀଗୃହ ନାହିଁ। ପିଇବା ପାଣି ଓ ଶୌଚାଳୟ ନଥିବା ଜଣେ ଶିକ୍ଷକ ତିନି ତିନିଟା ଶ୍ରେଣୀଗୃହ ସମ୍ଭାଳି ଥିବା ସ୍କୁଲ ମଧ ରହିଛି। ଗଣ ଶିକ୍ଷକ, ଚୁକ୍ତିଭିତ୍ତିକ ଶିକ୍ଷକ, ଶିକ୍ଷା ସହାୟକ, ନିୟମିତ ଶିକ୍ଷକ ଆଦି ବିଭିନ୍ନ ପ୍ରଜାତିର ଶିକ୍ଷକ ବର୍ଷସାରା ଶିକ୍ଷାଦାନ ବ୍ୟତୀତ ସରକାରଙ୍କ ବିଭିନ୍ନ ଯୋଜନାକୁ ଫଳବତୀ କରିବା କାର୍ଯ୍ୟରେ ନିୟୋଗ ରହନ୍ତି। ବର୍ଷର ଅଧିକାଂଶ ସମୟରେ ଦରମା ଗଣ୍ଡାକ ପାଇଁ ପିଏମ୍‌ଜି ଛକରେ ଧାରଣାରେ ବସନ୍ତି। ପୁଲିସର ନିର୍ଯାତନା ସହିବାକୁ ପଡ଼େ। ସରକାରଙ୍କ ତୁଚ୍ଛ ତାଚ୍ଛଲ୍ୟକୁ, ଧମକଚମକକୁ ହଜମ କରିବାକୁ ପଡ଼େ। ଦାବି ପୂରଣ ହେଉ କି ନହେଉ, ଶୂନ୍ୟହସ୍ତରେ ପୁଣି ଫେରି ଆସନ୍ତି ସେଇ ବିଦ୍ୟାଳୟ ପରିସରକୁ ଯେଉଁଠି ଛାତ୍ରଛାତ୍ରୀ ନିଃସ୍ୱ, ଅଭିଭାବକ ନିଃସ୍ୱ, ଶିକ୍ଷକମାନେ ବି ନିଃସ୍ୱ। ଅଥଚ ପ୍ରାଥମିକ ଶିକ୍ଷା ତଦାରଖ ଦାୟିତ୍ୱରେ ଥିବା ଅଧିକାରୀମାନଙ୍କ ଶ୍ୟେନଦୃଷ୍ଟି ଥାଏ ଏମାନଙ୍କ ଉପରେ।

ଏବେ ଏହି ନିଃସ୍ୱ ବିଦ୍ୟାଳୟମାନଙ୍କରେ ମାତୃଭାଷା ମାଧ୍ୟମରେ ଶିକ୍ଷା ନିଃସ୍ୱମାନଙ୍କୁ ଆହୁରି ନିଃସ୍ୱତର କରି ଦେଇଛି। ଓଡ଼ିଆ ଭାଷା ବୁଝୁ ନଥିବା ଆଦିବାସୀ ସମ୍ପ୍ରଦାୟର ଛାତ୍ରଛାତ୍ରୀମାନଙ୍କୁ ତାଙ୍କ ଭାଷାରେ ଶିକ୍ଷା ଦେବା ସମସ୍ତଙ୍କ ପାଇଁ ମୁଣ୍ଡବ୍ୟଥାର କାରଣ ହୋଇଛି। ବୁଦ୍ଧଦେବ ଲୋକଙ୍କୁ ନୀତିଶିକ୍ଷା ଦେବା ପାଇଁ ସଂସ୍କୃତ ଭାଷା, ଭାବ ନିବନ୍ଧସବୁକୁ ଅନୁବାଦ କରି ପାଲି ଭାଷା ବ୍ୟବହାର କରୁଥିଲେ। ଏହାଦ୍ୱାରା ଧର୍ମର ପ୍ରଚାର ପ୍ରସାର ସହଜ ହେଲା। କିନ୍ତୁ ସେ କାଳର ସମ୍ଭ୍ରାନ୍ତ ଭାଷା, ସଂସ୍କୃତ ଭାଷାଠାରୁ ଦୂରକୁ ଚାଲିଯିବା ଦ୍ୱାରା ସେମାନେ ସଂସ୍କାରିତ ହୋଇ ପାରିଲେ ନାହିଁ। ସେଇ ପାଲି, ପ୍ରାକୃତ ଅପଭ୍ରଂଶ ମଧ୍ୟରେ ରହିଗଲେ।

ଯେତେଦିନ ପର୍ଯ୍ୟନ୍ତ ଉଚ୍ଚ ବର୍ଗର ପିଲାମାନେ ମାତୃଭାଷା ବଦଳରେ ଇଂରାଜୀ ଭାଷାରେ ପ୍ରାଥମିକ ଶିକ୍ଷା ଆରମ୍ଭ କରୁଥିଲେ, ସେତେବେଳେ ଭାଷା ବୁଡ଼ିବା ଚିନ୍ତା କାହାରି ନଥିଲା । ସେମାନେ ଇଂରାଜୀ ପାଠ ପଢ଼ି ହାକିମ ହୋଇ ନିଃସ୍ୱମାନଙ୍କୁ ଶାସନ କରୁଥିଲେ । କିନ୍ତୁ ଏବେ ନିଃସ୍ୱମାନେ ଇଂରାଜୀ ଭାଷା ଶିଖିବା ଆରମ୍ଭ କଲା ବେଳକୁ ଓଡ଼ିଆ ଭାଷା ବୁଡ଼ିବା ଚିନ୍ତା ପ୍ରବଳରୁ ପ୍ରବଳତର ହେଉଛି ।

ଏବେ ବିଶ୍ୱବିଦ୍ୟାଳୟମାନଙ୍କ କଥା । ଆମ ରାଜ୍ୟରେ ୧୧ଟି ବିଶ୍ୱବିଦ୍ୟାଳୟ ରହିଛି; ସମଗ୍ର ଦେଶରେ ଅଛି ୪୧୯ଟି ବିଶ୍ୱବିଦ୍ୟାଳୟ । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଏହି ସଂଖ୍ୟାକୁ ଆସନ୍ତା ଦଶବର୍ଷ ମଧ୍ୟରେ ୧୫୦୦କୁ ବୃଦ୍ଧି କରିବାର ଯୋଜନା ରଖିଛନ୍ତି । ଓଡ଼ିଶାର ଭାଗରେ ପଡ଼ିବ ୭୦ଟି ବିଶ୍ୱବିଦ୍ୟାଳୟ । ଗୋଟିଏ ବିଶ୍ୱବିଦ୍ୟାଳୟ ପାଇଁ ୧୦୦୦ ଏକର ଭୂମି ସହ ପର୍ଯ୍ୟାପ୍ତ କୋଠାବାଡ଼ି ଓ କୋଟି କୋଟି ଟଙ୍କାର ଆବଶ୍ୟକତା ରହିଛି । ଜଣେ ୟୁଜିସି ଅଧ୍ୟାପକ/ ଅଧ୍ୟାପିକାଙ୍କ ଦରମା ସହ ପ୍ରାଥମିକ ବିଦ୍ୟାଳୟର ୨୦ ଜଣ ଶିକ୍ଷା ସହାୟକ ଓ ୩୦ ଜଣ ଗଣ ଶିକ୍ଷକଙ୍କ ଦରମା ସମାନ । ଗୋଟିଏ ଦିନରେ ନିଃସ୍ୱ ବିଦ୍ୟାଳୟର ଶିକ୍ଷକଟିଏ ଯେତିକି କ୍ଲାସ୍ ନିଅନ୍ତି, ବିଶ୍ୱବିଦ୍ୟାଳୟର ଅଧ୍ୟାପକଟିଏ ସପ୍ତାହ ସାରା ନିଅନ୍ତି କି ନା, ସନ୍ଦେହ । ଆସନ୍ତା ୧୦ବର୍ଷ ମଧ୍ୟରେ ଓଡ଼ିଶାରେ ୧୮,୦୦୦ କଲେଜ, ୫୦,୦୦୦ରୁ ଊର୍ଦ୍ଧ୍ୱ ସେକେଣ୍ଡାରୀ ସ୍କୁଲ୍ ୨୪ଟି ନୂଆ ବିଶ୍ୱସ୍ତରୀୟ ବିଦ୍ୟାଳୟର ମଧ୍ୟ ପ୍ରସ୍ତାବନା ରହିଛି । ତେବେ କଥା ଉଠେ, ପ୍ରାଥମିକ ଶିକ୍ଷାକୁ ଶିକ୍ଷାର ଭିତ୍ତିଭୂମି କୁହା ଯାଉଥିବା ବେଳେ, ଏହି ଭିତ୍ତିଭୂମି ଯାହାର ଯେତେ ସୁଦୃଢ଼, ତା'ର ଉଚ୍ଚତର ଜ୍ଞାନ ଆହରଣ ସେତେ ସହଜ ଓ ସଫଳ ବୋଲି ଗ୍ରହଣ କରା ଯାଉଥିବା ଏହି ନିଃସ୍ୱ ବିଦ୍ୟାଳୟମାନେ ଯେତେବେଳେ ବିଭିନ୍ନ ସମସ୍ୟା ଭିତରେ ଛନ୍ଦି ହୋଇ ପଡ଼ିଛନ୍ତି, ତା' ଉପରେ ଦଣ୍ଡାୟମାନ ହେବାକୁ ଥିବା ବିଶ୍ୱବିଦ୍ୟାଳୟମାନେ ଲକ୍ଷ୍ୟ ହାସଲରେ କେତେ ସଫଳ ହେବେ, ତାହା ବିଜ୍ଞ ଜନମାନେ ହିଁ ଆକଳନ କରିବେ ।



# ଶବ ସାଧନା ଓ ସ୍ମୃତି ଶ୍ରଦ୍ଧାଞ୍ଜଳି

ଅଘୋରପନ୍ଥୀମାନେ ଶବ ସାଧନା କରନ୍ତି । ସାଧକ ଶବକୁ ତଳମୁହାଁ କରି ତା' ପିଠି ଉପରେ ବସି ମନ୍ତ୍ର ଉଚ୍ଚାରଣ କରେ । ମନ୍ତ୍ର ପ୍ରଭାବରେ ଶବକୁ କେବଳ ଜୀବନ୍ୟାସ ଦେଇଦେଲେ ସାଧନାରେ ସିଦ୍ଧି ଆସେ ନାହିଁ । ଶବଟିର ମୁଖ ଯେ ପର୍ଯ୍ୟନ୍ତ ବୁଲି ଆସି ସାଧକର ମୁହାଁମୁହିଁ ନ ହୋଇଛି, ସେଯାଏଁ ସାଧନା ଫଳବତୀ ହୁଏନାହିଁ । ଶବର ମୁଖ ଥରେ ବୁଲି ଆସି ସାଧକର ମୁହାଁମୁହିଁ ହେଲେ ସାଧକ ଆସାଧ୍ୟ ସାଧନ କରିପାରେ ବୋଲି ବିଶ୍ୱାସ ରହିଛି । ଏ ବିଶ୍ୱାସ ଭିତ୍ତିହୀନ ହୋଇପାରେ, କିନ୍ତୁ ଏ ଭିତ୍ତିହୀନ ବିଶ୍ୱାସଟି ସୂକ୍ଷ୍ମ ସ୍ତରରେ ଆମକୁ ଆଉ ଗୋଟାଏ କଥା ଚିନ୍ତା କରିବାକୁ ପ୍ରେରଣା ଦେଇଥାଏ । ଶବଟାଏ ଭୂତ; ଅତୀତର ପ୍ରତୀକ । ଅତୀତକୁ ଉପଯୋଗ କରିବାକୁ ହେଲେ ଆମେ ଅତୀତର ମୋହରେ ହଜିଯିବା ପରିବର୍ତ୍ତେ ତାକୁ ଟାଣି ଓଟାରି ଆଣି ବର୍ତ୍ତମାନ ସହ ସାମିଲ କରିବାକୁ ହେବ । ଯେମିତିକି ଆମେ ଡାକିଲେ ସେ 'ଓ' କରିବ । ଆମ ସମସ୍ୟା ସମାଧାନର ସୂତ୍ର ଆମେ ସେଇଠୁ ଖୋଜି ପାଇବା । ସେ ହେବ ଆମର ସଙ୍କଟ ମୋଚକ । କିନ୍ତୁ ଅତୀତର ଜୟଗାନ କରିବା ଛଳରେ ଆମେ ଯଦି ଆମ ସ୍ୱାର୍ଥର ଜୟଗାନ କରୁ, ଆପଣାକୁ ବିଜ୍ଞପିତ କରିବାର ପ୍ରଚେଷ୍ଟା କରୁ, ଆମ ମିଛ ଅହମିକାର ଅନ୍ଧଗଳି ଭିତରେ ଆମର ସବୁ ମହତ କାର୍ଯ୍ୟ ଅକାରଣ ହୋଇଯାଏ । ମହାପୁରୁଷଙ୍କୁ ପରମ ପୁରୁଷ କରିବାର ଆମ ଯୋଜନା ଆମକୁ ଅଧମ ପୁରୁଷ କରି ସଜେଇ ଦିଏ । ପୂଜ୍ୟପୂଜାରେ ବ୍ୟତିକ୍ରମ ଘଟେ ।

ଏକଥା ସତ ଯେ ଖୁବ୍ କମ୍ ପ୍ରତିଭାଧାରୀଙ୍କୁ ସେମାନଙ୍କ ଜୀବଦ୍ଦଶାରେ ଉପଯୁକ୍ତ ମର୍ଯ୍ୟାଦା ମିଳିଥାଏ । ପ୍ରତିଭାଦୈନ୍ୟ ଅଥଚ ଉଚ୍ଚାଭିଳାଷୀ ବ୍ୟକ୍ତିମାନେ କଳେବଳେ କୌଶଳେ ସମ୍ମାନ ସମ୍ବର୍ଦ୍ଧନା ଲୁଣ୍ଠନ କରୁଥିବା ବେଳେ ସ୍ୱାଭିମାନୀ ସୃଜନଶୀଳ ପ୍ରତିଭାମାନେ କୋଣଠେସା ହୋଇ ରହି ଯାଇଥାନ୍ତି । ସେମାନେ ଯେହେତୁ ସମ୍ମାନ ସମ୍ବର୍ଦ୍ଧନା ପଛରେ ଧାଆଁନ୍ତି ନାହିଁ କି ଆତ୍ମପ୍ରଚାର କରନ୍ତି ନାହିଁ, ଏହି ମହାମନୀଷୀମାନଙ୍କୁ ଉପଯୁକ୍ତ ମର୍ଯ୍ୟାଦା ଦେବା ଆମର ନୈତିକ ଦାୟିତ୍ୱ । ସଚରାଚର ଏହା ହୁଏନାହିଁ । ଯିଏ ପୂଜ୍ୟ, ସେମାନେ ଅପୂଜ୍ୟ ହୋଇ ରହି ଯାଆନ୍ତି; ଅପୂଜ୍ୟମାନେ ପୂଜା ପାଆନ୍ତି ।

ସମାଜରେ ଏହିପରି ବ୍ୟତିକ୍ରମ ନହେଉ ବୋଲି ଆମ ଶାସ୍ତ୍ର ସହିଂତାକାରମାନେ ଆମକୁ ସତର୍କ ବାଣୀ ଶୁଣାଇ ଥିଲେ- 'ଅପୂଜ୍ୟ ପୂଜ୍ୟତେ ଯତ୍ର/ ପୂଜ୍ୟ ଯତ୍ର ନ ପୂଜ୍ୟତେ/ ତ୍ରିଣି ତତ୍ର ପ୍ରବିଶ୍ୟନ୍ତି/ ଦାରିଦ୍ର୍ୟଂ ମରଣଂ ଭୟ।'

ଏସବୁ ବାଦ୍ ସବୁଠାରୁ ଯେଉଁ ବଡ଼ କ୍ଷତିଟି ହୁଏ, ତାହା ହେଉଛି- ସାଂସ୍କୃତିକ ସଙ୍କଟ। ଗୋଟିଏ ଜାତି ଧନରେ ଦରିଦ୍ର ହୋଇ ବଞ୍ଚିଯାଇ ପାରେ। ଭୟ ବିଜଡ଼ିତ ହୋଇ ଅଥବା ମୃତ୍ୟୁକୁ ସାମ୍ନା କରି ବି ଜାତିଟିଏ ତିଷ୍ଠି ଯାଇପାରେ, କିନ୍ତୁ ତା'ର ସାଂସ୍କୃତିକ ଚେତନାରେ ସଙ୍କଟ ସୃଷ୍ଟି ହେଲେ ଜାତିଟି ରସାତଳଗାମୀ ହେବା ପାଇଁ ବେଶୀ ସମୟ ଲାଗେନାହିଁ। ଏହି ସାଂସ୍କୃତିକ ଚେତନାର ପୁନର୍ଜାଗରଣ କେବଳ ସଂସ୍କୃତି ପୁରୁଷଙ୍କ ଦ୍ୱାରା ସମ୍ଭବ ହୋଇଥାଏ। ସେମାନଙ୍କ ଚିନ୍ତା, ଚେତନା, ପୁରୋଦୃଷ୍ଟି, ଆଦର୍ଶ, କର୍ମ କରିବାର ଶୈଳୀକୁ ଆପଣେଇ ନେଲେ ଆମେ ଅପରାଜେୟ ହୋଇଯିବା।

ସମଗ୍ର ବିଶ୍ୱରେ ଆମେ ଅଙ୍ଗେ ନିଭେଇଛୁ ପୂଜ୍ୟପୂଜାର ବ୍ୟତିକ୍ରମ। ଜୀବଦ୍ଦଶାରେ କେବଳ ନୁହେଁ, ମୃତ୍ୟୁ ପରେ ବି ମଣିଷର ଜିଘାଂସାରୁ ଏମାନେ ମୁକ୍ତ ହୋଇ ନାହାନ୍ତି। ଷ୍ଟାଲିନ୍‌ଙ୍କୁ କବର ଭିତରୁ ବାହାର କରି ଅପମାନିତ କରା ଯାଇଥିଲା। ଗାଓ ଚୈନ୍ ଓ ଗାଓ କିଆଙ୍ଗ୍ ନାମକ ଦୁଇଭାଇ ମାଓ ସେ ତୁଙ୍ଗ୍‌ଙ୍କର ମୂର୍ତ୍ତିଟିଏ ତିଆରି କରିଥିଲେ ଯେଉଁଥିରେ ମାଓ ନିଜେ ତାଙ୍କ ହାତରେ ନିଜେ କଟାମୁଣ୍ଡ ଧରି କ୍ଷମା ମାଗୁ ଥିବାର ଭାବ ପ୍ରକାଶ ପାଉଥିଲା। ଏ ଦୁଇ ଭାଇଙ୍କ ପିତାଙ୍କୁ ଚୀନ୍‌ର ସାଂସ୍କୃତିକ୍ ବିପ୍ଳବ ବେଳେ ମାଓ ସେ ତୁଙ୍ଗ୍ ହତ୍ୟା କରିଥିଲେ। ପରେ ଅବଶ୍ୟ ଚୀନ୍ ସରକାର ଏ ମୂର୍ତ୍ତିଟିକୁ ନିଷିଦ୍ଧ କରିଥିଲେ। ଆଫଗାନିସ୍ଥାନରେ ବିଶାଳ ବୁଦ୍ଧ ମୂର୍ତ୍ତିକୁ ତାଲିବାନ୍‌ମାନେ ଧ୍ୱଂସ କରିବା ତ ଏବକାର ଘଟଣା।

ଏସବୁ ତିକ୍ତ ମଧୁର ସ୍ମୃତି ସତ୍ତ୍ୱେ ସଂସ୍କୃତି ସଚେତନ ମଣିଷ ପାଉଁଶ ତଳୁ ବି ଖୋଜିଛି ଆମର ଐତିହ୍ୟ, ଆମ ସ୍ୱାଭିମାନ, ଆମ ଗୌରବ। ସମାଜ ଗଠନରେ ଏତେ ଟିକେ ଅବଦାନ ଥିବା ମହାମନୀଷୀଙ୍କୁ ଖୋଜି ଲୋଡ଼ି ମଣିଷ ତା'ର କୃତଜ୍ଞତା ଜଣାଏ। ଏ ଆବେଗ ପ୍ରବଣତା ବେଳେବେଳେ ଏତେ ମାତ୍ରାରେ ହୋଇପଡ଼େ ଯେ ମୂର୍ତ୍ତି ପୂଜାରେ ବିଶ୍ୱାସ କରୁ ନଥିବା ବୁଦ୍ଧଦେବଙ୍କ ମୂର୍ତ୍ତି ନିର୍ମାଣ କରି ତାଙ୍କୁ ପୂଜାର୍ଚ୍ଚନା କରିବା ଭଳି ଭୁଲ୍ କରି ବସେ।

ଦୁଃଖ, ଦାରିଦ୍ର୍ୟ, ନିର୍ଯାତନା, ଲାଞ୍ଛନା ଭିତରେ ଶୈଶବ କାଟିଥିବା, ଓଡ଼ିଶାର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ପ୍ରେକ୍ଷାପଟକୁ ଆଶାତୀତ ଭାବେ ଆନ୍ଦୋଳିତ କରିଥିବା ଓ ପରିଣତ ବୟସରେ ପୁନଶ୍ଚ ଦୁଃଖ, ଯନ୍ତ୍ରଣା, ଲାଞ୍ଛନା ଭିତରେ ସଢ଼ିଥିବା

ଫକୀର ମୋହନ ସେନାପତିଙ୍କର ଏ ଜାତି ଉପରେ ଭରସା ଥିଲା କି ନଥିଲା କେଜାଣି, ସେ ନିଜେ ବଞ୍ଚିଥିବା ବେଳେ ତାଙ୍କର ହତା ଭିତରେ ଆବକ୍ଷ ମୂର୍ତ୍ତିଟିଏ କରି ବସାଇ ଥିଲେ।

ଏ ଜାତି କିନ୍ତୁ ତାଙ୍କ ଆଶଙ୍କାକୁ ସତ୍ୟରେ ପରିଣତ ହେବାକୁ ଦେଇନାହିଁ। ତାଙ୍କ ସୃଷ୍ଟି ସମ୍ଭାରକୁ, ତାଙ୍କ ବ୍ୟକ୍ତିତ୍ୱକୁ ଯଥେଷ୍ଟ ସମ୍ମାନ ଦେଇଛି। ଏପରିକି ସମଗ୍ର ଭାରତବର୍ଷରେ ତଳେ ପଡ଼ିଥିବା ଶୋଷିତ, ଦଳିତ, ନିଷ୍ପେଷିତମାନଙ୍କୁ ଫକୀର ମୋହନ ପ୍ରଥମ କରି କିପରି ସାହିତ୍ୟରେ ସ୍ଥାନ ଦେଲେ, ତାହା ମଧ୍ୟ ସାବ୍ୟସ୍ତ କରି ସାରିଛି। ତାଙ୍କ ନାମରେ ରାଜ୍ୟସାରା ସରକାରୀ ଓ ବେସରକାରୀ ଉଦ୍ୟମରେ ଅଜସ୍ର ଉତ୍ସବ ଅନୁଷ୍ଠାନ ଅନୁଷ୍ଠିତ ହେଉଛି। ଆମ ରାଜ୍ୟରେ ତାଙ୍କ ନାମରେ ନାମିତ ବିଶ୍ୱବିଦ୍ୟାଳୟଟିଏ ମଧ୍ୟ ରହିଛି। ବିଦ୍ୟାଳୟ ସ୍ତର ପାଖରୁ ବିଶ୍ୱବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ତାଙ୍କ ରଚିତ ଗଳ୍ପ, ଉପନ୍ୟାସ, କାବ୍ୟ କବିତା ଆଦିକୁ ପାଠ୍ୟକ୍ରମ ରୂପେ ଗ୍ରହଣ କରାଯାଇଛି।

ଏ ବର୍ଷ କିନ୍ତୁ ଅଭିନବ ଉପାୟରେ ତାଙ୍କୁ ସମ୍ମାନ ପ୍ରଦର୍ଶନ କରାଯାଇଛି। ତାଙ୍କର ୧୦୦ ବର୍ଷ ମୃତ୍ୟୁବାର୍ଷିକୀ ପୂର୍ତ୍ତି ଉପଲକ୍ଷେ ରାଜ୍ୟ ସରକାରଙ୍କ ସଂସ୍କୃତି ବିଭାଗ ଉତ୍ସବ ପାଳନ କରୁଛନ୍ତି। ଫକୀର ମୋହନଙ୍କ ପୂର୍ବପୁରୁଷ କେନ୍ଦ୍ରାପଡ଼ା ଅଧିବାସୀ ଥିଲେ। କେନ୍ଦ୍ରାପଡ଼ାର କୋସିଦା/ କୁଶିଦା ଗ୍ରାମର ରାମ ମଲ୍ଲ, ଦାମ ମଲ୍ଲ ଓ ଗୋବିନ୍ଦ ମଲ୍ଲ। ଏ ତିନି ଭାଇଙ୍କ ମଧ୍ୟରୁ ଗୋବିନ୍ଦ ମଲ୍ଲ ଥିଲେ ଜଣେ କୁସ୍ତି କସରତ କରୁଥିବା ପହିଲିମାନ୍। ସେ ମଧ୍ୟ ହନୁ ମଲ୍ଲ ନାମରେ ପରିଚିତ ଥିଲେ। କୌଣସି କାରଣରୁ ସେ କେନ୍ଦ୍ରାପଡ଼ା ପରିତ୍ୟାଗ କରି ବାଲେଶ୍ୱରର ମଲ୍ଲୀକାଶପୁରରେ ବସବାସ କରୁଥିଲେ। ଫକୀର ମୋହନ ତାଙ୍କର ୪ର୍ଥ ପିଢ଼ି। ଫକୀର ମୋହନଙ୍କର କେନ୍ଦ୍ରାପଡ଼ା ପ୍ରତି ଥିବା ଅହେତୁକ ମୋହ ତାଙ୍କ ସାହିତ୍ୟ ସମ୍ଭାର ଭିତରେ ଅନୁଭୂତ ହୁଏ। ସେଇ କେନ୍ଦ୍ରାପଡ଼ା ଅଧିବାସୀମାନେ ତାଙ୍କ ମୃତ୍ୟୁବାର୍ଷିକୀ ପାଳନ ଅବସରରେ ଫକୀର ମୋହନ ସେନାପତିଙ୍କୁ ଆହୁରି ଆପଣାର କରି ନେଇଛନ୍ତି। ତାଙ୍କର ମଶାଲ ଯାତ୍ରା ପ୍ରଥମ ବାହାରିଛି କେନ୍ଦ୍ରାପଡ଼ାରୁ। ଏଥିପାଇଁ ରାଜ୍ୟ ସାହିତ୍ୟ ଏକାଡେମୀ ସଚିବ ଶ୍ରୀମତୀ ଜୟନ୍ତୀ ରଥଙ୍କ ସହ ରାଜ୍ୟ ସାହିତ୍ୟ ଏକାଡେମୀର କେନ୍ଦ୍ରାପଡ଼ା ଜିଲ୍ଲା ସଦସ୍ୟ ତଥା ସୁସାହିତ୍ୟିକ ବାସୁଦେବ ଦାସଙ୍କ ପ୍ରଚେଷ୍ଟା ସହ ସମଗ୍ର ଜିଲ୍ଲା ବାସୀଙ୍କ ପ୍ରଚେଷ୍ଟା ଅଭିନନ୍ଦନୀୟ।

ଅତୀତରେ ଖିଅକୁ ଟାଣି ଓଟାରି ବର୍ତ୍ତମାନ ସହ ସାମିଲ୍ କରାଯାଇଛି। ତେବେ ଏଇ ଅତୀତ ଯଦି ଆମ ସହ ଦୁଃଖସୁଖ ହୁଏ, ଆମ ସହ ଭାବ ବିନିମୟ କରେ, ଆମ

ପ୍ରବଣତା ସହ ମିଶିଯାଏ, ତା'ହେଲେ ଉଦ୍ୟୋକ୍ତାମାନଙ୍କର ଶ୍ରମ ସାର୍ଥକ ହେଲା ବୋଲି ଜାଣିବା। ଫକୀର ମୋହନ ଯେପରି ନିଃସ୍ୱାର୍ଥପର ଭାବରେ ଭଲ ପାଉଥିଲେ ଓଡ଼ିଆଙ୍କୁ, ଓଡ଼ିଆ ଭାଷାକୁ, ଓଡ଼ିଆ ସାହିତ୍ୟକୁ; ଓଡ଼ିଆ ଭାଷାକୁ ପ୍ରତିବେଶୀଙ୍କ ଚକ୍ରାନ୍ତରୁ ରକ୍ଷା କରିବା ପାଇଁ ଦିନ ରାତି ଏକ କରି ପ୍ରହରୀ ସଦୃଶ ସୁରକ୍ଷା ଦେଉଥିଲେ ଓଡ଼ିଆଙ୍କ ଜନ ଜୀବନକୁ, ଜନ ଜୀବନର ଓଠର ଭାଷାକୁ ସାହିତ୍ୟର ମେଘନାଦ ପାଚେରୀ ଭାଙ୍ଗି ସିଂହାସନାରୁଢ଼ କଲେ, ନବ ପିଢ଼ିକୁ ତାହା ଉତ୍ପ୍ରେରିତ କରୁ। ସେମାନେ ବୁଝନ୍ତୁ, ପଞ୍ଚତାରକା ହୋଟେଲରେ ହେଉଥିବା ସାହିତ୍ୟ ଦରବାରୀ ସାହିତ୍ୟ ପରି କାନ୍ଦୁଥିବା ମଣିଷର ଆଖିରୁ ଲୁହ ପୋଛିପାରେ ନାହିଁ। ଭୋକିଲା ଓଠରେ ହସ ଭରିଦିଏ ନାହିଁ। ତା' ମନରେ ଆଶ୍ୱାସନା ଭରିଦିଏ ନାହିଁ, ବଞ୍ଚିବା ପାଇଁ ସଂଘର୍ଷ ଶିଖାଏ ନାହିଁ। ବିଳାସ ପାଇଁ ଯେଉଁ ସାହିତ୍ୟ ସୃଷ୍ଟି ହୁଏ, ତାହା କାଳର ଦନ୍ତାଘାତରୁ ଆଦୌ ତିଷ୍ଠିବ ନାହିଁ। ସାରିଆ- ଭଗିଆ, ରେବତୀ, ସୁନାବୋହୂ, ରାଣ୍ଡିପୁଅ ଅନ୍ତାମାନଙ୍କୁ ଆମ ସାହିତ୍ୟକୁ ଆଣିବାକୁ ହେଲେ ଆମକୁ ଧୂଳି ଧୁସରିତ ହେବାକୁ ହେବ। ସେଇ ଚରିତ୍ରମାନଙ୍କ ସହ ସାମିଲ୍ ହେବାକୁ ହେବ। ତାଙ୍କ ଦୁଃଖରେ ଆମ ଆଖିରୁ ଦୁଇଟୋପା ଲୁହ ନ ଗଡ଼ିବା ପର୍ଯ୍ୟନ୍ତ, ସେମାନେ ଆମ ସାହିତ୍ୟରେ ଜୀବନ୍ତ ଉଭା ହେବେ ନାହିଁ।

ଫକୀର ମୋହନଙ୍କ ମୃତ୍ୟୁ ଶତବାର୍ଷିକୀ କେନ୍ଦ୍ରାପଡ଼ା ଜିଲ୍ଲାରୁ ବାହାରି ଆମକୁ କେବଳ ଫକୀର ମୋହନ ନୁହନ୍ତି, ତାଙ୍କ ପାଞ୍ଚ ପୁରୁଷର କଥା ସ୍ମରଣ କରେଇ ଦେଇଛି। ଏ ଅବସରରେ ଆମେ ଆଶା କରିବା, ଏ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ଅନତିକ୍ରମଣୀୟ ହୋଇ ରହିଥିବା ଛ'ମାଣ ଆଠଗୁଣ୍ଠ ଜମି ପରିବର୍ଦ୍ଧିତ ହେଉ। ରେବତୀ, ରାଣ୍ଡିପୁଅ ଅନ୍ତା, ସୁନାବୋହୂମାନେ ପେଟେଣ୍ଟ୍ ମେଡିସିନ୍ ବ୍ୟବହାର କରି ଫକୀର ମୋହନଙ୍କ କଳ୍ପିତ ସମାଜକୁ ସଂସ୍କାରିତ ଓ ସୁଶୋଭିତ କରନ୍ତୁ।



# ମୂର୍ଚ୍ଛନା ଫାଟିବାର ଯନ୍ତ୍ରଣା

ମହାଭାରତର ଅନ୍ତିମ ପର୍ବ। ବାହୁବଳୀ ଭୀମଙ୍କ ଗଦାଘାତରେ ଜାନୁଭଗ୍ନ ହୋଇଥିଲା ଦୁର୍ଯ୍ୟୋଧନଙ୍କର। ଅସହ୍ୟ ଯନ୍ତ୍ରଣାରେ ମୃତ୍ୟୁକୁ ଅପେକ୍ଷା କରିଥିଲେ ସୁଦ୍ଧା ପାଣ୍ଡବମାନଙ୍କ ପ୍ରତି ପ୍ରବଳ ଜିଂଘାସାର ଅନ୍ତ ହୋଇ ନଥିଲା। ପ୍ରତିଶୋଧ ନେବା ପାଇଁ ତାଙ୍କ ତୀବ୍ର ଇଚ୍ଛାର ବଳୟ ଭେଦ କରି ମୃତ୍ୟୁ ବି ପଶି ପାରୁ ନଥିଲା। ଏତିକି ବେଳେ ଦ୍ରୋଣପୁତ୍ର ଅଶ୍ୱତ୍‌ଥାମା ପଞ୍ଚୁ ପାଣ୍ଡବଙ୍କ ଛିନ୍ନ ମସ୍ତକ ଆଣି ତାଙ୍କ ପାଦ ତଳେ ଅଜାଡ଼ି ଦେବାର ପ୍ରତିଶ୍ରୁତି ଦେଇଥିଲେ। ରାତ୍ରିର ଅନ୍ଧକାର ଭିତରେ ସେ ଚୋରଙ୍କ ପରି ଲୁଚିଛପି ପାଣ୍ଡବ ଶିବିରକୁ ଯାଇଥିଲେ। ପାଞ୍ଚଟି ଛିନ୍ନ ମସ୍ତକ ଆଣି ଭେଟି ଦେଇଥିଲେ ଦୁର୍ଯ୍ୟୋଧନଙ୍କୁ। ଆତ୍ମତୃପ୍ତିର ଅଟ୍ଟହାସ୍ୟ କରି ରଣକ୍ଷେତ୍ରରେ ଜଳୁଥିବା ସ୍ତିମିତ ମଶାଲ ଆଲୋକରେ ମସ୍ତକଗୁଡ଼ିକ ଉପରେ ଆବୃତ ହୋଇଥିବା ବସ୍ତ୍ରକୁ ନିରାବରଣ କରି ଆର୍ତ୍ତନାଦ କରି ଉଠିଥିଲେ ଦୁର୍ଯ୍ୟୋଧନ। ପାଣ୍ଡବ ଭ୍ରମରେ ଯେଉଁମାନଙ୍କର ମସ୍ତକ ଛେଦନ କରି ଆଣିଥିଲା ଅଶ୍ୱତ୍‌ଥାମା, ସେମାନେ ଥିଲେ ଦ୍ରୌପଦୀଙ୍କର ପାଞ୍ଚ ଶିଶୁପୁତ୍ର। ଅଶ୍ୱତ୍‌ଥାମାର ଏ ଅମାନବୀୟ କାର୍ଯ୍ୟକଳାପରେ କ୍ରୋଧିତ ହୋଇ ତାଙ୍କୁ ଘୃଣା ଓ ଧିକ୍କାର କରିଥିଲେ ଦୁର୍ଯ୍ୟୋଧନ। ଯୁଦ୍ଧରେ ସକଳ ଆତ୍ମୀୟଙ୍କୁ ହରାଇ ନିଜେ କ୍ଷତାକ୍ତ ହେବାର ଯନ୍ତ୍ରଣାଠାରୁ ଏ ଯନ୍ତ୍ରଣା ବଳି ପଡ଼ିଥିଲା। ପୀଡ଼ା ଓ ପଶ୍ଚାତ୍ତାପରେ ସେ ଅସ୍ଥିର ହୋଇ ପଡ଼ିଥିଲେ। ତାଙ୍କ ମୂର୍ଚ୍ଛନା ଫାଟି ଯାଇଥିଲା। ସେ ମୃତ୍ୟୁବରଣ କରିଥିଲେ। ମହାଭାରତର ଖଳନାୟକ ଦୁର୍ଯ୍ୟୋଧନଙ୍କର ଏ କରୁଣ ପରିଣତି ତାଙ୍କର ସକଳ ଅନ୍ୟାୟ, ଅନୀତି, ଅନାଚାର, ଦୁରାଚାର ଉପରେ ପାଠକ ଅନ୍ତରରୁ ସମବେଦନାର ସିକ୍ତ ସ୍ପର୍ଶଟିଏ ଲେପି ହୋଇଯାଏ। ଶିଶୁ ମୃତ୍ୟୁଠାରୁ ମର୍ମନ୍ତୁଦ ଘଟଣା ଆଉ ନାହିଁ। କିନ୍ତୁ କାଳ ସେକଥା ବୁଝେନାହିଁ। କେତେବେଳେ କାହା ଦ୍ୱାରରେ ସେ କରାଘାତ କରିଯାଏ, କହିହୁଏ ନାହିଁ। ଦୟାମାୟା ଶବ୍ଦର ଅର୍ଥ ତା' ପାଖରେ ନିରର୍ଥକ। ଆମର ବହୁଚର୍ଚ୍ଚିତ ଟୀକା ଗୋବିନ୍ଦଚନ୍ଦ୍ର ପୁସ୍ତକରେ ରାଣୀ ମୁକ୍ତା ଦେଈ ତାଙ୍କ ପୁତ୍ର ଗୋବିନ୍ଦଚନ୍ଦ୍ରଙ୍କୁ ମୃତ୍ୟୁ ବା କାଳର ନିଷ୍ଠୁରତା ସମ୍ପର୍କରେ ଯାହା କହିଛନ୍ତି, ତାହା ସାର୍ବଜନୀନ ସତ୍ୟଟିଏ। ମୁକ୍ତା ଦେଈଙ୍କ ଭାଷାରେ- 'ସେହି କାଳ ଯମ ବଡ଼ ଦାରୁଣରେ ନ ଜାଣଇ ଦୁଃଖସୁଖ/ ବାଛି ନେବ କଞ୍ଚା ରଖିବ ପାଚିଲା ଦେବ ସେ ଦାରୁଣ ଦୁଃଖ।'

ଏ ଦାରୁଣ ଦୁଃଖ ଦୁର୍ଯ୍ୟୋଧନଙ୍କ ମୂର୍ଦ୍ଧନା ଫାଟି ଯିବାର ଯନ୍ତ୍ରଣା। ଏ ଯନ୍ତ୍ରଣାରୁ ଉତୁରିବା ଏତେ ସହଜ ନୁହେଁ। ବିଶ୍ୱର ଯେ କୌଣସି କୋଣରେ ହେଉ ପଛେ, ଶିଶୁମୃତ୍ୟୁ ସମ୍ବାଦ ଶୁଣିଲେ ହୃଦୟ ଦହି ହୋଇଯାଏ। ନିକଟ ଅତୀତରେ ସିରିଆର ଜଣେ ଶରଣାର୍ଥୀଙ୍କ ଦୁଇବର୍ଷର ପୁତ୍ର ଆଲାନ୍ କୁର୍ଦ୍ଦ୍‌ର ଶବ ସମୁଦ୍ର କୂଳରେ ଯେମିତି ଅସହାୟ ଭାବରେ ପଡ଼ିଥିଲା, ତା' ପାଇଁ ସମଗ୍ର ବିଶ୍ୱ ହୃଦୟରୁ ନିଗିଡ଼ି ଆସିଥିଲା ସହାନୁଭୂତିର ସୁଅ। ସେଇ ଫଟୋଚିତ୍ର ଆନ୍ତର୍ଜାତିକ ଶିରୋନାମା ହୋଇଥିଲା। ଏମିତି ଅନେକ ସମ୍ବାଦ ଅଛି, ଶିରୋନାମା ଅଛି, ଫଟୋଚିତ୍ର ଅଛି। ଶୁଣିବାକୁ, ପଢ଼ିବାକୁ, ଦେଖିବାକୁ ଇଚ୍ଛା ନଥାଇ ବି ଆମକୁ ଶୁଣିବାକୁ, ପଢ଼ିବାକୁ, ଦେଖିବାକୁ ହୋଇଥାଏ। ମୂର୍ଦ୍ଧନା ଫାଟିଯାଉ ପଛେ ଲୁହ ଓ କୋହରେ ବତୁରି ଆମେ ସେ ପରିସ୍ଥିତିର ସାମ୍ନା କରୁ।

ଏମିତି ମୂର୍ଦ୍ଧନା ଫାଟିବା ପରି ଘଟଣା ଘଟିଛି ଭଦ୍ରକ ଜିଲ୍ଲାର ରାଣୀତାଲଠାରେ। ବିଦ୍ୟାଳୟ ଛୁଟି ପରେ କୋମଳମତି ଶିଶୁମାନେ ଫେରୁଥିଲେ ଘରକୁ। ଦୁର୍ଦ୍ଧାନ୍ତ ଯାନ୍ତ୍ରିକ ରାକ୍ଷସ ବା ଟ୍ରକ୍‌ଟିଏ ଦଳି ଚକଟି ଦେଇଗଲା ସେମାନଙ୍କୁ। ପାଞ୍ଚ ଜଣଙ୍କର ଘଟଣା ସ୍ଥଳରେ ମୃତ୍ୟୁ ହେଲା, ଆଉ କେତେଜଣ ମୃତ୍ୟୁ ସହ ସଂଘର୍ଷ କରୁଛନ୍ତି ଡାକ୍ତରଖାନାରେ। ଟ୍ରକ୍ ଡ୍ରାଇଭର ଓ ହେଲ୍‌ପର୍ ଫେରାର୍ ହୋଇଗଲେ। ଏ ବେଦନା ଅସହ୍ୟ ହେଲା ଜନତାଙ୍କୁ। ଦୋଷୀଙ୍କୁ ଦଣ୍ଡ ଓ କ୍ଷତିଗ୍ରସ୍ତ ପରିବାରଙ୍କୁ କ୍ଷତିପୂରଣ ଦାବିରେ ଜନତା ରାସ୍ତାରୋକ କଲେ। ପୁଲିସ ଓ ପ୍ରଶାସନ ବିବ୍ରତ ହୋଇ ପଡ଼ିଲେ। ଶେଷରେ ଦୋଷୀ ଧରା ପଡ଼ିଲେ। ସେମାନେ ଦଣ୍ଡିତ ବି ହେବେ। କିନ୍ତୁ ଯେଉଁ ମାଆମାନଙ୍କର କୋଳ ଉଜୁଡ଼ି ଗଲା, ଯେଉଁ ଦରଫୁଟା କଳିମାନେ ଅକାଳରେ ବାହୁଡ଼ି ଗଲେ, ସେମାନେ ଆଉ ଫେରି ଆସିବେ ନାହିଁ।

ସତେ ଯେମିତି ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ସହ ମରଣ ଦେବତା ଲୁଚକାଳି ଖେଳ ଖେଳୁଛି। ଏଇ ସପ୍ତାହରେ ଘଟିଥିବା ଆଉ ଗୋଟିଏ ଘଟଣା। ବୋରିଗାଁର ପାଞ୍ଚବର୍ଷର ଝିଅଟାଏ। ଶ୍ରେଣୀଗୃହରେ ସର୍ପ ଦଂଶନରେ ମୃତ୍ୟୁବରଣ କରିଛି। ମହାକାଳପଡ଼ାରେ ଶିଶୁଟିଏ ସ୍କୁଲ୍‌କୁ ଯାଉଥିବା ବେଳେ ପାଣି ଭର୍ତ୍ତି ପୋଖରୀରେ ବୁଡ଼ି ମୃତ୍ୟୁବରଣ କରିଛି। କେବଳ ଏତିକି ନୁହେଁ, ବାରମ୍ବାର ମଧ୍ୟାହ୍ନ ଭୋଜନରେ ଗରମ ପେଜ କିମ୍ବା ଗରମ ଡାଲି ହାଣ୍ଡିରେ ପଡ଼ି ଶିଶୁ ଗୁରୁତର କିମ୍ବା ମୃତ୍ୟୁ ଖବର ଏକଦା ବହୁଚର୍ଚ୍ଚିତ ଥିଲା। ଭାତ ହାଣ୍ଡିରେ ଝିଟିପିଟି, ବେଙ୍ଗ, ବିଛା ଆଦି ପଡ଼ି ଶିଶୁମାନେ ଅସୁସ୍ଥ ହେଉଥିଲେ। ଏପରିକି ତେଲ ଭ୍ରମରେ କୀଟନାଶକରେ ରୋଷେଇ ହୋଇଥିବା

ଖାଦ୍ୟ ଖାଇ କୋଡ଼ିଏରୁ ଊର୍ଦ୍ଧ୍ୱ ଶିଶୁ ବି ମୃତ୍ୟୁବରଣ କରିଥିଲେ। ଘଟଣାଟି ଘଟିଥିଲା ଝାଡ଼ଖଣ୍ଡରେ। ସମ୍ପୃକ୍ତ ପ୍ରଧାନ ଶିକ୍ଷୟିତ୍ରୀ ଓ ଅନ୍ୟମାନେ ଏବେ ବି ସଜା ଭୋଗୁଛନ୍ତି। କେତେବେଳେ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ଦାୟିତ୍ୱହୀନତା ତ ଆଉ କେତେବେଳେ ପ୍ରାକୃତିକ ବିପର୍ଯ୍ୟୟ ଅବା ଛାତ ଭୁଶୁଡ଼ି, ପାଚେରୀ ଭାଙ୍ଗି, ପାଇଖାନା ଟାଙ୍କିରେ ଗଳି ପଡ଼ି ଶିଶୁମାନେ ମୃତ୍ୟୁବରଣ କରିଛନ୍ତି। ନବରଙ୍ଗପୁର ଜିଲ୍ଲାର ଏକ ଆବାସିକ ବିଦ୍ୟାଳୟରେ ଶିକ୍ଷକମାନେ ଭୋଜି କରି ଖାଇଥିବା କୁକୁଡ଼ାର ପରିତ୍ୟକ୍ତ ଅଂଶକୁ ନବମ ଶ୍ରେଣୀ ପିଲାମାନେ ରାନ୍ଧି ଖାଇ ମୃତ୍ୟୁମୁଖରେ ପଡ଼ିଥିଲେ। ଏମିତି ଅନେକ ଦୁଃସମ୍ବାଦ, ମୂର୍ଚ୍ଛନା ଫାଟିଗଲା ପରି।

ଶିକ୍ଷାନୁଷ୍ଠାନମାନଙ୍କରେ ଘଟୁଥିବା ଏ ଅଘଟଣ ପାଇଁ ଯେ ସରକାର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁ ନାହାନ୍ତି କି ପ୍ରାକ୍- ପ୍ରସ୍ତୁତି ନେଇ ନାହାନ୍ତି, ତା' ନୁହେଁ। ଏସବୁ ସତ୍ତ୍ୱେ କାଳ କେତେବେଳେ, କେଉଁ ବାଟେ ଆସି ଶିଶୁମାନଙ୍କର କୋମଳ ପ୍ରାଣ ହରଣ କରି ନେଇ ଯାଉଛି, ତା'ର ଇୟତ୍ତା ନାହିଁ। ଏସବୁକୁ ଦୃଷ୍ଟି ସମ୍ମୁଖରେ ରଖି ବିଦ୍ୟାଳୟମାନଙ୍କରେ ଏବେ କଡ଼ା ନିରାପତ୍ତା। କୌଣସି ପରିସ୍ଥିତିରେ ବି ଶିଶୁମାନଙ୍କୁ ବିଦ୍ୟାଳୟର ସୁରକ୍ଷା ବଳୟ ବାହାରକୁ ଛାଡ଼ିବାକୁ ଦିଆଯାଉ ନାହିଁ। ବିଦ୍ୟାଳୟ ପରିସରରେ ଶିଶୁମାନଙ୍କ ଉପରେ ଯେପରି ଏତେ ଟିକେ ଆଞ୍ଚ ନ ଆସେ, ସେଥିପାଇଁ ପ୍ରଶାସନର କଡ଼ାକଡ଼ି ନିୟମ। ତଥାପି ଘଟେ ଏପରି ମୂର୍ଚ୍ଛନା ଫଟାଇ ଦେବା ଭଳି ଘଟଣାମାନ। ଉଦାହରଣ ସ୍ୱରୂପ, ସଦ୍ୟତମ ସମ୍ବାଦ ମୁତାବକ କୁଆଖାଇ ନଦୀରେ ଦୁଇଜଣ ଛାତ୍ର ଗାଧୋଇବାକୁ ଯାଇ ବୁଡ଼ିଯିବା ଫଳରେ ମୃତ୍ୟୁବରଣ କରିଛନ୍ତି।

ମୃତ୍ୟୁର ତାଣ୍ଡବ ଲୀଳାକୁ ରୋକି ହେଉ ନାହିଁ। ବିଦ୍ୟାଳୟ ନୁହେଁ ତ ବିଦ୍ୟାଳୟ ପରିସର ବାହାରେ। ନଈନାଳ, ରାସ୍ତାଘାଟ ଡେଇଁ ଛାତ୍ରଛାତ୍ରୀ ଆସନ୍ତି ବିଦ୍ୟାଳୟକୁ। ବାରମ୍ବାର ଅଟୋ ଦୁର୍ଘଟଣାରେ ଛାତ୍ରଛାତ୍ରୀ ମୃତ୍ୟୁବରଣ କରିବା ଦୃଷ୍ଟିରୁ ଅଟୋରେ ସ୍କୁଲ୍ ଯିବା ନିଷେଧ କରାଯାଇଛି। ସବୁଠାରେ ବସ୍ ଚଳାଚଳର ସୁବିଧା ନାହିଁ। ଘରୋଇ ବିଦ୍ୟାଳୟମାନଙ୍କରେ ସେମାନଙ୍କର ନିଜର ଗାଡ଼ିମାନ ରହିଛି। କିନ୍ତୁ ସରକାରୀ ବିଦ୍ୟାଳୟମାନଙ୍କରେ ନାହିଁ।

ସରକାରୀ ବିଦ୍ୟାଳୟମାନଙ୍କରେ ପଢ଼ନ୍ତି ନିମ୍ନ ମଧ୍ୟବିତ୍ତ ଘରର ପିଲାମାନେ। ଘରୋଇ ବିଦ୍ୟାଳୟମାନଙ୍କରେ ସନ୍ତାନଙ୍କ ସୁରକ୍ଷା ପାଇଁ ଅଭିଭାବକମାନେ ଲକ୍ଷଲକ୍ଷ ଟଙ୍କା ଖର୍ଚ୍ଚ କରିବାର ସାମର୍ଥ୍ୟ ରଖିଥାନ୍ତି। ତେଣୁ ଏପରି ଦୁର୍ଘଟଣା କ୍ୱଚିତ୍ ଶୁଣିବାକୁ ମିଳେ। କିନ୍ତୁ ଦାରିଦ୍ର୍ୟ ସବୁ ଦୁର୍ଦ୍ଦଶାର ମୂଳ ପରି ସରକାରୀ ସ୍କୁଲ୍‌ମାନଙ୍କରେ ସୁରକ୍ଷା

ପାଇଁ ଯେତେ ପଦକ୍ଷେପ ନେଲେ ସୁଦ୍ଧା ତଥାପି ଏମିତି ଗୋଟିଏ ଗୋଟିଏ ମୂର୍ଚ୍ଛନା ଫାଟିବା ପରି ସମ୍ବାଦ ଶୁଣିବାକୁ ମିଳିଥାଏ।

କାହିଁକି ହୁଏ ଏମିତି ଅଭାବନୀୟ ପରିସ୍ଥିତି ? ଈଶ୍ୱର ଯାହା କରନ୍ତି, ତାହା ପରା ସବୁ ପ୍ରାଣୀର ମଙ୍ଗଳ ପାଇଁ? କି ମଙ୍ଗଳ ସାଧନ କଲେ ଈଶ୍ୱର ଏଇ ଅଧାଫୁଟା କଳିକାମାନଙ୍କର ଅକାଳରେ ଅନ୍ତ ଘଟାଇ? ସବୁ ଦୁର୍ଘଟଣା ଈଶ୍ୱର ସୃଷ୍ଟ ନୁହେଁ। ମଣିଷର ଅମଣିଷପଣିଆ ଅନେକ ଦୁର୍ଘଟଣାକୁ ଆହ୍ୱାନ କରି ଆଣେ। ରାଣୀତାଲରେ ଘଟିଥିବା ମର୍ମାନ୍ତିକ ଘଟଣା ବେପରବାୟ ମଣିଷର ଅପରିଣାମଦର୍ଶିତା। ଦୋଷୀ ପାଇଁ ତ ଦଣ୍ଡ ଅଛି। ସେମାନଙ୍କୁ ଦଣ୍ଡ ମିଳିବ। ତେବେ ଆସନ୍ତୁ ହୃଦୟର ଗଭୀରତମ ପ୍ରଦେଶରୁ ଦୁଇଧାର ଅଶ୍ରୁଅର୍ଘ୍ୟ ଢାଳିଦେବା ଜୀବନ କ'ଣ ଜାଣିବା ଆଗରୁ ମୃତ୍ୟୁର ସାମ୍ନା କରିଥିବା ସେଇ କୋମଳମତି ବାଳକ ବାଳିକାଙ୍କ ପାଇଁ। ପ୍ରାର୍ଥନା କରିବା ଈଶ୍ୱରଙ୍କୁ- ଆଉ ଯେମିତି ଏମିତି ଅଘଟଣ ନହେଉ, ଯାହା ପାଇଁ ମଣିଷ ମନରେ ଈଶ୍ୱରଙ୍କ ଉପରେ ସନ୍ଦେହ ଉପୁଜିବ। ସେ ଘଣ୍ଟ ଘୋଡ଼େଇ ରଖନ୍ତୁ ଆମ କୁନିକୁନି ପିଲାମାନଙ୍କୁ। ଶିଶୁଏ ହସିଲେ ଦୁନିଆ ହସେ। ସେମାନେ ହସନ୍ତୁ। ସେଇ ତାନରେ ହସିଉଠୁ ବିଶ୍ୱ।



# ପୁରୁଷଙ୍କ ନ୍ୟାଯ୍ୟ ଦାବି

ସାରଳା ମହାଭାରତରେ ଚମତ୍କାର ଉପାଖ୍ୟାନଟିଏ ରହିଛି। ଭାରଦା ବୃତ୍ତାନ୍ତ ନିଜେ ନିକମା ଅଳସୁଆ କର୍ମକୋଢ଼ୀ ମଣିଷଟାଏ। ନିଜେ କିଛି କାମ କରେ ନାହିଁ। କିନ୍ତୁ ନିଜ ସ୍ତ୍ରୀର ଯାବତୀୟ କାର୍ଯ୍ୟ କରିଥାଏ। ସ୍ତ୍ରୀକୁ ରାନ୍ଧିବାଢ଼ି ଖାଇବାକୁ ଦେବା ଠୁଁ ପଦମଞ୍ଜାଳିବା ପାଲଟାଲୁଗା ଧୋଇବା ପର୍ଯ୍ୟନ୍ତ। ଦିନରାତି ସେ ସେଇ କର୍ମରେ ଲିପ୍ତ ଥାଏ। ମହାଭାରତ ଯୁଦ୍ଧ ଅନ୍ତହେବା ପରେ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ଶ୍ରୀକୃଷ୍ଣଙ୍କ ଆହ୍ୱାନକ୍ରମେ ଭୀମ ତାକୁ ଆଣିବା ପାଇଁ ଯାଇଥିଲେ। ତାର କାର୍ଯ୍ୟକଳାପ ଦେଖି ଘୃଣାରେ ଭୀମ ଚୁଟି ଧରି ଆଣିଥିଲେ ରାଜସଭାକୁ।

ସ୍ତ୍ରୈଣ ପୁରୁଷମାନଙ୍କୁ ସ୍ତ୍ରୀର ବଚସ୍କର ହୋଇ ରହିଥିବା ପୁରୁଷକୁ ଭାରତୀୟ ସମାଜ ଘୃଣା ବ୍ୟଞ୍ଜକ ଦୃଷ୍ଟିରେ ଦେଖେ। ଏମାନଙ୍କ ପାଇଁ ରହିଛି ନିନ୍ଦନୀୟ ଶବ୍ଦଟିଏ ଭାରଦା। ଆମ ସମାଜ ନାରୀକୁ ସମ୍ମାନ ଦେଇଛି। ଦେବୀ ବୋଲି ମର୍ଯ୍ୟଦା ଦେଇଛି। ସେ କେବଳ ସନ୍ତାନମାନଙ୍କୁ ଜନ୍ମଦେଇ ମାନବ ପ୍ରଜାତିକୁ ଆଗକୁ ବଢ଼ାଇଛି ବୋଲି ନୁହେଁ। ବରଂ ସମାଜର ପ୍ରଥମ ଏକକ ପରିବାରରେ ସକଳ ସଦସ୍ୟଙ୍କୁ ସେ ଏକତା ସୂତ୍ରରେ ବାନ୍ଧିରଖେ। ସେବା ତ୍ୟାଗ ତିତିକ୍ଷା ବଳରେ ସେ ସମସ୍ତଙ୍କର ଜୀବନୀଶକ୍ତି ପାଲଟିଯାଏ। ଅନ୍ନପୂର୍ଣ୍ଣା ଅନ୍ନଦାତ୍ରୀ ରୂପେ ନବଜାତକ ସନ୍ତାନ ପାଖରୁ ଶତାୟୁ ବୃଦ୍ଧବୃଦ୍ଧା ପର୍ଯ୍ୟନ୍ତ ସମସ୍ତଙ୍କର ପାଇଁ ସେ ଅପରିହାର୍ଯ୍ୟ ହୋଇପଡ଼େ। ସେଇଥିପାଇଁ ବେଦର ଉଚ୍ଚାରିତ ମନ୍ତ୍ରଠାରୁ ଆଜିର ପ୍ରଣିତ ଶାସ୍ତ୍ର ସାହିତ୍ୟ ସମ୍ବିଧାନ ପର୍ଯ୍ୟନ୍ତ ସବୁଠାରେ ନାରୀର ଜୟଗାନ। ସମାଜ ମଙ୍ଗଳ ପାଇଁ ଯେତେ ଯାହା ଆଇନ୍ କାନୁନ୍ ପ୍ରଣୟନ ହେଉଛି ସବୁଠାରେ ନାରୀମାନେ ତାହାଦ୍ୱାରା କେତେ ଉପକୃତ ହେବେ ଅଥବା ଆକ୍ରାନ୍ତ ହେବେ ତାହା ପ୍ରଥମେ ତର୍ଜମା ହୋଇଥାଏ।

ଏସବୁ ସତ୍ତ୍ୱେ ବେଳେବେଳେ ମୁଷ୍ଟିମେୟ ନାରୀଙ୍କ ପାଇଁ ନାରୀ ସମାଜ ବଦନାମ ହୋଇପଡ଼ନ୍ତି। ଆମ ସମାଜ ପୁରୁଷକ୍ଷେତ୍ର ଓ ନାରୀକ୍ଷେତ୍ର ବୋଲି ଯେଉଁ ବଳୟ ସୃଷ୍ଟି କରିଥିଲା ସେ ବଳୟ ବହୁତ କମ୍ ପୁରୁଷ ଅତିକ୍ରାନ୍ତ କରିଛନ୍ତି ମାତ୍ର ନାରୀମାନେ ବହୁମାତ୍ରାରେ ଅତିକ୍ରମ କରି ସାରିଲେଣି। ସେମାନେ ଏରୁଣ୍ଡି ଡେଇଁ ବାହାରକୁ ଆସି

ପରିବାରକୁ ଆର୍ଥିକ ସହାୟତା କଲେଣି । ରାଜନୀତି ଠାରୁ ରଣନୀତି ପର୍ଯ୍ୟନ୍ତ, ମାଟିରୁ ମହାକାଶ ପର୍ଯ୍ୟନ୍ତ ପ୍ରତି କ୍ଷେତ୍ରରେ ପାଦ ଥାପିଲେଣି । ପୁରୁଷର ଦାମ୍ଭିକାପଣ,, ଅହଂକାର, ଉଚ୍ଚାଭିଳାଷ, କ୍ଷମତାଲାଳସା, ସାହସିକତା, ନିଷ୍ଠୁରତା ଆଦି ଗୁଣାବଳୀକୁ ଆଦରିବା ଏକ ଫେସନ ବା ବିଳାସ ବୋଲି ମାନିନେଲେଣି ନାରୀମାନେ । ଏପରିକି କେତେକ ମହିଳା କାଳେ ନାରୀ ମନସ୍କ ହୋଇଯିବେ ତେଣୁ ପୁରୁଷ ବ୍ୟବହାର କରୁଥିବା ସୁଗନ୍ଧ ଦ୍ରବ୍ୟ (ପରଫ୍ୟୁମ୍) ବ୍ୟବହାର ପ୍ରତି ଗୁରୁତ୍ୱ ଦେବା ପରିଲକ୍ଷିତ ହେଲାଣି । ସେମାନେ ଆଉ ନମ୍ର କମ୍ର କୋମଳ ସିଗ୍ଧ ହୋଇ ରହିବାକୁ ଚାହୁଁନାହାନ୍ତି । ସେବା, ତ୍ୟାଗ, ସହିଷ୍ଣୁତାକୁ ଦୁର୍ବଳ ମନୋଭାବ କହିଲେଣି । ତେଣୁ ସମାଜରେ ଏବେ ନୂତନ ସଙ୍କଟ ଅନୁଭୂତ ହେଉଛି । ଆମ ସମାଜରେ ପ୍ରଚଳିତ ନିୟମ ସବୁ ନାରୀମାନଙ୍କ ସପକ୍ଷରେ ଥିବାରୁ ଏହାକୁ ସେମାନେ ଢାଲ ରୂପେ ବ୍ୟବହାର କରୁଛନ୍ତି । ଶାଶୁଶ୍ୱଶୁରଠୁ ଅଲଗା ରହିବାକୁ ସ୍ୱାମୀଙ୍କୁ ବାଧ କରୁଛନ୍ତି । ଏଥିରେ ସଫଳ ନ ହେଲେ ଯୌତୁକ ନିର୍ଯାତନା, ସ୍ୱାମୀର ଅନ୍ୟ ଝିଅମାନଙ୍କ ସହ ସମ୍ପର୍କ ଥିବା ଅଭିଯୋଗ କରି କୋର୍ଟକଚେରୀର ଧମକ୍ ଦେଉଛନ୍ତି । ଆତ୍ମହତ୍ୟାର ଧମକ ଦେଇ ସ୍ୱାମୀକୁ ବଚସ୍କର କରି ରଖୁଛନ୍ତି । ଏଠି ବିଚାରା ସ୍ୱାମୀଟି ଇଚ୍ଛା ନଥାଇ ମଧ୍ୟ ଭୟରେ ଭାରଦା ପରି ବଞ୍ଚିବାକୁ ବାଧ ହେଉଛି । କାରଣ ଆମ ହିନ୍ଦୁଧର୍ମର ବିବାହ ଅନୁସାରେ ସ୍ତ୍ରୀକୁ ଛାଡ଼ପତ୍ର ଦେବା କାଠିକର ପାଠ ହୋଇ ପଡୁଥିଲା । ପିତାମାତାଙ୍କ ଦୁଃଖ ଦେଖି ସୁଦ୍ଧା ସ୍ତ୍ରୀର ଦୌରାତ୍ମ୍ୟକୁ ଭୟ କରି କିଛି କରିପାରୁ ନଥିଲା । ପୁରୁଷ କମିଶନଟିଏ ଗଢ଼ିବାକୁ ଚାହିଁଲେ ସମାଜରେ ହାସ୍ୟାସ୍ପଦ ହେଉଥିଲା । କିନ୍ତୁ ଏବେ ସୁପ୍ରିମ୍‌କୋର୍ଟ ଏକ ଐତିହାସିକ ରାୟବଳରେ କ୍ରୁରାସ୍ତ୍ରୀମାନଙ୍କ କବଳରୁ ମୁକ୍ତି ପାଇବାର ଆଶା ବଳବତ୍ତର ହେଉଛି । ସେମାନେ ଆଶ୍ୱସ୍ତ ହୋଇଛନ୍ତି । ପତ୍ନୀ ନିର୍ଯ୍ୟାତିତମାନେ ପୁରୁଷ କମିଶନ ଗଠନ କରି ସୁରକ୍ଷା ବଳୟଟିଏ ଖୋଜୁଥିବାବେଳେ ଏବେ ସୁପ୍ରିମ୍‌କୋର୍ଟର ରାୟ ସେମାନଙ୍କ ପାଇଁ ଆଶାର ପ୍ରଦୀପଟିଏ ହୋଇଛି । ଆମ ସମାଜର ଗଠନଗତ ପରମ୍ପରା ଏମିତି ଯେ, ନାରୀଟିଏ ପତି କିମ୍ବା ପତିଗୃହର ଅନ୍ୟାନ୍ୟ ସଦସ୍ୟ ଦ୍ୱାରା ନିର୍ଯାତିତ ହେଲେ ତା ପାଇଁ ଅଜସ୍ର ସହାନୁଭୂତିର ସୁଅ ଭାସିଆସେ । ତା ପରିବାର ଲୋକେ, ଆତ୍ମୀୟସ୍ୱଜନ ବନ୍ଧୁବାନ୍ଧବୀ, ସ୍ୱେଚ୍ଛାସେବୀ ଅନୁଷ୍ଠାନ, ପୋଲିସ୍, କୋର୍ଟକଚେରୀ ସରକାର ପର୍ଯ୍ୟନ୍ତ ସମସ୍ତେ ତତ୍ପର ହୋଇ ଉଠନ୍ତି । ତା ଲୁହ ପୋଛିବା ପାଇଁ ଅକୁଣ୍ଠ ହାତ ଲମ୍ୱି ଆସେ । କିନ୍ତୁ ପୁରୁଷଟିଏ ସ୍ତ୍ରୀ କିମ୍ବା ତାର ଶ୍ୱଶୁର ଘର ଲୋକଙ୍କ ଦ୍ୱାରା ନିର୍ଯାତିତ ହେବା ପ୍ରସଙ୍ଗ ବାହାରେ ପ୍ରକାଶ କଲେ ହାସ୍ୟାସ୍ପଦ ହୁଏ । ଲୋକେ ତାର ପୌରୁଷକୁ ଆକ୍ଷେପ କରନ୍ତି । ଛାତିରେ ଅଜସ୍ର

ଯନ୍ତ୍ରଣା ଧରି ସେ ବଞ୍ଚିଥାଏ। ତାର ପାର୍ଶ୍ୱ ପ୍ରତିକ୍ରିୟା ରୂପେ ବିଭିନ୍ନ ବିଶୃଙ୍ଖଳା ସମାଜରେ ପରିଲକ୍ଷିତ ହୁଏ। କାର୍ଯ୍ୟାଳୟରେ ପୀଡିତ ଉପରିସ୍ଥ ହୋଇଥିଲେ ଅଧସ୍ତନ କର୍ମଚାରୀମାନଙ୍କ ପ୍ରତି ଚିଡ଼ିଚିଡ଼ା ହୁଅନ୍ତି। ଅଧସ୍ତନ ହୋଇଥିଲେ ମାନସିକ ଚାପ ହେଉ ଠିକ୍ ଭାବେ ଫାଇଲ୍ କାମ କରନ୍ତି ନାହିଁ। ଉପରିସ୍ଥ ଅଫିସରଙ୍କଠୁ ଗାଳି ଖାଇଥାଏ। ମାନସିକ ଚାପ ହେତୁ ବିଭିନ୍ନ ରୋଗବ୍ୟାଧିର ଶିକାର ହୁଅନ୍ତି। ବେଳେବେଳେ ପୀଡ଼ିତ ପୁରୁଷମାନେ ଉପାୟହୀନ ହୋଇ ଆତ୍ମହତ୍ୟାର ଆଶ୍ରୟ ନେଉଥିବା ପରିଲକ୍ଷିତ ହୋଇଥାଏ।

ପତିକୁ ନିର୍ଯାତନା ଦେବାର ଆଉ ଗୋଟଏ ଚତୁର ମାଧ୍ୟମ ହେଉଛି ତାର ଚରିତ୍ରକୁ ମାଧ୍ୟମ କରି ତାକୁ ମାନସିକ ନିର୍ଯାତନା ଦେବା। ଲୋକଲଜ୍ଜାକୁ ଭୟ କରି ପୁରୁଷ ଚୁପ୍ ରହିଲେ ସ୍ତ୍ରୀଟିର ଔଦ୍ଧତ୍ୟ ଆହୁରି ବଢ଼ିଯାଏ। (ଅନୁରୂପ ଚାପ ପୁରୁଷମାନେ ନାରୀମାନଙ୍କୁ ବି ଦେଇଥାନ୍ତି) ତାର ମିଛ ଅହମିକା ପାଖରେ ପରିବାରଟି ପେଶି ହୋଇଯାଏ। ବୃଦ୍ଧ ପିତାମାତା ଅରକ୍ଷଣୀୟ ହୋଇଯାଆନ୍ତ। ଜରାଶ୍ରମ ହୁଏ ସେମାନଙ୍କର ଶେଷ ଆଶ୍ରୟ ଅଥବା ନିଜ ପରିବାର ମଧ୍ୟରେ ମୁକ ବଧିର ହୋଇ ସେମାନେ ବଞ୍ଚନ୍ତି। ସାଂପ୍ରତିକ ସମାଜରେ ଅନେକ ପରିବାର ଏ ଯୁଗୀୟ ସଙ୍କଟରୁ ମୁକ୍ତ ନୁହଁନ୍ତି।

ସୁପ୍ରିମ୍‌କୋର୍ଟ ଏକ ଖଣ୍ଡପୀଠରେ ବିଚାରପତି ଅନୀଲ ଦେବ ଓ ଏଲ୍ ନାଗେଶ୍ୱର ଓ ନରେନ୍ଦ୍ର ଭିଏସ୍ କେ ମୀନା ଏକ କେସ୍‌ର ରାୟ ଦେଇ କହିଛନ୍ତି ବାର୍ଦ୍ଧକ୍ୟ ସମୟରେ ପିତାମାତାଙ୍କର ସେବା ଯତ୍ନ କରିବା ଏକ ପାୟସ ଓବ୍ଲିଗେସନ୍। ପବିତ୍ର ଅନୁବନ୍ଧନ। କୌଣସି ପରିସ୍ଥିତିରେ ଏହାକୁ ଖିଲାପ କରାଯାଇ ପାରିବ ନାହିଁ। ଏହାକୁ ମାନ୍ୟବର କୋର୍ଟ କ୍ରୁଏଲ୍‌ଟି ବା ନିଷ୍ଠୁରତା ବୋଲି କହିଛନ୍ତି, ସେହିପରି ସ୍ୱାମୀଙ୍କ ପ୍ରତି ପରକୀୟା ପ୍ରୀତି ଅଭିଯୋଗ ଓ ବାରମ୍ବାର ଆତ୍ମହତ୍ୟା ଧମକ ଦେବାକୁ ମଧ୍ୟ ଏହି ନିଷ୍ଠୁରତା ପର୍ଯ୍ୟାୟବାଚୀ କରିଛନ୍ତି। ଏପରି କ୍ଷେତ୍ରରେ ସ୍ୱାମୀଟିଏ ସ୍ତ୍ରୀକୁ ଛାଡ଼ପତ୍ର ଦେବାରେ ବାଧା ନାହିଁ।

ଏବେ ନାରୀମାନେ ସଫଳତାର ଶୀର୍ଷରେ ପହଞ୍ଚି ସାରିଲେଣି। ସେମାନଙ୍କର ବ୍ୟକ୍ତିତ୍ୱ ବିକାଶ, ମୁଖ୍ୟସ୍ରୋତରେ ସାମିଲ୍ ହେବାର ସୁଯୋଗ, ଆତ୍ମନିର୍ଭରଶୀଳ ହେବାର ମାଧ୍ୟମ ଆଜି ସବୁ ସହଜ ହୋଇଗଲାଣି। ଏସବୁର ଅର୍ଥ ନୁହେଁ ଆମେ ସ୍ୱେଚ୍ଛାଚାରୀ ବା ସ୍ୱତନ୍ତ୍ର ହେବା। ଯେଉଁ ପରିବାର ଆମକୁ ଏସବୁ ପାଇଁ ସୁଯୋଗ ଦେଇଛି ସେଥିପ୍ରତି କୃତଜ୍ଞ ରହିବା ଆମର ନୈତିକ ଦାୟିତ୍ୱ।

ଆମେ ଧନ୍ୟବାଦ ଦେବା ସେଇ ପୀଡ଼ିତ ସ୍ୱାମୀଟିକୁ ଯିଏ ଆମ ଆଖି ଖୋଲି

ଦେଇଛନ୍ତି। କର୍ଣ୍ଣାଟକର ତଳକୋର୍ଟରୁ ସୁପ୍ରିମ୍‌କୋର୍ଟ ପର୍ଯ୍ୟନ୍ତ ଲଢ଼ି ଲଢ଼ି ଶେଷରେ ସୁପ୍ରିମ୍‌କୋର୍ଟରୁ ଏହି ଐତିହାସିକ ରାୟ ଆଣିବାରେ ସକ୍ଷମ ହୋଇଛନ୍ତି। ଆଶା କରୁଛୁ ମହିଳମାନେ ଏହି ରାୟକୁ ସମ୍ମାନ ଦେବେ ଓ ଶାଶୁ ଶ୍ୱଶୁରଙ୍କ ପ୍ରତି ସେମାନଙ୍କ କର୍ତ୍ତବ୍ୟରେ ଅବହେଳା କରିବେ ନାହିଁ।

ତେବେ ଏଠି ଆଉ ଗୋଟାଏ ପ୍ରଶ୍ନ ଉଠେ, ଅନେକ ପିତାମାତା ଅଛନ୍ତି ଯେଉଁମାନେ କେବଳ କନ୍ୟାସନ୍ତାନ ଜନ୍ମ ଦେଇଛନ୍ତି। ଏ ପିତାମାତାଙ୍କର ବାର୍ଦ୍ଧକ୍ୟ ଅବସ୍ଥାରେ ଦାୟିତ୍ୱ ନେବା ଝିଅ ଓ ଜ୍ୱାଇଁଙ୍କର ପବିତ୍ର ଅନୁବନ୍ଧନ। କନ୍ୟା ନିଜେ ଉପାର୍ଜନ କରୁ କି ନକରୁ ସେଥିରେ କିଛି ଫରକ ନରହୁ। କିନ୍ତୁ ଅନେକ କ୍ଷେତ୍ରରେ ଏହା ହୁଏ ନାହିଁ। କନ୍ୟାର ଶାଶୁଘର ଲୋକେ ଏହା ଚାହାନ୍ତି ନାହିଁ, ବୋହୂର ପିତାମାତାମାନେ ସେମାନଙ୍କ ଘରେ ରୁହନ୍ତୁ। ସେମାନେ ତେଣୁ ଭବିଷ୍ୟତର ସୁରକ୍ଷା ପାଇଁ ପୋଷ୍ୟ ପୁତ୍ର ଗ୍ରହଣ କରିଥାନ୍ତି। ପୋଷ୍ୟପୁତ୍ର ମାନେ ବି ସବୁକ୍ଷେତ୍ରରେ ପାଳକ ପିତାମାତାଙ୍କ ପ୍ରତି ବିଶ୍ୱସ୍ତ ରହୁନାହାନ୍ତି। ସେମାନଙ୍କ ଜୀବନ ଦୟନୀୟ ହୋଇଯାଏ। ଆମ ସାମାଜିକ ଚଳଣି ଅନୁସାରେ ପିତାମାତା ଝିଅ ଘରେ ରହିବା ଅମର୍ଯ୍ୟାଦା ଜନକ ରୂପେ ଗ୍ରହଣ କରାଯାଏ। ଆମେ ଆଶା କରିବା ଏ ମାନସିକତାରେ ପରିବର୍ତ୍ତନ ଆସୁ। ଆମେ ଏମିତି କିଛି ଆଇନ୍ ଅପେକ୍ଷାରେ ଅଛୁ ଯେତେବେଳେ ସୁପ୍ରିମ୍‌କୋର୍ଟ ରାୟ ପ୍ରକାଶ କରିବ ପତ୍ନୀର ପିତାମାତାମାନଙ୍କୁ ପରିଣତ ବୟସରେ ସୁରକ୍ଷା ଦେବା ଜାମାତାର ପବିତ୍ର ଅନୁବନ୍ଧନ। କନ୍ୟା ପିତାମାତା କନ୍ୟାଘରେ ବାର୍ଦ୍ଧକ୍ୟ ଜୀବନ ଅତିବାହିତ କରିବା ଆଉ ଅସମ୍ମାନଜନକ ହେବ ନାହିଁ। ସେମାନେ ଗୋଟାଏ ସୁରକ୍ଷିତ ବାର୍ଦ୍ଧକ୍ୟ ଉପଭୋଗ କରିବେ।



# 'ମି ଟୁ' ମେଧ ଯଜ୍ଞ

ପଦାର୍ଥ ବିଜ୍ଞାନର ମୂଳ ତତ୍ତ୍ୱ ହେଲା, ପ୍ରତ୍ୟେକ ବସ୍ତୁ ବିକ୍ଷିପ୍ତ ଅଥବା ବିଶୃଙ୍ଖଳିତ ହେବା। ସେହି ତଥ୍ୟ ଅନୁସାରେ ମାନବ ସଭ୍ୟତା ଯେ ଧୀରେ ଧୀରେ ବିଶୃଙ୍ଖଳିତ ଅବସ୍ଥା ଆଡ଼କୁ ଗତି କରୁଛି, ଏଥିରେ ବିସ୍ମିତ ହେବାର କିଛି ନାହିଁ। ରାମାୟଣ ଯୁଗରେ ମଣିଷର ଯେଉଁ ପାରିବାରିକ ମୂଲ୍ୟବୋଧ ଥିଲା, ସାମାଜିକ ଶୃଙ୍ଖଳା ଥିଲା, ନୈତିକତାର ଅନୁବନ୍ଧନ ଥିଲା, ମହାଭାରତ ଯୁଗକୁ ତାହା ରହିଲା ନାହିଁ। ପାରିବାରିକ କଳହ ଓ ନୈତିକତାର ଉଲ୍ଲଙ୍ଘନ, ସାମାଜିକ ବିଶୃଙ୍ଖଳା ଏ ଯୁଗକୁ ବିପର୍ଯ୍ୟସ୍ତ କରି ଦେଇଥିଲା। ଏବେ ଏ ଯୁଗର ସାମାଜିକ ସ୍ଥିତି ତ ଆହୁରି ଦୟନୀୟ ! ସମାଜକୁ ଶୃଙ୍ଖଳିତ କରିବା ପାଇଁ ଯେତେ ପୁରାଣ, ଶାସ୍ତ୍ର, ସଂହିତା, ସମ୍ବିଧାନ ପ୍ରଣୟନ ହେଲେ ସୁଦ୍ଧା ମଣିଷ ସଭ୍ୟତା ସେଇ ପଦାର୍ଥ ବିଜ୍ଞାନର ତତ୍ତ୍ୱାନୁସାରୀ ଚାଲିଛି। ଏବେ ଆମ ସମାଜରେ ସବୁଠାରୁ ବଡ଼ ସଙ୍କଟ ହୋଇ ଠିଆ ହୋଇଛି ନାରୀ ଓ ପୁରୁଷଙ୍କ ସମ୍ପର୍କରେ ଅବକ୍ଷୟଶୀଳତା। ଯେଉଁ ସମ୍ପର୍କ ଦିନେ ସଭ୍ୟତାର ସର୍ବଶ୍ରେଷ୍ଠ ସମ୍ପଦ ଥିଲା, ତାହା ଏବେ ଭୁଶୁଡ଼ି ପଡୁଛି। ପରସ୍ପର ଭିତରେ ଯେପରି ଦୋଷାରୋପ ହୋଇ ଚାଲିଛି, ପ୍ରତି ମୁହୂର୍ତ୍ତରେ ନ୍ୟାୟାଳୟମାନଙ୍କରେ ଯେପରି ରାୟମାନ ପ୍ରକାଶ ପାଉଛି ଓ ସମ୍ବିଧାନର ଧାରାମାନ ଯେପରି ସଂଶୋଧିତ ହୋଇ ଚାଲିଛି, ମନେ ହେଉଛି, ଦେବାସୁର ସଂଗ୍ରାମ ବିଶ୍ୱର ପ୍ରଥମ ଯୁଦ୍ଧ ହୋଇଥିବା ବେଳେ ଶେଷ ଯୁଦ୍ଧ ହେବ ପୁରୁଷ ଓ ନାରୀଙ୍କ ମଧ୍ୟରେ ସଂଗ୍ରାମ। ପରସ୍ପର ଉପରେ ଦୋଷାରୋପ ଭିତରେ ପୁରୁଷ ଓ ନାରୀମାନଙ୍କ ସମ୍ପର୍କ ବିପନ୍ନ ହୋଇ ପଡୁଛି। କେହି କାହା କଥା ଶୁଣିବା ସ୍ଥିତିରେ ନାହାନ୍ତି। ଯେ ଯାହା ବାଟରେ ବିକ୍ଷିପ୍ତ ହୋଇ ପଡୁଛନ୍ତି। ଆଦିମ ଯୁଗକୁ ଫେରି ଯାଉଛନ୍ତି। ଏମାନଙ୍କୁ ଶୃଙ୍ଖଳିତ କରିବା ପ୍ରୟାସ ଜାରି ରହିଛି।

ପ୍ରତ୍ୟେକ ମଣିଷ ପ୍ରଥମେ ମଣିଷ। ତା' ପରେ ନାରୀ ବା ପୁରୁଷ। ମଣିଷଟିଏ ଯେତେବେଳେ ନିଜକୁ ପୁରୁଷ ବୋଲି ଭାବେ, ତାର ଅହଂପଣ ତାକୁ ଉଦ୍ଧତ କରି ଦେଉଥିବା ବେଳେ ପ୍ରଥମେ ନାରୀ ତା' ପରେ ମଣିଷ ବୋଲି ନିଜକୁ ଭାବୁଥିବା ନାରୀଟିକୁ ସବୁତକ ଦୁର୍ବଳତା ଆବୋରି ବସେ। ଦମ୍ଭ ହୋଇ ଠିଆ ହେବା ପାଇଁ ସେ

ପୁରୁଷର ସହାୟତା ଲୋଡ଼େ। ସବୁ ପୁରୁଷ ସମାନ ନୁହନ୍ତି। ନାରୀଟିର ଅସହାୟତାର ସୁଯୋଗ ନେଇ କାପୁରୁଷମାନେ ଫାଇଦା ଉଠାଉ ଥିବା ବେଳେ ସୁପୁରୁଷମାନେ ତାକୁ ଲକ୍ଷ୍ୟସ୍ଥଳରେ ପହଞ୍ଚାଇବାରେ ସହାୟକ ହୋଇଥାନ୍ତି। ଯେତେ ନାରୀ ପ୍ରଗତିର ଡିଣ୍ଡିମ ପିଟିଲେ ବି ପୁରୁଷ ନାରୀକୁ ନିଜଠାରୁ ଟିକେ ନ୍ୟୂନ ଦୃଷ୍ଟିରେ ଦେଖିଥାଏ। ଏ ମାନସିକତା କେବଳ ଭାରତୀୟମାନଙ୍କର ନୁହେଁ, ସମଗ୍ର ବିଶ୍ୱର। କାହା ପାଇଁ ସେ ପାଚିଲା ପଣସ ତ କାହାପାଇଁ ଘୁଷୁରୀ ଓ ଘୋଡ଼ୀ ସହ ସମାନ ଓ କୌଣସି ନୀତି ନିୟମ ଜାଣନ୍ତି ନାହିଁ। ପୁଣି କେଉଁ ଦେଶରେ କହନ୍ତି, ନାରୀର ହୃଦୟ ସର୍ପ ପରି ଓ ମସ୍ତିଷ୍କ ଗଧ ପରି। ଏମିତି ଅନେକ କଥା। କେହି କେହି କହନ୍ତି, ନାରୀ ଯେବେ ଏରୁଣ୍ଡି ଡେଇଁ ବାହାରକୁ ଆସିଲା, ସେହି ଦିନଠୁ ସମାଜ ପାଇଁ ସବୁ ବିପତ୍ତି ମାଡ଼ି ଆସିଲା। ପୁରୁଷମାନଙ୍କର ଏହିସବୁ ଅଭିଯୋଗ। କର୍ମକ୍ଷେତ୍ରରେ ନାରୀଟିଏ ଦକ୍ଷତାରେ ପୁରୁଷକୁ ଅତିକ୍ରମ କଲା ତ କୁହାଗଲା, ଏସବୁ ମୂଳରେ ପ୍ରତିଭା ନୁହେଁ; ରୂପ ସୌନ୍ଦର୍ଯ୍ୟ ବିଦ୍ୟମାନ। ପ୍ରଥମେ ତା'ର ଚରିତ୍ର ସଂହାର କରାଗଲା, ଆଉ କୋଉଠି ସତକୁ ସତ ତାକୁ ଚାକିରିରେ ପଦୋନ୍ନତିର ପ୍ରଲୋଭନ ପ୍ରଦର୍ଶନ କରି ତା' ଶରୀରକୁ ଉପଭୋଗ କରାଗଲା।

'ଯଦି ଜଣେ ନିଜ ସମସ୍ୟା ସମାଧାନ କରି ନପାରେ ସେ ଅନ୍ୟ ପାଇଁ ସମସ୍ୟା ହୋଇପଡ଼େ'- ମହିଳାମାନଙ୍କ ଉଦ୍ଦେଶ୍ୟରେ ବିବେକାନନ୍ଦଙ୍କର ଏ ବକ୍ତବ୍ୟ ଆଜି ବି ଯଥେଷ୍ଟ ପ୍ରାସଙ୍ଗିକ ମନେହୁଏ। 'ଅନ୍ୟ କାହାର ସହାୟତା ନନେଇ ନାରୀ ନିଜ ସମସ୍ୟାର ନିଜେ ସମାଧାନ କରୁ'- ମହାତ୍ମା ଗାନ୍ଧୀ ନାରୀମାନଙ୍କୁ ଏହି ଉଦ୍‌ବୋଧନ ଦେଇଥିଲେ। ଏପରିକି ଅହିଂସାକୁ ମୂଳ ମନ୍ତ୍ର କରିଥିବା ମହାତ୍ମା ଗାନ୍ଧୀ ପୁରୁଷମାନଙ୍କ କାମୁକତା କବଳରୁ ନିଜକୁ ରକ୍ଷା କରିବା ପାଇଁ, ହାତରେ କିଛି ଅସ୍ତ୍ର ଯଦି ନାହିଁ ଭଗବାନ ସେମାନଙ୍କୁ ଦେଇଥିବା ନଖ ଓ ଦାନ୍ତ ବ୍ୟବହାର କରନ୍ତୁ ବୋଲି ପ୍ରବର୍ତ୍ତାଇ ଥିଲେ। ସେ ମଧ୍ୟ ଆହୁରି ଗୋଟାଏ କଥା କହୁଥିଲେ, ଯେତେଦିନ ପର୍ଯ୍ୟନ୍ତ ନାରୀଟିଏ ନିଜକୁ ନାରୀଟିଏ ବୋଲି ଭାବି କଣ୍ଢେଇ ପରି ସଜବାଜ ହେଉଥିବ, ସେ ପର୍ଯ୍ୟନ୍ତ ସେ ଦୁର୍ବଳ ହିଁ ଥିବ। ଆତ୍ମପକ୍ଷ ଯେଉଁଠି ଦୁର୍ବଳ, ସେଇଠି ହିଁ ପ୍ରତିପକ୍ଷ ପାଇଁ ତୃତୀୟ ଶକ୍ତିର ଆବଶ୍ୟକତା ପଡ଼େ- ତାହା ଗଣମାଧ୍ୟମ ହେଉ କିମ୍ବା କୋର୍ଟ କଚେରୀ, ପୁଲିସ କିମ୍ବା ସ୍ୱେଚ୍ଛାସେବୀ ଅନୁଷ୍ଠାନ।

ପ୍ରତ୍ୟେକ ମଣିଷ ପରି ନାରୀର ଶରୀରଟି ମଧ୍ୟ ତା'ର ନିଜସ୍ୱ। ତା' ଇଚ୍ଛା ବିରୁଦ୍ଧରେ ତା' ଶରୀରରେ କେହି ଟିପଟିଏ ସୁଦ୍ଧା ସ୍ପର୍ଶ କରି ପାରିବ ନାହିଁ। ଏପରିକି ତାକୁ ନିଜ ସମ୍ପତ୍ତି ବୋଲି ଆସ୍ଫାଳନ କରୁଥିବା ସ୍ୱାମୀ ବି ନୁହେଁ। ଏଥିପାଇଁ ଆଇନ୍

କାନୁନ୍ ମଧ୍ୟ ରହିଛି। କିନ୍ତୁ ସବୁ କଥା ଆଇନ୍ କାନୁନ୍‌ର ଗଣ୍ଡି ଭିତରେ ହୁଏନାହିଁ। ଆଇନ୍ ତା' ବାଟରେ ଜଗି ବସିଥାଏ; ଲୋକ ଚରିତ୍ର ତା' ବାଟରେ ଯାଇଥାଏ। ସବୁ ସତ୍ୟ ପଦାକୁ ଆସିପାରେ ନାହିଁ। ସବୁ ଅପରାଧୀ ଦଣ୍ଡିତ ହୁଅନ୍ତି ନାହିଁ। ଆଇନ୍‌ର ଗଳିବାଟ ଦେଇ ଅନେକ ଅପରାଧୀ ଖସି ଯାଆନ୍ତି। ବିଶେଷତଃ ନାବାଳିକା କନ୍ୟାଶିଶୁଠାରୁ ସତୁରୀ ବର୍ଷର ବୃଦ୍ଧ ପର୍ଯ୍ୟନ୍ତ। ତା' ଚାରିପଟର ପ୍ରଲୁବ୍ଧ ଦୃଷ୍ଟିରୁ ଯେ ପର୍ଯ୍ୟନ୍ତ ନାରୀ ନିଜେ ନିଜକୁ ବଞ୍ଚାଇବା ପାଇଁ ସକ୍ଷମ ନ ହୋଇଛି, ତା' ଆତ୍ମବିଶ୍ୱାସ ନ ବଢ଼ିଛି, ସବୁ ଆଇନ୍ କାନୁନ୍ ବୃଥା। ଆପତ୍ତି ଅଭିଯୋଗରେ ଅପରାଧ ବଢ଼େ; କମେ ନାହିଁ, ବିଶେଷତଃ ଏହି ଯୌନ ଅପରାଧ ପରି ଏକ ଅତି ସମ୍ବେଦନଶୀଳ ପ୍ରସଙ୍ଗ, ଯେଉଁଠି ପୀଡ଼ିତାଟିଏ ବି ସତ୍ୟ ପ୍ରକାଶ କରିବା ପରିବର୍ତ୍ତେ ଗୋପନ ରଖିବାକୁ ଚେଷ୍ଟା କରେ।

ଏବେ କିନ୍ତୁ ପରିସ୍ଥିତି ଭିନ୍ନ ମୋଡ଼ ନେଉଛି। 'ମି ଟୁ' ଆନ୍ଦୋଳନ ପୁରୁଷମାନଙ୍କ ଉପରକୁ ବିପଦର ଘନ ବାଦଲଟିଏ ପରି ମାଡ଼ି ଆସୁଛି। ଏହି ଆନ୍ଦୋଳନ କାର୍ଯ୍ୟକ୍ଷେତ୍ରରେ ମହିଳାମାନେ କିଏ କେବେ, କୋଉଠି, କେମିତି ଯୌନ ଲାଳସାର ଶିକାର ହୋଇଥିଲା, ତା'ର ଅଭିଯୋଗ ଫର୍ଦ୍ଦ। ହଲିଉଡ୍ ପ୍ରଡ୍ୟୁସର ହାର୍ଭେ ୱେଇନ୍‌ଷ୍ଟେଇନ୍‌ଙ୍କ ନାମରେ ୭୦ ଜଣ ମହିଳାଙ୍କ ଯୌନ ନିର୍ଯାତନା ଅଭିଯୋଗ ପରେ ଏ ଆନ୍ଦୋଳନ ଏବେ ବିଶ୍ୱବ୍ୟାପି ହୋଇଛି। ସବୁଠାରୁ ବଡ଼କଥା ହେଲା, ଯେଉଁମାନେ ଏହିସବୁ ଅଭିଯୋଗ ଆଣୁଛନ୍ତି, ସେମାନେ ସମସ୍ତେ ପ୍ରତିପତ୍ତିଶାଳୀ ମହିଳା। ତାହା ପୁଣି ସୁଦୂର ଅତୀତର ଘଟଣା। ସେମାନେ ଚାହିଁଥିଲେ ମହାତ୍ମା ଗାନ୍ଧୀଙ୍କ ଅନୁସାରେ ଯଦି ନଖ ଓ ଦାନ୍ତର ବ୍ୟବହାର କରିଥାନ୍ତେ, ଆଜିର ପରିସ୍ଥିତି ଉପୁଜି ନଥାନ୍ତା, କାମୁକମାନଙ୍କୁ ଉଚିତ୍ ଶିକ୍ଷା ହୋଇଥାନ୍ତା। ଜଣେ ମହିଳା ଉପରେ ଲୋଲୁପ ଦୃଷ୍ଟି ପକାଇବା ପୂର୍ବରୁ ସେମାନେ ହଜାରେ ଥର ଚିନ୍ତା କରିଥାନ୍ତେ।

କର୍ମକ୍ଷେତ୍ରରେ ମହିଳାମାନଙ୍କୁ ଯୌନ ଶୋଷଣ ବିରୁଦ୍ଧରେ ଲଣ୍ଡନର ସାମାଜିକ କର୍ମୀ ଟରାନା ବ୍ରୁକ୍‌ଙ୍କର ଥିଲା ଏହି ଅଭିଯାନ। ଜଣେ ୧୩ ବର୍ଷର ନାବାଳିକା ନିଜ ମାଆର ପୁରୁଷ ବନ୍ଧୁଙ୍କ ଦ୍ୱାରା ଯେପରି ଯୌନ ଉତ୍ପୀଡ଼ନ ପାଉଥିଲା, ତାହା ସେ ବ୍ରୁକ୍‌ଙ୍କ ଆଗରେ ବର୍ଣ୍ଣନା କରିଥିଲା। ସେଇ ବାଳିକା ହେଉନା ତା' ଅନୁଭୂତି ବର୍ଣ୍ଣନା କଲାବେଳେ ଯେମିତି ଲଜ୍ଜା ଅପମାନରେ ସଢ଼ି ଯାଉଥିଲା, ତାହା ଅନୁଭବ କରି ବ୍ରୁକ୍ ତାଙ୍କୁ କେବଳ 'ମି ଟୁ' ବୋଲି କହିଲେ ଯଥେଷ୍ଟ ହେବ ବୋଲି ପରାମର୍ଶ ଦେଇଥିଲେ। ସେଇଠୁ ଅନୁପ୍ରେରିତ ହୋଇ ସେ ଏ ଆନ୍ଦୋଳନର ନାମ ଦେଇଥିଲେ 'ମି ଟୁ' ଆନ୍ଦୋଳନ। ଏସବୁ ୨୦୦୬ ମସିହାର କଥା। ୨୦୧୭ରେ ଯୌନ ଶୋଷଣର ଶିକାର ହୋଇଥିବା

ଆଲିସା ମିଲାନୋ ଏ ଆନ୍ଦୋଳନକୁ ବିଶ୍ୱବ୍ୟାପି କରୁଛନ୍ତି। ଆଶ୍ଚର୍ଯ୍ୟର କଥା, ଅକ୍ଟୋବର ୧୭ ତାରିଖ ମଧ୍ୟାହ୍ନରେ ଏ ସମ୍ପର୍କରେ ଟୁଇଟ୍ କରିଥିବା ଆଲିସା ସନ୍ଧ୍ୟା ସମୟକୁ ଦୁଇଲକ୍ଷ ସମର୍ଥନକାରୀ ଓ ତା' ପର ଦିନକୁ ପାଞ୍ଚଲକ୍ଷ ସମର୍ଥନକାରୀ ସୃଷ୍ଟି କରି ପାରିଥିଲେ। ଏବେ ଏହା ବଢ଼ି ପାଣି ପରି ଭାରତକୁ ମାଡ଼ି ଆସିଛି। ଏହାର ଶିକାର ହୋଇ ଜଣେ ବରିଷ୍ଠ ରାଜନେତାଙ୍କୁ ମଧ୍ୟ ତାଙ୍କ ମନ୍ତ୍ରୀପଦ ହରାଇବାକୁ ପଡ଼ିଛି। ଗଣମାଧ୍ୟମ, ବଲିଉଡ୍ ଓ କଳା ଜଗତର ବହୁ ନାମୀଦାମୀ ବ୍ୟକ୍ତିବିଶେଷ ବିନୋଦ ଦୁଆ, ବରୁଣ ଗ୍ରୋଭର, ନୱାଜୁଦ୍ଦିନ୍ ସିଦ୍ଦିକି, ନାନା ପାଟେକର, ସାଜିଦ୍ ଖାନ୍ , କୈଳାସ ଖେର୍ ଓ ଯତୀନ୍ ଦାସଙ୍କ ପରି ଅନେକଙ୍କ ଉପରେ ଏବେ 'ମି ଟୁ' ଆରୋପ। ପ୍ରତି ପକ୍ଷରେ ଅଛନ୍ତି ନିଷ୍ଠା ଜୈନ୍, ଦିଆ ମିର୍ଜା, ଲୁଲିଆ ଭେଣ୍ଟର, ପୂଜା ମିଶ୍ର, ଚିତ୍ରାଙ୍ଗଦା ସିଂଙ୍କ ପରି ଅନେକ ଲଢୁଆ ମହିଳା।

ସମାଜରେ ପ୍ରତିଷ୍ଠିତ ମଣିଷମାନଙ୍କର ଅଭଦ୍ରୋଚିତ ରୂପ ପ୍ରଦର୍ଶନ ପାଇଁ 'ମି ଟୁ' କେବଳ ଯଥେଷ୍ଟ ନୁହେଁ। ନାରୀମାନଙ୍କ ସହ ବ୍ୟବହାର କରିବା ବେଳେ ପୁରୁଷଙ୍କୁ ଯଥେଷ୍ଟ ସଂଯମ ଓ ସତର୍କତା ଅବଲମ୍ବନ କରିବା ପାଇଁ ଏ ଆନ୍ଦୋଳନ ବାଧ୍ୟ କରିବ ବୋଲି ଆଶା କରାଯାଉଛି। ତେବେ ନାରୀମାନଙ୍କର ସୁରକ୍ଷା ପାଇଁ ସୃଷ୍ଟି ହୋଇଥିବା ଏହି ଆନ୍ଦୋଳନ ସୁରକ୍ଷା କବଚ ହୋଇ ରହୁ। ଏହାକୁ ଢାଲ ରୂପେ ବ୍ୟବହାର କଲେ ଏହା ଯେଉଁ ପ୍ରଳୟଙ୍କରୀ ସାମାଜିକ ବିପର୍ଯ୍ୟୟକୁ ଆବାହନ କରିବ, ତାହା ଦ୍ୱାରା ବହୁ ସାମାଜିକ ବିଭ୍ରାଟ ସୃଷ୍ଟି ହେବ। ଯୌତୁକ ନିର୍ଯାତନା, ପାରିବାରିକ ହିଂସା ଅଥବା ବଧୂ ନିର୍ଯାତନା ଆଦି ଆଇନ୍‌ର ଅପବ୍ୟବହାର କେବଳ ପରିବାର ଭିତରେ ସୀମିତ ଥିଲା। ସ୍ଥାନ, କାଳ ଓ ପାତ୍ରମାନଙ୍କର ସୀମା ସରହଦ ନଥିବା 'ମି ଟୁ' ମେଧ ଯଜ୍ଞରେ ପରିବାରଠାରୁ ପାର୍ଲାମେଣ୍ଟ ପର୍ଯ୍ୟନ୍ତ ବହୁ ପୁରୁଷଙ୍କର ଆହୂତି ହୋଇଯିବ। ସତ- ମିଛ, କପୋଳକଳ୍ପିତ ଓ ବାସ୍ତବ ଘଟଣା ମଧ୍ୟରେ ସୀମାରେଖା ଟାଣି ସତ୍ୟ ପଦାକୁ ଆସିବା ବେଳକୁ ସତକୁ ସତ ଖଣ୍ଡ ପ୍ରଳୟ ହୋଇ ସାରିଥିବ। ମୁଷ୍ଟିମେୟ ଅପରିଣାମଦର୍ଶୀ ମହିଳାଙ୍କ ପାଇଁ ବହୁ ସମ୍ଭ୍ରାନ୍ତ ପୁରୁଷ ସର୍ବସ୍ୱାନ୍ତ ହୋଇଥିବା ବେଳେ ସମଗ୍ର ନାରୀ ଜାତି ନିନ୍ଦିତ ହୋଇ ପଡ଼ିଥିବେ।



# କବି ହେବାର ବାସନା

କବି ହେବାର ବାସନାରେ ଥରେ ପ୍ରଲୁବ୍ଧ ହୋଇଗଲେ ମଣିଷର ଦୃଷ୍ଟିକୋଣ ବଦଳି ଯାଏ। ତା' ମନ ସାତ ସମୁଦ୍ର ତେର ନଈ ପାରିହୋଇ ଭିନ୍ନ ଦୁନିଆରେ ବିଚରଣ କରେ। କବି ରାଧାମୋହନ ଗଡ଼ନାୟକଙ୍କର ପଦେ ପଙ୍‌କ୍ତି- 'କବି ହେବା ପାଇଁ ବାସନା ମୋର ପ୍ରବଳ ଭାରିରେ ପ୍ରବଳ ଭାରି/ ଉଡ଼ି ବୁଲୁଥାଏ ଏ ମୋର ମନ ଦରିଆ ପାରିରେ ଦୁନିଆ ପାରି' ପ୍ରତ୍ୟେକ ମଣିଷ ପାଇଁ ପ୍ରଯୁଜ୍ୟ। ପ୍ରତ୍ୟେକ ମଣିଷ ଭିତରେ ସୂକ୍ଷ୍ମ କବି ସତ୍ତାଟିଏ ବିଦ୍ୟମାନ। ଏଇ ସତ୍ତାକୁ କିଏ କେତେ ସମ୍ପ୍ରସାରିତ କରି ପାରୁଛି, ତାହା ହିଁ ବଡ଼ କଥା। ବ୍ୟକ୍ତିଟି ଭିତରେ ଯଦି ଜନ୍ମସିଦ୍ଧ ସୃଜନଶୀଳତା ଅଛି, ସେ ଆଗକୁ ମାଡ଼ିଯାଏ। କେହି ତାକୁ ଅଟକାଇ ପାରନ୍ତି ନାହିଁ। ତା'ର ଅନ୍ତଃପ୍ରେରଣା ତାକୁ ଅସ୍ତବ୍ୟସ୍ତ କରେ। ସେ ସର୍ବଦା ସୃଷ୍ଟି ଉନ୍ମୁଖ ହୋଇ ରୁହେ। ତା' ପାଇଁ କୌଣସି ବାହ୍ୟ ପ୍ରେରଣାର ଆବଶ୍ୟକତା ନଥାଏ। କିନ୍ତୁ ଆଉ କେତେକ ସୃଜନଶୀଳ ମଣିଷ ଅଛନ୍ତି, ଯେଉଁମାନଙ୍କୁ ବାହ୍ୟ ପ୍ରେରଣା ହିଁ ଉତ୍‌ପ୍ରେରିତ କରେ। ସେମାନେ ସୃଷ୍ଟି କରନ୍ତି। ସଫଳତାର ଶୀର୍ଷ ମଣ୍ଡନ କରନ୍ତି। କିନ୍ତୁ ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁରେ ସେମାନେ ଅଟକି ଯାଆନ୍ତି, ସ୍ୱୟଂପ୍ରେରିତଙ୍କ ପରି ଏମାନଙ୍କ ସୃଷ୍ଟି କ୍ୱଚିତ୍ ଅବିଚ୍ଛିନ୍ନ ରହିଥାଏ।

ନାରଦଙ୍କ ଅନୁରୋଧରେ ବାଲ୍ମିକୀ ସେଇ ଯୁଗର କାଳ ଖଣ୍ଡରେ ଜଣେ ଶ୍ରେଷ୍ଠ ପୁରୁଷଙ୍କ ସମ୍ପର୍କରେ କିଛି ଲିପିବଦ୍ଧ କରିବା ପାଇଁ ଚାହୁଁଥିଲେ। ସେଥିପାଇଁ ରାମଚନ୍ଦ୍ରଙ୍କୁ ନିର୍ବାଚିତ କଲେ ସିନା କେମିତି ଲେଖିବେ, ସେଥିପାଇଁ ଘନ ବନାନୀ ଭିତରେ ଘୂରି ବୁଲୁଥିଲେ। ଶେଷରେ କ୍ରୌଞ୍ଚ ଦମ୍ପତି ହୋଇଥିଲେ ତାଙ୍କ ପ୍ରେରଣା। ସୃଷ୍ଟି ହୋଇଥିଲା ରାମାୟଣ। ଏହି ରାମାୟଣ ସମଗ୍ର ବିଶ୍ୱରେ ଆଦିକାବ୍ୟର ମାନ୍ୟତା ପାଇଛି। ଏତେ ବଡ଼ ଖ୍ୟାତି ଅର୍ଜନ କରିଥିବା ମହାକାବ୍ୟ ଓ ମହାକାବ୍ୟକାରଙ୍କର ଅନ୍ୟ କୌଣସି ସୃଷ୍ଟି ଆମ ଦୃଷ୍ଟିରେ ପଡ଼େନାହିଁ। ଅପର ପକ୍ଷେ ମହାଭାରତକାର ବ୍ୟାସଙ୍କର ସୃଜନଶୀଳତା ବିଶ୍ୱ ବିସ୍ମୟକାରୀ। ବିଶ୍ୱର ସର୍ବବୃହତ୍ ମହାକାବ୍ୟ ମହାଭାରତ ରଚନା କରିବା ପାଇଁ ତାଙ୍କୁ କେହି ଉତ୍‌ପ୍ରେରିତ କରି ନଥିଲେ। ଏହା ତାଙ୍କର ଅନ୍ତଃପ୍ରେରଣା ପ୍ରସୂତ। ତେଣୁ

ଏ ସ୍ରଷ୍ଟା ମହାସ୍ରଷ୍ଟା ରୂପେ ଭାରତୀୟ ସାରସ୍ୱତ ଭଣ୍ଡାରରେ ଉଦ୍‌ଭାସିତ ହୁଅନ୍ତି। ମହଭାରତ ପରେ ଅଷ୍ଟାଦଶ ପୁରାଣ, ଶ୍ରୀମଦ୍ ଭାଗବତ ସମେତ ଅନେକ ସାରସ୍ୱତ ଶାସ୍ତ୍ର ସଂହିତାର ସେ ପ୍ରଣେତା। ପୁଣି ଶ୍ରୁତି କୋଷରେ ପୁରୁଷ ପୁରୁଷ ଧରି ଗଢ଼ି ଆସୁଥିବା ବେଦମାନଙ୍କୁ ବିଭାଗୀକରଣ କରି ଲିପିବଦ୍ଧ ମଧ୍ୟ କରିଥିଲେ। ଏସବୁ ସେ କରିଥିଲେ ଅନ୍ତଃପ୍ରେରଣାରେ।

ଆଉ କିଛି ସାହିତ୍ୟ ସୃଷ୍ଟି ହୋଇଥାଏ ପ୍ରୟୋଜନବୋଧରୁ। ଅମରକଣ୍ଟକ ରାଜା ନିଜ ବିଶୃଙ୍ଖଳିତ ପୁତ୍ରଙ୍କୁ ସୁଧାରିବା ପାଇଁ ନିଯୁକ୍ତ କରିଥିଲେ ବିଷ୍ଣୁ ଶର୍ମାଙ୍କୁ। ସେଇ ଅମାନିଆ ପୁତ୍ରମାନଙ୍କୁ ଶିକ୍ଷା ଦେବା ପାଇଁ ସେ ଯେଉଁ ନୀତିକଥାଗୁଡ଼ିକର ସହାୟତା ନେଇଥିଲେ, ତାହା ପଞ୍ଚତନ୍ତ୍ର ରୂପେ ଖ୍ୟାତିଲାଭ କରିଛି। ପୁରାଣୋତ୍ତର ଯୁଗରେ ଏମିତି ଅନେକ ସାହିତ୍ୟ ସୃଷ୍ଟି ହୋଇଛି। ପ୍ରତ୍ୟେକ ସତ୍ ସାହିତ୍ୟ ଏହି ପର୍ଯ୍ୟାୟଭୁକ୍ତ।

ଏସବୁ ବ୍ୟତୀତ ଆଉ କିଛି ଓ ସାହିତ୍ୟ ରହିଛି ଯାହା କେବଳ ନିଛକ କବିପଣ ଯଶ ଅର୍ଜନ ପାଇଁ ସୃଷ୍ଟି ହୋଇଥାଏ। କେତେକ ଯଶଲିପ୍ସୁ ଥାଆନ୍ତି। ସେମାନଙ୍କର ଉଚ୍ଚାଭିଳାଷ ତ ଥାଏ, କିନ୍ତୁ ତଦନୁସାରେ ସୃଜନଶୀଳ ପ୍ରତିଭା ନଥାଏ। କଳେବଳେ କୌଶଳେ ସାରସ୍ୱତ ଜଗତରେ ପାଦ ଥାପିବାକୁ ପ୍ରଚେଷ୍ଟା ଜାରି ରଖିଥାନ୍ତି। ଏହିମାନେ ହିଁ ସାହିତ୍ୟ ଚୋରି କରନ୍ତି। ଯାହାକୁ ଇରାଜୀରେ କୁହାଯାଏ ପ୍ଲାଜିଆରିଜ୍‌ମ୍। କେହି ପ୍ରତିଷ୍ଠିତ ସାହିତ୍ୟିକମାନଙ୍କ ଭାବ ଚୋରେଇ ଥାନ୍ତି ତ ଆଉ କେହି କମା ଫୁଲ୍‌ଷ୍ଟପ୍। ମୂଳ ଲେଖକଙ୍କ ନାମ ଗୋପନ ରଖି ନିଜ ନାମରେ ଏଗୁଡ଼ିକ ପ୍ରକାଶ କରିଥାନ୍ତି। ଧରା ପଡ଼ିଗଲେ ଗୁଡ଼ାଏ କୈଫିୟତ୍ ଦେବା ପାଇଁ ପ୍ରସ୍ତୁତ ହୋଇ ରହିଥାନ୍ତି।

ଓଡ଼ିଆ ସାହିତ୍ୟର ନବ ଯୁଗର ବିନ୍ଧାଣୀ ରାଧାନାଥ ରାୟ ଓଡ଼ିଆ ସାରସ୍ୱତ ଜଗତର ଏକ କ୍ରାନ୍ତିକାରୀ ସ୍ରଷ୍ଟା। ଓଡ଼ିଆ ସାହିତ୍ୟକୁ ଗତାନୁଗତିକ ଧାରାରୁ ମୁକ୍ତ କରି ନୂତନ ଦିଗାନୁସାରୀ କରିଥିଲେ ସୁଦ୍ଧା ସେ ବିତର୍କିତ ହୋଇଥିଲେ। ରାଧାନାଥଙ୍କର ସବୁତକ କାବ୍ୟ ପାଶ୍ଚାତ୍ୟ ବିଷୟବସ୍ତୁ ଆଧାରିତ। ଏପରିକି ପ୍ରକୃତି କାବ୍ୟ ଚିଲିକା ମଧ୍ୟ ଲେଡି ଅଫ୍ ଦ ଲେକ୍ ଛାୟାରେ ରଚିତ। କିନ୍ତୁ କୌଣସିଠାରେ ତାଙ୍କ ନିଜ ତରଫରୁ ସେ ଏହା ସ୍ୱୀକାର କରି ନଥିଲେ। ବରଂ ଚତୁରତାର ସହ ଏସବୁ ଓଡ଼ିଆ ମାଟିରେ ସଂଘଟିତ ହୋଇଥିବା ପ୍ରମାଣମାନ ଦର୍ଶାଇ ଥିଲେ। କାଳର ଦନ୍ତାଘାତରେ କିଛି ସତ୍ୟ ନିଶ୍ଚିହ୍ନ ହେବା ବିସ୍ମୟ ନହେଲେ ବି ସାରସ୍ୱତ ଜଗତର ସତ୍ୟ ଆଦୌ ସଂଗୋପିତ ହୁଏନାହିଁ। ରାଧାନାଥ ରାୟ ସାହିତ୍ୟ ସୃଷ୍ଟି କଲା ବେଳକୁ ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ସାହିତ୍ୟ ଅଧ୍ୟୟନ କରିଥିବା ସାହିତ୍ୟିକ ନଥିଲେ। ତେଣୁ କିଛି ଦିନ ପାଇଁ

ରାଧାନାଥଙ୍କ କାବ୍ୟ ଓଡ଼ିଆ ପାଠକଙ୍କୁ ବିହ୍ୱଳିତ କରି ରଖିଥିଲା। କିନ୍ତୁ ପରବର୍ତ୍ତୀ ସତ୍ୟବାଦୀ ଯୁଗର ସାହିତ୍ୟିକମାନଙ୍କ ଦ୍ୱାରା ସେ କଠୋର ସମାଲୋଚନାର ଶିକାର ହୋଇଥିଲେ। ପ୍ରାୟଶ୍ଚିତ ସ୍ୱରୂପ ଭାରତୀୟ ସାହିତ୍ୟ ସଂସ୍କୃତି ଆଧାରିତ ମହାଯାତ୍ରା କାବ୍ୟ ରଚନା କରିଥିଲେ। ତାଙ୍କ ରଚିତ କାବ୍ୟଗୁଡ଼ିକରେ ସେ ଯଦି ପାଶ୍ଚାତ୍ୟ ସାହିତ୍ୟର ଅନୁକୃତି ବୋଲି ସୂଚନାଟିଏ ଦେଇଥାନ୍ତେ, ବୋଧହୁଏ ତାଙ୍କ ଶେଷ ଜୀବନ ଏମିତି ଦୁଃଖ, ଯନ୍ତ୍ରଣା, ଅବସାଦ, ହତାଶାବୋଧରେ କଟି ନଥାନ୍ତା।

ଆଉଜଣେ ମହିଳାଙ୍କ କଥା ଆମ ସମୟର ପ୍ରଖ୍ୟାତ ସାହିତ୍ୟିକ ମନୋଜ ଦାସ ଲେଖିଛନ୍ତି। ଜଣେ ପ୍ରତିଷ୍ଠିତ ଲେଖକଙ୍କ ପୁସ୍ତକର ଆରମ୍ଭ ଓ ଶେଷ କେଇ ପୃଷ୍ଠା ଚିରିଦେଇ ଜଣେ ମହିଳା ପେଙ୍ଗୁଇନ୍ ସରିଜ୍‌ରେ ନିଜ ନାମରେ ବହିଟି ଛପାଇ ଥିଲେ ଓ ପ୍ରଶଂସିତ ହୋଇଥିଲେ। ପରେ ଏକଥା ଜଣା ପଡ଼ିବାରୁ ସମ୍ପୃକ୍ତ ମହିଳା ନିଜର ଜୀବନକୁ ଶେଷ କରି ଦେଇଥିଲେ।

'ଗ୍ରେଟ୍ ପିପଲ୍ ଥିଙ୍କ୍ ଏଲାଇକ୍' ନ୍ୟାୟରେ ବିଶ୍ୱର ଯେ କୌଣସି କୋଣରେ ଥାଆନ୍ତୁ ନା କାହିଁକି, କେଉଁଠି କେଉଁଠି ଚିନ୍ତାରେ କାହାର ମେଳ ଖାଇଯାଏ ସିନା, ଶବ୍ଦ, ବାକ୍ୟ ଏକା ହୋଇଯିବା ହାସ୍ୟାସ୍ପଦ ନିଶ୍ଚୟ। ପୁଣି ଲେଖକଟିଏ ଲେଖି ବସିବା ବେଳେ ସେ ପଢ଼ିଥିବା ପ୍ରତିଷ୍ଠିତ ଲେଖକଙ୍କ ଭାବରେ ଆଚ୍ଛାଦିତ ହେବା ଅସ୍ୱାଭାବିକ ନୁହେଁ, କିନ୍ତୁ ଶବ୍ଦ ଓ ବାକ୍ୟକୁ ଅବିକଳ ନକଲ କରିବା ସାହିତ୍ୟ ଚୋରି ଓ ଏହା ଧର୍ତ୍ତବ୍ୟ ଅପରାଧ।

ସୁରେନ୍ଦ୍ର ମହାନ୍ତି କହିଥିଲେ, ଗୋଡ଼ ଥିଲେ ଚାଲିହୁଏ, ମାତ୍ର ହାତ ଥିଲେ ସବୁବେଳେ ଲେଖିହୁଏ ନାହିଁ। ଲେଖିବା ବହୁ ସାଧ ସାଧନାର ଫଳଶ୍ରୁତି। ଏଥିପାଇଁ ବିଭୁଦତ୍ତ ପ୍ରତିଭା ସହ ଗଭୀର ଅଧ୍ୟୟନର ଆବଶ୍ୟକତା ରହିଛି। ଶହେ ପୃଷ୍ଠା ପଢ଼ିଲେ ଯେଉଁ ଗୋଟାଏ ପୃଷ୍ଠା ଲେଖିବାର ସାମର୍ଥ୍ୟ ସୃଷ୍ଟି ହୁଏ, ତାହା ହିଁ ନିଦା ସାହିତ୍ୟ। ରାତାରାତି ସାହିତ୍ୟିକ ହୋଇ ଯିବାର ସ୍ୱପ୍ନ ଦେଖୁଥିବା, ସମ୍ମାନ ପୁରସ୍କାର ଅଧିକାରୀ ହେବାର ମୋହରେ ପଡ଼ିଥିବା ମଣିଷ ହିଁ ସାହିତ୍ୟ ଚୋରି କର୍ମରେ ଲିପ୍ତ ହୋଇ ପଡ଼ନ୍ତି। ଏବେ ସୁଦ୍ଧା ଅନେକେ ଜାଣି ନଥିବେ ଯେ ଅନ୍ୟର ସାହିତ୍ୟକୁ ଚୋରି କରିବା ଧର୍ତ୍ତବ୍ୟ ଅପରାଧ ଓ ଏଥିପାଇଁ ଭାରତୀୟ ପିଙ୍ଗଳ କୋଡ୍‌ରେ ଜେଲ୍, ଜୋରିମାନା ଆଦି ଦଣ୍ଡ ବିଧାନ ରହିଛି।

ମନ୍ଦ କବି ଯଶ ପ୍ରାର୍ଥୀ। ଯେଉଁମାନଙ୍କ ପାଖରେ ସାରସ୍ୱତ ପ୍ରତିଭା କମ୍ ଥାଏ, ସେହିମାନେ ହିଁ ସାହିତ୍ୟିକ ଯଶ ପାଇଁ ବ୍ୟାକୁଳ ହୋଇଥାନ୍ତି। ଏଇ ବ୍ୟାକୁଳତାକୁ

ଚରିତାର୍ଥ କରିବା ପାଇଁ ଏବେ ଅନେକ ସହଜ ସାଧନ ଉପଲବ୍ଧ। କେହି ପଢ଼ନ୍ତୁ ବା ନ ପଢ଼ନ୍ତୁ, ଶହ ଶହ ସାହିତ୍ୟ ପତ୍ରିକା ବାହାରୁଛି। ଏହି ମନ୍ଦ ସାହିତ୍ୟିକମାନେ କଳେ ବଳେ କୌଶଳେ ଏହି ପତ୍ରିକା ପୃଷ୍ଠାରେ ଶୋଭା ପାଉଛନ୍ତି। ଆହୁରି ଗୋଟାଏ ବଡ଼ ପ୍ଲାଟ୍‌ଫର୍ମ୍ ରହିଛି ସୋସିଆଲ୍ ମିଡିଆ- ସାମାଜିକ ଗଣମାଧ୍ୟମ। ଏଠି ମଧ୍ୟ ମନ୍ଦ କବିମାନଙ୍କର ପ୍ରବୃତ୍ତି ଅନୁସାରୀ ନାହିଁ ନଥିବା ବିଭ୍ରାଟ; କବିତା ଚୋରିର ଖଣ୍ଡ ପ୍ରଳୟ।

ଓଡ଼ିଶାରେ ଏମିତି ଅନେକ ଘଟଣା ଘଟିଛି ଅତୀତରେ। ଅଲ୍ ଇଣ୍ଡିଆ ରେଡିଓକୁ ଯୁବ କବିମାନେ ପଠାଉ ଥିବା କବିତାକୁ ଆକାଶବାଣୀର କର୍ମକର୍ତ୍ତା ନିଜସ୍ୱ କରିବାର ଅଭିଯୋଗ ହୋଇଛି। ପ୍ରାଦେଶିକ ଭାଷାରୁ ଅନୁବାଦ କରି ନିଜ ନାମରେ ଛାପି କେତେକ ପୁରସ୍କାର ପାଇଥିବାର ମଧ୍ୟ ନଜିର ରହିଛି। ଜଣେ ସ୍ୱାଭିମାନୀ ସାହିତ୍ୟିକ ଅନ୍ୟ ଜଣକ ଦ୍ୱାରା ବହୁଳ ବ୍ୟବହୃତ ଶବ୍ଦଟିକୁ ସୁଦ୍ଧା ନିଜ ସୃଷ୍ଟିରେ ପ୍ରୟୋଗ କରିବାକୁ ପସନ୍ଦ କରେନାହିଁ। ତା'ର ବିବେକବୋଧ ତାକୁ ଦଂଶନ କରିଥାଏ। ନ ଲେଖିଲେ କେହି ବଦନାମ୍ ହୁଏନାହିଁ। କିନ୍ତୁ ଅନ୍ୟର ଲେଖା ଚୋରି କରି ନିଜ ନାମରେ ଛାପିବାର ଅପଚେଷ୍ଟା କରି ଧରା ପଡ଼ିବାଠାରୁ ବଳି ଅପମାନ ନାହିଁ। ଏହା ବେଶ୍ ଯନ୍ତ୍ରଣାଦାୟକ।

ସୃଜନଶୀଳ ବ୍ୟକ୍ତିଙ୍କୁ ଆମେ କହୁ ବ୍ରହ୍ମା। ଏମାନେ ବହୁ ମର୍ଯ୍ୟାଦାର ଅଧିକାରୀ। ଏମାନେ ଋଷିପ୍ରତିମ। କବି ହେବାର ପ୍ରବଳ ବାସନାରେ ଅତିଷ୍ଠ ହୋଇ ଅସତ୍ ଉପାୟରେ ସାରସ୍ୱତ ଜଗତକୁ କଳଙ୍କିତ କରୁଥିବା ମନ୍ଦ କବିମାନେ କଦାପି ଏହି ପର୍ଯ୍ୟାୟକୁ ଉନ୍ନୀତ ହୋଇ ପାରିବେ ନାହିଁ। କେବଳ ବଦନାମ୍ ଓ ଲୋକଚକ୍ଷୁରେ ଘୃଣ୍ୟ ହେବା ହିଁ ଏମାନଙ୍କର ନିୟତି।



# ଶାବରୀମାଳା ପାଇଁ ରେଡି ଟୁ ୱେଟ୍

ବ୍ୟକ୍ତି ହେଉ ବା ସମାଜ, ଗୋଟିଏ ନିର୍ଦ୍ଦିଷ୍ଟ ବିଶ୍ୱାସର ଆଧାରରେ ଯେତେବେଳେ ପରିଚାଳିତ ହୁଏ, ସେଥିରୁ ତାକୁ ନିବୃତ୍ତ କରିବା ଅତ୍ୟନ୍ତ କଷ୍ଟକର ବ୍ୟାପାର। ସେ ବିଶ୍ୱାସ ଅନ୍ଧ କି ଚକ୍ଷୁଷ୍ମାନ୍, ତା'ର ତର୍ଜମା କ୍ୱଚିତ୍ ହୋଇଥାଏ। ଏହି ବିଶ୍ୱାସ ହିଁ ପରେ ପରେ ଧର୍ମ ସହ ଯୋଡ଼ି ହୋଇଯାଏ ଓ ପରମ୍ପରା ହୋଇଥାଏ। ସେହି ପରମ୍ପରା ପ୍ରତି ମଣିଷ ଏମିତି ଅନୁଗତ ହୋଇପଡ଼େ ଯେ ଏତେ ଟିକେ ବ୍ୟତିକ୍ରମ ହେଲେ ସେ ବିଚଳିତ ହୋଇଯାଏ। ପୂର୍ବଜଙ୍କ ପ୍ରତି ଏହା ଅବମାନନା ବୋଲି ଧରି ନେଇ ଥାଏ। ବିଶ୍ୱର ପ୍ରତ୍ୟେକ ଧାର୍ମିକ ବିଶ୍ୱାସ ମୂଳରେ ଏହି ତତ୍ତ୍ୱଟି ବିଦ୍ୟମାନ।

ଭାରତୀୟ ଲୋକବିଶ୍ୱାସର ଏକ ବିଶେଷତ୍ୱ ହେଉଛି, ସେ ସାଧାରଣ ମଣିଷ ଭିତରେ କିଛି ମାନବେତ୍ତର ଗୁଣାବଳୀ ଦେଖିଲେ ତାକୁ ଈଶ୍ୱର ଆସନରେ ଅଧିଷ୍ଠିତ କରି ଦେଉଥିବା ବେଳେ ତା'ର ଆରାଧ ଇଷ୍ଟଦେବଙ୍କୁ ସାଧାରଣ ମାନବଟିଏ ରୂପେ ପରିକଳ୍ପନା କରେ। 'ଯଥା ଦେହେ ତଥା ଦେବେ'ର ତର୍କ ବଳୟରେ ଆରାଧ ଈଶ୍ୱରଙ୍କୁ ଆବଦ୍ଧ କରି ବେଶ୍ ଆତ୍ମସନ୍ତୋଷ ଲାଭ କରେ। ଏହି ମାନବୀୟ ଚେତନାରେ ଚରିତ୍ରୀଭୂତ ହୋଇଥିବା ଦେବତା ହେଉଛନ୍ତି ଦକ୍ଷିଣ ଭାରତର ପ୍ରସିଦ୍ଧ ଦେବତା ଆୟାପ୍ପାସ୍ୱାମୀ। ସମୁଦ୍ର ପତ୍ତନଠାରୁ ୩୦୦୦ମିଟର ଉଚ୍ଚତାବିଶିଷ୍ଟ ଦୁର୍ଗମ ଶାବରୀମାଳା ପର୍ବତ ଉପରେ ସେ ଅଧିଷ୍ଠିତ। ଦକ୍ଷିଣ ଭାରତର ବିଭିନ୍ନ ସହର ଓ ଗାଁଗୁଡ଼ିକରେ ତାଙ୍କର ମନ୍ଦିର ଥିଲେ ସୁଦ୍ଧା ଏହି ପୀଠଟିର ସ୍ୱାତନ୍ତ୍ର୍ୟ ଅନନ୍ୟ। ସେ ବୈଦିକ ଦେବତା ନୁହନ୍ତି; ଆଞ୍ଚଳିକ ବିଶ୍ୱାସ ଓ କିମ୍ବଦନ୍ତୀକୁ ଆଧାର କରି ଏ ଦେବତା ଗଢ଼ି ଉଠିଛନ୍ତି। ମଣିଷ ଜୀବନର ଚତୁରାଶ୍ରମ- ବାଲ୍ୟ, ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ ଓ ବାନପ୍ରସ୍ଥ ପରି ଆୟାପ୍ପା ସ୍ୱାମୀଙ୍କର ରାଜ୍ୟର ବିଭିନ୍ନ ସ୍ଥାନରେ ବିଭିନ୍ନ ଅବସ୍ଥାର ମନ୍ଦିର ରହିଛି। କୁଳଥୁ ପୂଜାରେ ବାଲ୍ୟ ଆୟାପ୍ପା, ଆଚାନକୋଭିଲ୍‌ରେ ସସ୍ତ୍ରୀକ ଓ ଆର୍ଯ୍ୟନ୍‌କାବୁରେ ତପସ୍ୟାରତ ଆୟାପ୍ପା ଅଛନ୍ତି। ଏସବୁ ପୀଠମାନଙ୍କରେ ନାରୀମାନଙ୍କ ପ୍ରବେଶ ପାଇଁ କୌଣସି କଟକଣା ନାହିଁ। କିନ୍ତୁ ଶାବରୀମାଳାରେ ଆୟପ୍ପା ନୈଷ୍ଠିକ ବ୍ରହ୍ମଚାରୀ ରୂପେ ଅଧିଷ୍ଠାନ କରିଛନ୍ତି। ତେଣୁ ପାରମ୍ପରିକ ବିଶ୍ୱାସ ଅନୁସାରେ ସେ ଯୁବତୀ ନାରୀମାନଙ୍କର ମୁଖ ଦର୍ଶନ କରିବେ ନାହିଁ। ଯେହେତୁ ବ୍ରହ୍ମଚର୍ଯ୍ୟ ଅବସ୍ଥା କଠିନ ସଂଯମ ଓ ବ୍ରତ ନିଷ୍ଠାର ସମୟ,

ତାଙ୍କୁ ଯେଉଁମାନେ ଦର୍ଶନ କରିବାକୁ ଆସନ୍ତି, ସେମାନଙ୍କ ପାଇଁ କିଛି କଠିନ ଅନୁଶାସନ ଥାଏ। ମାଲାୟଲାମ୍ କ୍ୟାଲେଣ୍ଡର ଅନୁସାରେ ମାସର ପ୍ରଥମ ପାଞ୍ଚଦିନ ସେ ଭକ୍ତମାନଙ୍କୁ ଦର୍ଶନ ଦିଅନ୍ତି। ଏହା ଛଡ଼ା ବର୍ଷର କେତେକ ନିର୍ଦ୍ଦିଷ୍ଟ ପର୍ବପର୍ବାଣିରେ ତାଙ୍କର ଦର୍ଶନ ମିଳିଥାଏ। ଏଥିପାଇଁ ୪୧ ଦିନର କଠୋର ବ୍ରତ ପରେ ମୁଣ୍ଡରେ ଇରୁମୁଡି (ନଡ଼ିଆ) ଧରି ଦେବ ଦର୍ଶନ ପାଇଁ ଯାଇଥାନ୍ତି।

କେରଳ ରାଜ୍ୟବାସୀ ପ୍ରଗତି ଓ ପରମ୍ପରାକୁ ସମାନୁପାତରେ ସମ୍ମାନ ପ୍ରଦର୍ଶନ କରିଥାନ୍ତି। ଶାବରୀମାଳା ବ୍ୟତୀତ ଗୁରୁବାୟୁରୁ ମନ୍ଦିର ପରି କେତେକ ମନ୍ଦିରରେ ପାରମ୍ପରିକ ବସ୍ତ୍ର ଲୁଙ୍ଗି ଓ ଶାଢ଼ି ବାଧ୍ୟତାମୂଳକ। ଏପରିକି ରାଜ୍ୟ ବାହାରୁ ଆସୁଥିବା ଭକ୍ତମାନଙ୍କୁ ପରିଧାନ କରିବା ନିମନ୍ତେ ମନ୍ଦିରରୁ ଭଡ଼ାରେ ଲୁଙ୍ଗି ଓ ଶାଢ଼ି ଯୋଗାଇ ଦିଆ ଯାଇଥାଏ। ଦର୍ଶନ ପରେ ସେମାନେ ଭଡ଼ାରେ ନେଇଥିବା ବସ୍ତ୍ର ଫେରସ୍ତ କରି ନିଜ ନିଜ ବସ୍ତ୍ର ପିନ୍ଧିଥାନ୍ତି।

ଆମ ସମ୍ବିଧାନ ନାରୀ ଓ ପୁରୁଷଙ୍କୁ ସମାନ ଅଧିକାର ଦେଉଥିବା ବେଳେ ଓ ପ୍ରତ୍ୟେକଙ୍କର ପୂଜା କରିବାର ଅଧିକାର ଥିବା ବେଳେ ଶାବରୀମାଳା ମନ୍ଦିରକୁ ୧୦ରୁ ୫୦ ବର୍ଷ ବୟସର ନାରୀମାନଙ୍କୁ ପ୍ରବେଶ ଅଧିକାର ନଦେବା ନିଶ୍ଚୟ ସମ୍ବିଧାନ ବିରୋଧୀ। ଏହା ବିରୋଧରେ ୧୯୯୧ ମସିହାରେ ତ୍ରାଭାଙ୍କୋର ହାଇକୋର୍ଟରେ ଆବେଦନ ହୋଇଥିଲା। କିନ୍ତୁ ହାଇକୋର୍ଟଙ୍କ ମତ ମହିଳାଙ୍କ ବିପକ୍ଷରେ ଗଲା। ପୁନର୍ବାର ୨୦୦୬ରେ ଭାରତୀୟ ଯୁବ ଓକିଲ ସଂଘ ସର୍ବୋଚ୍ଚ ନ୍ୟାୟାଳୟରେ ହାଇକୋର୍ଟଙ୍କ ରାୟ ବିରୋଧରେ ଆବେଦନ କରିଥିଲେ। ୨୦୧୬ ପର୍ଯ୍ୟନ୍ତ ଏହି ଆବେଦନ ସେମିତି ପଡ଼ି ରହିଥିଲା। ସୁପ୍ରିମ୍‌କୋର୍ଟ କେରଳ ସରକାର ଓ ଦେବସ୍ୱମ୍ ବୋର୍ଡ ପାଖରୁ ଏ ସମ୍ପର୍କରେ କିଛି ତଥ୍ୟ ଚାହିଁଥିଲେ। ଶେଷରେ ଏକମାତ୍ର ନାରୀ ଇନ୍ଦୁ ମାଲହୋତ୍ରାଙ୍କ ସହ ଚାରିଜଣିଆ ଖଣ୍ଡପୀଠରେ ହାଇକୋର୍ଟଙ୍କ ରାୟକୁ ଖାରଜ କରି ୧୦ରୁ ୫୦ ବର୍ଷ ବୟସ୍କା ନାରୀମାନେ ସୁଦ୍ଧା ମନ୍ଦିର ପ୍ରବେଶ କରି ପାରିବେ ବୋଲି ରାୟ ଦେଲେ।

କିନ୍ତୁ ଏ ରାୟକୁ କାର୍ଯ୍ୟକାରୀ କରାଇ ନଦେବା ପାଇଁ କେରଳବାସୀ ବଦ୍ଧ ପରିକର ହୋଇ ପଡ଼ିଲେ। ମାନ୍ୟବର ସୁପ୍ରିମ୍‌କୋର୍ଟଙ୍କ ରାୟ ବଳରେ ବଳୀୟାନ୍ ହୋଇ ତୃପ୍ତି ଦେଶାଇ ଓ ତାଙ୍କ ଅନୁଗାମୀମାନେ କି ପ୍ରକାର ପ୍ରତିରୋଧର ଶିକାର ହେଲେ, ତାହା ଗଣମାଧ୍ୟମରେ ପ୍ରସାରିତ ହୋଇଛି। ଟ୍ୟାକ୍ସିବାଲାଠାରୁ ହୋଟେଲ ପର୍ଯ୍ୟନ୍ତ ସବୁଠି ଦୃଢ଼ ପ୍ରତିରୋଧର ସମ୍ମୁଖୀନ ହୋଇ ଶେଷରେ ସେମାନଙ୍କୁ ନିରାଶ ହୋଇ ଫେରିବାକୁ ପଡ଼ିଲା।

ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ପାଇଁ ଏ ମନ୍ଦିରର ଦ୍ୱାର ଖୋଲା ଥିବା ବେଳେ କେବଳ ନିର୍ଦ୍ଦିଷ୍ଟ ବୟସର ମହିଳାଙ୍କୁ ମନ୍ଦିର ବାରଣ କରାଯାଇଛି। ପ୍ରଥମ ଦଶବର୍ଷ ଓ ପଚାଶ ବର୍ଷରୁ ଉର୍ଦ୍ଧ୍ୱ ମହିଳାଙ୍କ ପାଇଁ କିଛି ବାରଣ ନାହିଁ। ସବୁଠାରୁ ବଡ଼କଥା

ହେଲା, ଯେଉଁମାନେ ପ୍ରକୃତରେ ଆୟାପ୍ପାଙ୍କ ଭକ୍ତ, ସେମାନେ ଏହି ପ୍ରଥା ପରମ୍ପରାକୁ ସମ୍ମାନ ପ୍ରଦର୍ଶନ କରୁଛନ୍ତି, ସେହି ମହିଳାମାନଙ୍କର କୌଣସି ଆପତ୍ତି ଅଭିଯୋଗ ନାହିଁ। ଯେଉଁମାନେ ମନ୍ଦିର ପ୍ରବେଶ ପାଇଁ ଜିଦ୍ କରୁଛନ୍ତି, ସେମାନେ ସଚ୍ଚା ଭକ୍ତ ବୋଲି କହିବା ସହଜ ନୁହେଁ। ସମସ୍ୟା ହେଉଛି, ଯେଉଁମାନେ ପ୍ରଥା ପରମ୍ପରାକୁ ସ୍ୱୀକାର କରୁଛନ୍ତି, ସେମାନଙ୍କ ନିକଟରେ କେବଳ ପରମ୍ପରାକୁ ସମ୍ମାନ ଦେବା ଛଡ଼ା ଅନ୍ୟ କୌଣସି ଅକାଟ୍ୟ ଯୁକ୍ତି ନାହିଁ। ପ୍ରତିବାଦକାରୀମାନଙ୍କ ପାଖରେ ମଧ୍ୟ ସେମିତି ଦୃଢ଼ ଯୁକ୍ତି ନାହିଁ। କାରଣ ନାରୀମାନେ ମନ୍ଦିର ଦର୍ଶନରୁ ସମ୍ପୂର୍ଣ୍ଣ ବଞ୍ଚିତ ନୁହନ୍ତି। ସେମାନେ ଅନ୍ୟତ୍ର ଆୟାପ୍ପାଙ୍କୁ ଦର୍ଶନ କରୁଥିବା ସଙ୍ଗେ ସଙ୍ଗେ ଏକ ନିର୍ଦ୍ଦିଷ୍ଟ ବୟସ ପାର ହୋଇଗଲେ ମନ୍ଦିରକୁ ପ୍ରବେଶ କରି ପାରୁଛନ୍ତି। ଏ ପରମ୍ପରା ସେମାନଙ୍କର ନିଜସ୍ୱ।

ଏବେ କେରଳର ମହିଳା ଭକ୍ତମାନେ ଆରମ୍ଭ କରିଛନ୍ତି 'ରେଡି ଟୁ ୱେଟ୍' ବା 'ପ୍ରତୀକ୍ଷା ପାଇଁ ପ୍ରସ୍ତୁତ' ଅଭିଯାନ। ଶିଳ୍ପା ନାୟାର, ଅଞ୍ଜଳି ଜର୍ଜ୍, ଐଶ୍ୱର୍ଯ୍ୟା ଓ ପଦ୍ମା ପିଲାଇଙ୍କ ନେତୃତ୍ୱରେ ସୋସିଆଲ ମିଡିଆରେ ଆରମ୍ଭ ହୋଇଥିବା ଏହି ଆନ୍ଦୋଳନ ଏବେ ଦକ୍ଷିଣ ଭାରତର ପ୍ରମୁଖ ଆନ୍ଦୋଳନ। ଲକ୍ଷ ଲକ୍ଷ ମହିଳା ଭକ୍ତ ନିର୍ଦ୍ଦିଷ୍ଟ ବୟସ ଅତିକ୍ରମ କରିବା ପରେ ଆୟାପ୍ପାସ୍ୱାମୀଙ୍କୁ ଦର୍ଶନ କରିବା ପାଇଁ ପ୍ରସ୍ତୁତ ବୋଲି ଉଦ୍‌ଘୋଷଣା କରୁଛନ୍ତି। ଯେଉଁମାନେ ଭକ୍ତ, ସେମାନଙ୍କର ଯଦି କିଛି ଆପତ୍ତି ଅଭିଯୋଗ ନାହିଁ, ଅନ୍ୟମାନେ ସେଥିରେ ହସ୍ତକ୍ଷେପ କରିବା କେତେଦୂର ସମୀଚୀନ, ତାହା ମନରେ ପ୍ରଶ୍ନବାଚୀ ସୃଷ୍ଟି କରେ।

ଧର୍ମକୁ ନେଇ ଆମେ ଅନେକ ଲଢ଼ିଲୁଣି। ବିଶ୍ୱର ଯେତେସବୁ ଯୁଦ୍ଧ ହୋଇଛି, ସବୁଠାରୁ ବେଶୀ ହୋଇଛି ଧର୍ମ ପାଇଁ। ପରସ୍ପରର ଧାର୍ମିକ ବିଶ୍ୱାସ, ପ୍ରଥା, ପରମ୍ପରା ପ୍ରତି ଅସହିଷ୍ଣୁତା ସବୁ ସାମାଜିକ ବିଭ୍ରାଟର ମୂଳ କାରଣ। ଆମ ଧର୍ମନିରପେକ୍ଷ ରାଷ୍ଟ୍ରର ମୂଳମନ୍ତ୍ର ହେଲା ସହିଷ୍ଣୁତା; ପାରସ୍ପରିକ ଧାର୍ମିକ ବିଶ୍ୱାସକୁ ସମ୍ମାନ ପ୍ରଦର୍ଶନ କରିବା। ଏହା ହିଁ ମହତ୍ତର ମାନବୀୟ ଚେତନା। ଆମ ଘରର ଚଳଣିଠାରୁ ଆମ ପ୍ରତିବେଶୀ ଘରର ଚଳଣି ଭିନ୍ନ ହେବାରେ କିଛି ବିଚିତ୍ରତା ନାହିଁ। କାହିଁକି ଭିନ୍ନ ହେଉଛି, ସେଥିପାଇଁ କଳି କରିବା ଆଦୌ ସ୍ପୃହଣୀୟ ନୁହେଁ। ପ୍ରତ୍ୟେକ ମଣିଷର କିଛି ଏକାନ୍ତ ବ୍ୟକ୍ତିଗତ ରହିବା ପରି ଧର୍ମ ଅନୁଷ୍ଠାନର ମଧ୍ୟ ରହିଛି। ଧାର୍ମିକ ଚେତନା ମଣିଷକୁ ଉର୍ଦ୍ଧ୍ୱାୟନ କରେ। କିନ୍ତୁ ଏସବୁ ପରିବର୍ତ୍ତେ ଯଦି ଧର୍ମ କେବଳ ପରସ୍ପର ଭିତରେ ଈର୍ଷା, ଅସୂୟା ଓ ସ୍ୱାର୍ଥ ସାଧନର ମାଧ୍ୟମ ହୁଏ, ତା'ହେଲେ ଧର୍ମବିହୀନ ଜୀବନ ବଞ୍ଚିବା ବୋଧହୁଏ ଶ୍ରେୟସ୍କର ହେବ।



# ଶୋଷିତ ବାର୍ଦ୍ଧକ୍ୟ

ବରିଷ୍ଠ ନାଗରିକମାନଙ୍କ ସୁରକ୍ଷା ଓ ସମ୍ମାନ ପାଇଁ ସରକାରଙ୍କ ପ୍ରକଳ୍ପ ପ୍ରଯୋଜନାର ଅନ୍ତ ନାହିଁ, ତଥାପି ବାର୍ଦ୍ଧକ୍ୟ ଅସୁରକ୍ଷିତ, ତିରସ୍କୃତ, ଶୋଷିତ ଓ ଅବହେଳିତ। ଚିକିତ୍ସା ବିଜ୍ଞାନର ଅଭୂତପୂର୍ବ ଉନ୍ନତି ମଣିଷର ଜନ୍ମ- ମୃତ୍ୟୁର ସୀମା ସରହଦକୁ ଯଥେଷ୍ଟ ପ୍ରଭାବିତ କରିବା ହେତୁ ମଣିଷ ଜୀବନ ଏବେ ଦୀର୍ଘ ଓ ଅନେକାଂଶରେ ନିରାମୟ। ପୂର୍ବରୁ ପ୍ରବାଦ ଥିଲା- କଳି ଷଠା ଅର୍ଥାତ୍ କଳି ଯୁଗରେ ମଣିଷର ଆୟୁଷ ଷାଠିଏ ବର୍ଷ। କିନ୍ତୁ ବିଜ୍ଞାନ ତା' କରାମତିରେ କରି ଦେଇଛି ଅଶୀ ବର୍ଷ। ଷାଠିଏ ବର୍ଷରେ ମଣିଷ କର୍ମକ୍ଷେତ୍ରରୁ ନେଉଛି ଅବସର, କୌଣସି ଅସ୍ୱାଭାବିକ ମୃତ୍ୟୁ ନହେଲେ ମଣିଷ ଅଶୀତି ପାର କରୁଛି, ଅତିଶୟ ସ୍ୱାସ୍ଥ୍ୟ ସଚେତନ ମଣିଷ ନିଜ ହାତରେ ନିଜ ଆୟୁଷ ରେଖାକୁ ଲମ୍ବାଇ ପାରୁଛି।

ଆୟୁଷ ରେଖା ତ ଲମ୍ବୁଛି, କିନ୍ତୁ ସେଇ ରେଖାକୁ ନେଇ ସେ ଯେତେବେଳେ ବଞ୍ଚିବା ପାଇଁ ଚାହୁଁଛି, ଗୁଡ଼ାଏ ପୀଡ଼ା ପୀଡ଼ନ ତା'ର ଗତିରୋଧ କରୁଛି। ତା' ସୁଖ ଶାନ୍ତି ନଷ୍ଟ ହେଉଛି। ଆଶା ଆଶଙ୍କା, ଉଦ୍‌ବେଗ ଅବସାଦରେ ତା' ଜୀବନ ଯନ୍ତ୍ରଣାର ସ୍ତୂପ ପାଲଟି ଯାଉଛି। ଦିନ ଥିଲା ବରିଷ୍ଠ ନାଗରିକମାନେ ସମାଜର କବଚ ସଦୃଶ ଥିଲେ। ସେମାନଙ୍କ ଆଶୀର୍ବାଦ ନେଇ ଯୁବ ପିଢ଼ି ଅସାଧ ସାଧନ କରୁଥିଲେ। ଯେ କୌଣସି କାର୍ଯ୍ୟର ଶୁଭାରମ୍ଭ ବେଳେ ସେମାନଙ୍କ ପରାମର୍ଶ ନ ନେଉଥିଲେ ଚଳୁ ନଥିଲା। ସେମାନଙ୍କ ଦୀର୍ଘ ଜୀବନର ଅନୁଭୂତି ନୂତନ ପିଢ଼ିର ଅନେକ ସମସ୍ୟା ସମାଧାନ କରି ଦେଉଥିଲା। ପରିବାରରେ ସେମାନଙ୍କ ସ୍ଥାନ ସବୁଠାରୁ ସମ୍ମାନଜନକ ସ୍ତରରେ ଥିଲା, ସେମାନଙ୍କ ସେବାଯତ୍ନ ଓ ସୁରକ୍ଷା ପାଇଁ ସମସ୍ତେ ତତ୍ପର ଥିଲେ। କିନ୍ତୁ ସେ ଦିନ ଆଉ ନାହିଁ; ସେ ସଂସ୍କାର ଆଉ ନାହିଁ। ଏବେ ଆମେ ପରିବାରର ବୟୋବୃଦ୍ଧମାନଙ୍କୁ ବୋଝ ବୋଲି ବିଚାରୁଛୁ। ବ୍ୟାକ୍ ଗିଅର ବୋଲି କହୁଛୁ। ସେମାନଙ୍କ ଦାୟିତ୍ୱ ନେବା ପାଇଁ ସନ୍ତାନମାନଙ୍କ ମଧ୍ୟରେ ଛକାପଞ୍ଝା ଚାଲିଛି। ଯେଉଁ ଘରଟିର ପ୍ରତିଟି ଇଟା ଖଣ୍ଡ, ପ୍ରତିଟି ସିମେଣ୍ଟ ବାଲିର ରେଣୁ ସେମାନଙ୍କ ସ୍ୱେଦରେ ସିକ୍ତ ହୋଇଥାଏ, ସେଠାରେ ସେମାନେ ଅଚିହ୍ନା। ମର୍ଯ୍ୟାଦାର ସହ ରହିବାର ଅଧିକାର

ସେମାନଙ୍କର ରହୁନାହିଁ। ପଲ୍ଲୀଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ସବୁଠି ସେଇ ସମସ୍ୟା। ଘରଠାରୁ ବାହାର ପର୍ଯ୍ୟନ୍ତ ସମସ୍ତେ ମାଡ଼ି ଆସନ୍ତି ଏମାନଙ୍କ ଉପରେ ଦାଉ ସାଧିବାକୁ। ବିଭିନ୍ନ ଧାର୍ମିକ ଅନୁଷ୍ଠାନ, ସାହିତ୍ୟ ଅଥବା ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଚାନ୍ଦା ଭେଦା ନାଁରେ ସେମାନଙ୍କୁ ଶୋଷଣ କରି ଚାଲନ୍ତି। ଜ୍ୟୋତିଷ ନାହାକ, ଭାଗ୍ୟ ଭବିଷ୍ୟତର କପୋଳକଳ୍ପିତ କାହାଣୀ କହି ସେମାନଙ୍କୁ ଲୁଣ୍ଠନ କରନ୍ତି। ପୁତ୍ର କନ୍ୟାଙ୍କ ଅନୁପସ୍ଥିତିରେ ସୁଯୋଗ ନେଇ ବିଭିନ୍ନ ଆଳରେ ସେମାନଙ୍କଠୁ ଅର୍ଥ ତୋଷରପାତ କରିଥାନ୍ତି। ଭଲରେ ନହେଲେ ଧମକ ଚମକ କିମ୍ବା ଷଡ଼ଯନ୍ତ୍ର କରି ସମ୍ପତ୍ତି ହଡ଼ପ କରିବାର ଚେଷ୍ଟା କରନ୍ତି। ଏମାନେ କିଶୋରମାନଙ୍କ ପରି ଖୁବ୍ ଶୀଘ୍ର ପ୍ରତାରିତ ହୋଇଥାନ୍ତି। ଘରଭଡ଼ା ଦେଇଥିଲେ ଭଡ଼ାଟିଆଙ୍କ ଦୌରାତ୍ମ୍ୟ ଆହୁରି ବୋଝ ଉପରେ ନଳିତ ବିଡ଼ା। କେୟାରଟେକର୍ ବା ଚାକର ବାକରମାନଙ୍କ ଶୋଷଣ ବି ଆହୁରି ପୀଡ଼ାଦାୟକ। ସନ୍ତାନମାନଙ୍କ ଆଗରେ ଅତ୍ୟନ୍ତ ବିଶ୍ୱସ୍ତତାର ଛଳନା କରି ସେମାନଙ୍କ ଅନୁପସ୍ଥିତିରେ ନିର୍ଯାତନା ଦେବା ଆରମ୍ଭ କରି ଦିଅନ୍ତି। ବରିଷ୍ଠ ନାଗରିକଙ୍କ ପାଇଁ ଉଦ୍ଦିଷ୍ଟ ଖାଦ୍ୟ ନିଜେ ଖାଇଦେବା, ଔଷଧପତ୍ର ଠିକ୍ ସମୟରେ ନଦେବା, ବଜାର ସଉଦା ପାଇଁ ବଜାର ଦରଠାରୁ ଅଧିକ ପଇସା ନେବା, ବେଖାତିର ଭାବରେ ସେମାନଙ୍କ ସେବାଯତ୍ନ କରିବା ମଧ୍ୟ ଶୋଷଣର ଅନ୍ୟତମ ଉଦାହରଣ। ପାରିଶ୍ରମିକ ବାବଦରେ ଏମାନେ ଉପଯୁକ୍ତ ପ୍ରାପ୍ୟ ନେଲେ ସୁଦ୍ଧା କର୍ତ୍ତବ୍ୟ ଠିକ୍ କରନ୍ତି ନାହିଁ। ବରିଷ୍ଠ ନାଗରିକମାନେ ଅସହାୟତା ଦୃଷ୍ଟିରୁ ଏମାନଙ୍କ ଦୌରାତ୍ମ୍ୟ ସହ୍ୟ କରି ନେଇଥାନ୍ତି। ଅନେକ କ୍ଷେତ୍ରରେ ପରିବାର ସଦସ୍ୟଙ୍କ ଦୌରାତ୍ମ୍ୟରୁ ବି ଏମାନେ ମୁକ୍ତ ନୁହନ୍ତି। ପେଟପିଠି ଏକାକାର କରି ଅର୍ଜନ କରିଥିବା ସମ୍ପତ୍ତିକୁ ସନ୍ତାନମାନେ ବାଣ୍ଟିବା ପରି ବୃଦ୍ଧ ପିତାମାତାଙ୍କୁ ମଧ୍ୟ ପାଳି କରି ବାଣ୍ଟି ନେଇଥାନ୍ତି। ସେମାନଙ୍କ ଭାବାବେଗକୁ ଆଦୌ ସମ୍ମାନ ଦିଅନ୍ତି ନାହିଁ। ପରନ୍ତୁ ସେମାନଙ୍କ ଆବେଗମୟତାରେ ଆଘାତ କରି ମାନସିକ ଓ ଆର୍ଥିକ ଶୋଷଣ କରି ଚାଲିଥାନ୍ତି। ସୁନାରୂପା ଅଳଙ୍କାର, ମୂଲ୍ୟବାନ୍ ସାମଗ୍ରୀ, ବ୍ୟାଙ୍କ୍ ଆକାଉଣ୍ଟ, ସ୍ଥାବର ଅସ୍ଥାବର ସମ୍ପତ୍ତି ସେମାନଙ୍କ ଶୋଷଣର ବସ୍ତୁ ହୋଇଥାଏ। ନାତି ନାତୁଣୀମାନେ ମଧ୍ୟ ଏମାନଙ୍କଠାରୁ ଅର୍ଥ ଶୋଷଣ କରି ପାର୍ଟି ପିକ୍‌ନିକ୍, ନିଶା ସେବନ ଆଦିରେ ଅର୍ଥ ବରବାଦ୍ କରିବା ପରିଲକ୍ଷିତ ହୁଏ। ଅତିଶୟ ସ୍ନେହବଶତଃ ଏମାନେ ନାତି ନାତୁଣୀଙ୍କୁ ଆକଟ କରିବାର ସାମର୍ଥ୍ୟ ହରେଇଥାନ୍ତି।

ଦାରିଦ୍ର୍ୟଜନିତ ଅବହେଳିତ ବାର୍ଦ୍ଧକ୍ୟ ସମସ୍ୟା ଉଦ୍‌ବେଗଜନକ, କିନ୍ତୁ ତା'ଠାରୁ ଆହୁରି ଅଧିକ ଚିନ୍ତାଜନକ ସମ୍ପନ୍ନବାର୍ଦ୍ଧକ୍ୟ ଶୋଷଣ। ସମାଜରେ ଏବେ ଏ ସମସ୍ୟା ଧୀରେ ଧୀରେ ଉଗ୍ରରୂପ ନେଉଛି। ଅସୁରକ୍ଷିତ ଆଶଙ୍କା, ଲୋକଲଜ୍ଜା ଅଥବା ମମତାର

ତାଡ଼ନାରେ ଏମାନେ ଚୁପ୍ ରହିବାକୁ ବାଧ୍ୟ ହୁଅନ୍ତି। ଅଚଳାଚଳ ସମ୍ପତ୍ତିର ମାଲିକ ହୋଇ ବି ନିଜ ପାଇଁ ହାତ ଖୋଲି ଖର୍ଚ୍ଚ କରି ପାରନ୍ତି ନାହିଁ। ସେମାନଙ୍କ ସ୍ୱାସ୍ଥ୍ୟ ପାଇଁ ଖର୍ଚ୍ଚକୁ ଅପବ୍ୟୟ ବୋଲି ସନ୍ତାନମାନେ କହନ୍ତି। ଖାଦ୍ୟ କଟକଣା ନାଁରେ ସର୍ବନିମ୍ନ ଶସ୍ତା ଖାଦ୍ୟ ଖୁଆଇ ବଞ୍ଚାଇ ଥାନ୍ତି। ମାସ ଶେଷରେ ପେନ୍‌ସନ୍ ଗଣ୍ଡାକ ହାତେଇ ନେବା ପରେ ଆପଣାର ଲୋକ ସାତପର ହୋଇ ଯାଆନ୍ତି।

ଚଳନ୍ତି ସମୟର ଅଧିକାଂଶ ବରିଷ୍ଠ ନାଗରିକ ସରକାରୀ ପେନ୍‌ସନ୍ ଭୋଗୀ ଅଥବା ବହୁ ଧନ ସମ୍ପତ୍ତିର ଅଧିକାରୀ। ପ୍ରାଚୀନ ସଭ୍ୟତାର ଯୌଥ ପରିବାରରେ ବରିଷ୍ଠ ନାଗରିକଙ୍କର ନିଜସ୍ୱ ପାଣ୍ଠି ପ୍ରାୟତଃ ରହୁ ନଥିଲା। ଯାହାସବୁ ରହୁଥିଲା, ଯୌଥ ଭାବରେ। କିନ୍ତୁ ଏ ସମୟର ବରିଷ୍ଠ ନାଗରିକ ଖୁବ୍ କମ୍ ନିଃସ୍ୱ, ନିସମ୍ବଳ ଅଛନ୍ତି ଏବଂ ତାହା ହିଁ ତାଙ୍କ ପାଇଁ ବଡ଼ ସମସ୍ୟା ହେଉଛି। ଏଥିପାଇଁ ଅନେକ ବରିଷ୍ଠ ନାଗରିକଙ୍କ ଜୀବନ ମଧ୍ୟ ଚାଲିଯାଉଛି। ସେମାନଙ୍କ ପାଖରେ ଘରଦ୍ୱାର, ଗାଡ଼ି ଘୋଡ଼ା, ବ୍ୟାଙ୍କ ବାଲାନ୍ସ ରହିଛି। ମାସ ଶେଷକୁ ପେନ୍‌ସନ୍ ଆସି ବ୍ୟାଙ୍କ୍ ଖାତାରେ ଜମା ହେଉଛି। ପୁଅ ବୋହୂ, ଝିଅ ଜ୍ୱାଇଁ, ନାତି ନାତୁଣୀ- ସମସ୍ତେ ଅଛନ୍ତି। କିନ୍ତୁ ସେମାନଙ୍କୁ ସମୟ ଦେବା ପାଇଁ, ଟିକିଏ ଆଶା ଆଶ୍ୱାସନାର ବାଣୀ ଶୁଣେଇବା ପାଇଁ ପାଖରେ କେହି ନଥାନ୍ତି। ମିଛ ଅଭିନୟ ହେଉ ପଛେ, କାହାର ଏତେ ଟିକିଏ ସହାନୁଭୂତିରେ ସେମାନେ ବିଗଳିତ ହୋଇ ଯାଆନ୍ତି। ସ୍ନେହ ମମତା ପାଇଁ ଝୁରି ହେଉଥିବା ଏଇ ବରିଷ୍ଠ ନାଗରିକଙ୍କୁ ପ୍ରେମ କରିବାର ଛଳନା କରି ଦୁଷ୍ଟା ନାରୀମାନେ ଏମାନଙ୍କୁ ଲୁଣ୍ଠି ନେବାର ଦୃଷ୍ଟାନ୍ତ ରହିଛି। ଏପରିକି ଅବସରପ୍ରାପ୍ତ ଆଇଏଏସ୍, ଆଇପିଏସ୍ କିମ୍ବା ଅନୁରୂପ ଅଧିକାରୀମାନେ ମଧ୍ୟ ଏ ପ୍ରକାର ପ୍ରତାରଣାର ଶିକାର ହୋଇଥାନ୍ତି। ଆବଶ୍ୟକ ପଡ଼ିଲେ ବ୍ଲାକ୍‌ମେଲିଂ କରି ଅଥବା ହତ୍ୟା କରି ସମ୍ପତ୍ତି ହଡ଼ପ କରିବା ଯୋଜନା କରିଥାନ୍ତି।

ଏପରି ଉତ୍କଟ ସମସ୍ୟାରେ ନିପୀଡ଼ିତ ବରିଷ୍ଠ ନାଗରିକଙ୍କ ସମ୍ପର୍କରେ ଚିନ୍ତା କରିବାର ସମୟ ଆସିଛି। ସେମାନଙ୍କୁ ସହାୟତାର ହାତ ବଢ଼ାଇବା ଆମ ସମସ୍ତଙ୍କର ନୈତିକ ଦାୟିତ୍ୱ। ପରିବାର ବାହାରେ ଯେଉଁଠି ବରିଷ୍ଠ ନାଗରିକମାନେ ଶୋଷଣର ଶିକାର ହେଉଛନ୍ତି, ସେମାନେ ପ୍ରଥମେ ପରିବାର ସଦସ୍ୟଙ୍କ ପାଖରେ ଏସବୁ ନିଃସଙ୍କୋଚରେ ପ୍ରକାଶ କରିବା ଉଚିତ୍। ବରିଷ୍ଠ ନାଗରିକଙ୍କୁ ସବୁ ପ୍ରକାର ସହାୟତା ଦେବା ପାଇଁ ପୁଲିସ୍ ସର୍ବଦା ତତ୍ପର। ସେମାନଙ୍କର ଦୃଷ୍ଟି ଆକର୍ଷଣ କରି ସମସ୍ୟା ସମାଧାନ ପାଇଁ ପଦକ୍ଷେପ ନେବା ଉଚିତ୍ ହେବ। ଯେଉଁଠି ପରିବାରରେ ଶୋଷଣ କଷଣ ଚାଲିଛି, ସେଠାରେ ବରିଷ୍ଠ ସଦସ୍ୟମାନେ ନିରବରେ ଯାତନା ସହ୍ୟ କରିବା

ନିଜ ପ୍ରତି ଅନ୍ୟାୟ। ସକଳ ଆବେଗିକ ସମ୍ପର୍କ ଓ ଲୋକଲଜ୍ଜାକୁ ପଛ କରି ସେମାନେ ବି ପୁଲିସ୍‌ର ସହାୟତା ନେବା ଉଚିତ୍। ଏହା ଅନ୍ୟମାନଙ୍କ ପାଇଁ ଦୃଷ୍ଟାନ୍ତ ହେବ। ପ୍ରତିବେଶୀମାନେ ମଧ୍ୟ ଏ ପ୍ରକାର ଶୋଷଣ ବିରୁଦ୍ଧରେ ପୁଲିସ୍‌ରେ ସମ୍ବାଦ ଦେଇ ପାରିବେ। ବରିଷ୍ଠ ନାଗରିକଙ୍କ ସୁରକ୍ଷା ପାଇଁ ଯେଉଁସବୁ ଆଇନ୍ କାନୁନ୍ ରହିଛି, ସେମାନେ ସେ ବାବଦରେ ଭଲ ଭାବରେ ଅବଗତ ହୋଇ ତଦନୁଯାୟୀ କାର୍ଯ୍ୟାନୁଷ୍ଠାନ କଲେ ଏକ ନିରାପଦ, ଶୋଷଣମୁକ୍ତ ବାର୍ଦ୍ଧକ୍ୟ ସମ୍ଭବ ହେବ।

ବରିଷ୍ଠ ନାଗରିକମାନେ ଆମର ସମ୍ମାନ ଓ ସମ୍ପଦ। ସେମାନେ ଅସମ୍ମାନିତ ଓ ଅସୁରକ୍ଷିତ ହେଲେ ଆମ ସଭ୍ୟତା ଓ ସଂସ୍କୃତି ଧ୍ୱଂସ ହୋଇଯିବ।



# ପୁନଶ୍ଚ କନ୍ୟାଶ୍ରମରେ କଳଙ୍କ

କନ୍ୟାଶ୍ରମର କର୍ଦ୍ଦମାକ୍ତ ଇତିହାସ ବହୁ ପୁରାତନ। ଏ ଅଛିଣ୍ଡା ସମସ୍ୟାର ସତେ ଯେମିତି କୌଣସି ସମାଧାନ ହିଁ ନାହିଁ! ପୁରାଣ ଯୁଗର କଥା। କଣ୍ୱ ଋଷିଙ୍କ ଆଶ୍ରମ ପାଳିତା କନ୍ୟା ଶକୁନ୍ତଳା। ଋଷି ବିଶ୍ୱାମିତ୍ର ଓ ମେନକାଙ୍କର ସେ ପରିତ୍ୟକ୍ତ କନ୍ୟାଶିଶୁ। ଜଙ୍ଗଲରୁ ସାଉଁଟି ନେଇ ଆଶ୍ରମରେ ପାଳିଥିଲେ। ସମୟକ୍ରମେ କନ୍ୟାଟି ବୟଃପ୍ରାପ୍ତ ହୋଇଛି। ରାଜା ଦୁଷ୍ୟନ୍ତଙ୍କ ଦୃଷ୍ଟିରେ ତା'ର ଅପରୂପ ସୌନ୍ଦର୍ଯ୍ୟ ପଡ଼ିଛି। ସେ ମୁଗ୍ଧ ହୋଇ ତା' ସହ ଶାରୀରିକ ସମ୍ପର୍କ ସ୍ଥାପନ କରିଛନ୍ତି। ରାଜରାଣୀ କରିବାର ପ୍ରତିଶ୍ରୁତି ଦେଇ ରାଜ୍ୟକୁ ଫେରି ଯାଇଛନ୍ତି। ପରିଣତି ସ୍ୱରୂପ, ଶକୁନ୍ତଳା ଅନ୍ତଃସତ୍ତ୍ୱା ହୋଇଛନ୍ତି। ପ୍ରବ୍ରଜ୍ୟାରୁ ଫେରି କଣ୍ୱ ଋଷି ସମସ୍ତ ବୃତ୍ତାନ୍ତ ଜାଣିବା ପରେ ଶକୁନ୍ତଳାଙ୍କୁ ହସ୍ତିନାପୁରର ରାଜା ଦୁଷ୍ୟନ୍ତଙ୍କ ନିକଟକୁ ପ୍ରେରଣ କରିଛନ୍ତି। କିନ୍ତୁ ରାଜା ଶକୁନ୍ତଳାଙ୍କ ଗର୍ଭସ୍ଥ ଶିଶୁର ପିତୃତ୍ୱକୁ ଅସ୍ୱୀକାର କରିଛନ୍ତି, ଏପରିକି ଶକୁନ୍ତଳାଙ୍କୁ ଆଗରୁ କେଉଁଠି କେବେ ଦେଖି ନାହାନ୍ତି ବୋଲି କହିଛନ୍ତି। ଦୃଷ୍ୟନ୍ତ- ଶକୁନ୍ତଳା ଉପାଖ୍ୟାନ ମୂଳରେ ଏହା ହିଁ ବାସ୍ତବତା ଯେ ରାଜା ଦୁଷ୍ୟନ୍ତ ଆଶ୍ରମ ପାଳିତା କନ୍ୟା ଶକୁନ୍ତଳାକୁ ଅନ୍ତଃସତ୍ତ୍ୱା କରି ପ୍ରତ୍ୟାଖ୍ୟାନ କରିଛନ୍ତି। ବାସ୍, ଏହା ହିଁ ନିଷ୍ଠୁର ସତ୍ୟ। ବାସ୍ତବ କଥା। ହୁଏତ ପରବର୍ତ୍ତୀ ପର୍ଯ୍ୟାୟରେ ରାଜାଙ୍କ ଅନ୍ୟାୟ କାର୍ଯ୍ୟକୁ ଯଥାର୍ଥ ପ୍ରତିପାଦନ କରିବା ପାଇଁ ଗୁଡ଼ାଏ ଅବାସ୍ତବ କାହାଣୀ ଯଥା ଦୁର୍ବାସାଙ୍କ ଅଭିଶାପ, ଗଭୀର ଜଳରେ ରାଜପ୍ରଦତ୍ତ ମୁଦ୍ରିକା ହଜିବା, ମାଛ ମୁଦ୍ରିକାଟିକୁ ଗିଳିବା, ପୁଣି ଧୀବରଟିଏ ଦ୍ୱାରା ମାଛ ପେଟରୁ ମୁଦ୍ରିକା ବାହାରିବା, ରାଜା ତାଙ୍କର ସ୍ମୃତି ଫେରି ପାଇବା ଆଦି ଯୋଡ଼ି ହୋଇ ଯାଇଛି।

କୁନ୍ତ ଭୋଜ ରାଜା ଅପୁତ୍ରିକ ଥିଲେ। କିଛି ପୁଣ୍ୟ ଅର୍ଜନ କରି ପୁତ୍ର ସନ୍ତାନ ପ୍ରାପ୍ତି ପାଇଁ ନିଜ ପାଳିତା କନ୍ୟା କୁନ୍ତୀଙ୍କୁ ଦୁର୍ବାସାଙ୍କ ସେବା କରିବା ନିମନ୍ତେ ତାଙ୍କ ଆଶ୍ରମରେ ଛାଡ଼ିଥିଲେ। ସେହି ଆଶ୍ରମରେ ହିଁ କୁନ୍ତୀ ଅନ୍ତଃସତ୍ତ୍ୱା ହୋଇ କର୍ଣ୍ଣଙ୍କୁ ଜନ୍ମ ଦେଇଥିଲେ। ଏହି କାନୀନ ପୁତ୍ର (କୁମାରୀ ମାଆର ସନ୍ତାନ)ର ପିତୃତ୍ୱ ପାଇଁ ଶେଷରେ ଆକାଶର ସୂର୍ଯ୍ୟଙ୍କ ନାମ ଯୋଡ଼ି ଦିଆଗଲା। ବାସ୍ତବ ଦୃଷ୍ଟିରୁ ଯିଏ ସକଳ ଶକ୍ତିର ଆଧାର, ଅଥଚ ନିର୍ବାକ୍।

ଏସବୁ ପ୍ରାଚୀନ ଯୁଗର ପ୍ରତିନିଧି ସ୍ଥାନୀୟ ଆଶ୍ରମ ବାସିନୀଙ୍କ କଥା। ସେହି ତୁଳନାରେ ସାଧାରଣ ସେବିକା ସ୍ତରର କନ୍ୟାମାନଙ୍କର କି ପ୍ରକାର ପୀଡ଼ନ ହେଉଥିବ,

ତାହା ଇତିହାସର ବିସ୍ମୃତି ଗର୍ଭରେ ଲୀନ ହୋଇ ଯାଇଛି। ସମ୍ପ୍ରତି ଏହି ସମସ୍ୟା ଭିନ୍ନ ଭିନ୍ନ ରୂପରେ ଆମ ସମାଜକୁ ଆକ୍ରାନ୍ତ କରି ଚାଲିଛି। କନ୍ୟାଶ୍ରମମାନଙ୍କରେ ଗାଧୁଆ ଘରେ କୁମାରୀ କନ୍ୟାମାନେ ସନ୍ତାନ ପ୍ରସବ କରିବା ସମ୍ବାଦ ଆମ ପାଇଁ ସ୍ୱାଭାବିକ ହୋଇ ସାରିଲାଣି। ଅନ୍ତଃସତ୍ତ୍ୱା କୁମାରୀମାନେ ନିନ୍ଦା ଅପବାଦ ଭୟରେ ଆଶ୍ରମ ପରିସରରେ ଆତ୍ମହତ୍ୟା କରିବା ଘଟଣା ଶୁଣି ଆମ କାନ ବଧିର ହୋଇ ଗଲାଣି। ଗୋଟିଏ କୋଉଠି ଏ ପ୍ରକାର ସମ୍ବାଦ ଆସୁ ଆସୁ ତା' ପଛକୁ ତା' ପଛକୁ କ୍ରମାଗତ ସମ୍ବାଦମାନ ଲୋକଲୋଚନକୁ ଆସୁଛି। ସମ୍ପୃକ୍ତ ଆଶ୍ରମର ପ୍ରଧାନ ଶିକ୍ଷକଙ୍କଠାରୁ ଚପରାଶି, ରୋଷେୟା, ରାତ୍ରି ଜଗୁଆଳୀ ପର୍ଯ୍ୟନ୍ତ ସବୁ ବର୍ଗର ପୁରୁଷମାନଙ୍କୁ ଅପରାଧୀ ରୂପେ ଠାବ କରାଯାଉଛି। କେଉଁଠି ସେମାନଙ୍କୁ ଚାକିରିରୁ ନିଲମ୍ବନ କରାଯାଉଛି ତ ପୁଣି କେଉଁଠି ବହିଷ୍କୃତ। କେଉଁଠି ମାମଲାରେ ଦୋଷୀ ସାବ୍ୟସ୍ତ ହୋଇ ସଜା ଭୋଗୁଛନ୍ତି। ଗଣମାଧ୍ୟମ ସଜାଗ ହେଉଛନ୍ତି। ସ୍ୱେଚ୍ଛାସେବୀ ଅନୁଷ୍ଠାନ, ବିରୋଧୀ ଦଳମାନେ ଏ ପରିସ୍ଥିତିର ସଦୁପଯୋଗ ପାଇଁ ଗୋଟିଏ ବି ସୁଯୋଗ ହାତଛଡ଼ା କରୁ ନାହାନ୍ତି। ସାହିତ୍ୟିକମାନେ ଗଳ୍ପ, କବିତା ଲେଖି ପକାନ୍ତି। ଏସବୁ ପ୍ରତିକୂଳ ପରିସ୍ଥିତିକୁ ସମ୍ମୁଖୀନ ହେବା ପାଇଁ ସରକାର ଯଥାସାଧ୍ୟ ପ୍ରଚେଷ୍ଟା କରିଥାନ୍ତି। ଅଭିଯୁକ୍ତଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ହୁଏ। ପ୍ରମାଣ ଅଭାବରୁ କିଛି ଧୂର୍ତ୍ତ ଅଭିଯୁକ୍ତ ଖସି ଯାଆନ୍ତି ତ ଜଟିଳ ପରିସ୍ଥିତିକୁ ବୁଦ୍ଧିମତ୍ତାର ସହ ସମ୍ମୁଖୀନ ହୋଇ ନ ପାରି ନିରୀହ, ନିର୍ଦ୍ଦୋଷମାନେ ସଜା ବି ଭୋଗନ୍ତି। ଏହି ସମ୍ବେଦନଶୀଳ ପ୍ରସଙ୍ଗ ଜନମାନସକୁ କିଛିଦିନ ପାଇଁ ଆଚ୍ଛନ୍ନ କରି ରଖେ। ସମସ୍ତେ ଚାହାନ୍ତି, ଏ କଳଙ୍କିତ ସାମାଜିକ ଲଜ୍ଜାର ପୁନରାବୃତ୍ତି ନ ହେଉ। ପ୍ରଶାସନ ଆହୁରି ତତ୍ପର ହୁଏ। କନ୍ୟାଶ୍ରମମାନଙ୍କରେ ସଂସ୍କାର ଆଣିବା ପାଇଁ ନୂଆ ନୂଆ କାର୍ଯ୍ୟଧାରା ଓ ମାର୍ଗଦର୍ଶିକା ପ୍ରଣୟନ ହୁଏ। କାର୍ଯ୍ୟରେ ଅବହେଳା ପ୍ରଦର୍ଶନ କରୁଥିବା କର୍ମଚାରୀମାନଙ୍କୁ ଚେତାବନୀ ଦିଆଯାଏ। ବୁଦ୍ଧିଜୀବୀମାନଙ୍କୁ ନେଇ ନୂଆ ପ୍ରକଳ୍ପ ପ୍ରଯୋଜନା ହୁଏ। ନୂଆ କାର୍ଯ୍ୟପନ୍ଥା ହାତକୁ ନିଆହୁଏ। ନୂଆ ପ୍ରତିବନ୍ଧକ ଲାଗୁ ହୁଏ। ଛାତ୍ରଛାତ୍ରୀଙ୍କ ପ୍ରତି ତୀକ୍ଷ୍ଣ ନଜର ଦେବା ପାଇଁ ଅଧିକ ସଂଖ୍ୟକ ମହିଳା କର୍ମଚାରୀ ନିଯୁକ୍ତ ହୁଅନ୍ତି। ସେମାନଙ୍କ ନିୟମିତ ସ୍ୱାସ୍ଥ୍ୟ ପରୀକ୍ଷା ପାଇଁ ଡାକ୍ତର, ନର୍ସ, ଏଏନ୍ଏମ୍‌ଙ୍କୁ ଦାୟିତ୍ୱ ଦିଆଯାଏ। ଏସବୁ ଦେଖି ମନେହୁଏ କନ୍ୟାଶ୍ରମର ଏ ସମସ୍ୟା ସମାଧାନ ହୋଇଯିବ। ଆଉ କଳଙ୍କିତ ହେବନାହିଁ କନ୍ୟାଶ୍ରମ। ଶାନ୍ତିରେ ନିଃଶ୍ୱାସ ନିଅନ୍ତି ସମସ୍ତେ। କିନ୍ତୁ ଏ ଆଶା ଭରସା, ଆକଳନ ବୃଥା ଯାଏ। ପୁଣି ସେଇ କଳଙ୍କିତ ଅଧ୍ୟାୟର ପୁନରାବୃତ୍ତି ହୁଏ। କେଉଁ ଗୋଟାଏ ଆଶ୍ରମ ସ୍କୁଲର ଏଇପରି ନିନ୍ଦନୀୟ ସମ୍ବାଦଟିଏ ପରିବେଷଣ ହେଉ ନ ହେଉଣୁ ପାଖକୁ ପାଖ ପୁଣି ଲମ୍ବିଯାଏ କଳଙ୍କିତ ଅଧ୍ୟାୟର ଫର୍ଦ୍ଦ।

ତେବେ ପ୍ରଶ୍ନ ଉଠେ, ଏ ସମସ୍ୟାର କ'ଣ ଅନ୍ତ ହେବନାହିଁ ? କେଉଁଠି ଲୁଚି ରହିଛି ସମସ୍ୟାର ସମାଧାନର ସୂତ୍ର ? କନ୍ୟାଶ୍ରମମାନଙ୍କରେ ଯଦି ପୁରୁଷ ଶିକ୍ଷକ ଓ କର୍ମଚାରୀମାନେ ବାରମ୍ବାର ଏହି ଅପରାଧରେ ଅଭିଯୁକ୍ତ ହେଉଛନ୍ତି, ତେବେ କନ୍ୟାଶ୍ରମମାନଙ୍କରେ କେବଳ ମହିଳା କର୍ମଚାରୀଙ୍କୁ କାହିଁକି ନିଯୁକ୍ତି ଦିଆଯାଉ ନାହିଁ ? କନ୍ୟାଶ୍ରମ ପରି ଗୋଟିଏ ଅନୁଷ୍ଠାନକୁ ଚଳାଇବା ଏପରି ଦୁରୂହ କାର୍ଯ୍ୟ ନୁହେଁ ଯେ ପୁରୁଷଙ୍କ ବିନା ଆଶ୍ରମ ଚାଲି ପାରିବ ନାହିଁ । ଆକାଶରେ ବ୍ୟୋମଯାନ ଚଳାଉ ଥିବା, ସୀମାନ୍ତରେ ଯୁଦ୍ଧ କରୁଥିବା, ଅତ୍ୟାଧୁନିକ ଜ୍ଞାନକୌଶଳ ସମ୍ଭୂତ ପ୍ରଯୁକ୍ତି ବିଦ୍ୟାରେ ପାରଙ୍ଗମତା ହାସଲ କରିଥିବା ଆମ ମହିଳାମାନଙ୍କ ପାଇଁ କନ୍ୟାଶ୍ରମଟିଏ ଚଳାଇବା ଅତ୍ୟନ୍ତ ସାଧାରଣ କଥା । ଦକ୍ଷ ଓ ସଚ୍ଚୋଟ ମହିଳାମାନଙ୍କୁ ଏ ଦାୟିତ୍ୱ ଦିଆଯାଉ । ଯଦି ଆଶଙ୍କା କରାଯାଉଛି ପୀଡ଼ିତାମାନେ ବାହାରେ ଅପକର୍ମର ଶିକାର ହୋଇ ଅନ୍ତଃସତ୍ତ୍ୱା ହେଉଛନ୍ତି, ତେବେ ଆଶ୍ରମରେ ଯେଉଁ ସ୍ୱାସ୍ଥ୍ୟକର୍ମୀ ନିଯୁକ୍ତି ପାଇଛନ୍ତି, ସେମାନଙ୍କ ପାଖରେ ଖବର ରହୁନାହିଁ କେମିତି ? ପ୍ରତି ଛାତ୍ରୀଙ୍କୁ ମାସକୁ ମାସ ପରୀକ୍ଷା କରିବା ଦ୍ୱାରା ଏ ସମସ୍ୟାର ନିଶ୍ଚୟ ସମାଧାନ କରି ହୁଅନ୍ତା । ସନ୍ତାନ ଜନ୍ମ ପାଇଁ ନଅମାସ କାଳ ଗର୍ଭଧାରଣ ଯେ ଗୋପନୀୟ ଭାବରେ ନାବାଳିକା ଝିଅଟିଏ କରି ପାରିବ, ଏହା ଅତ୍ୟନ୍ତ ଅବାସ୍ତବ କଥା । ପ୍ରତିଦିନ ପ୍ରାର୍ଥନା ସଭା, ଶ୍ରେଣୀଗୃହ, ଭୋଜନ କକ୍ଷ, ଡ୍ରିଲ୍ ଶ୍ରେଣୀରେ ନିଶ୍ଚୟ ସବୁ ଛାତ୍ରୀମାନଙ୍କୁ ଏକତ୍ରିତ ହେବାକୁ ହୋଇଥାଏ । ଏଠାରେ ମଧ୍ୟ ଛାତ୍ରୀଟିର ଏ ଅବସ୍ଥା ଅନ୍ୟାନ୍ୟ ଶିକ୍ଷୟିତ୍ରୀଙ୍କ ଦୃଷ୍ଟିରେ ପଡୁନାହିଁ କେମିତି, ତାହା ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା । ଛୁଟିରେ ଘରକୁ ଯାଉଥିବା ଝିଅମାନଙ୍କୁ ନିଜ ନିଜ ଅଭିଭାବକମାନଙ୍କ ଦାୟିତ୍ୱରେ ପଠାଇବା ମଧ୍ୟ ଆଶ୍ରମ କର୍ତ୍ତୃପକ୍ଷଙ୍କ କାର୍ଯ୍ୟ । ପ୍ରତି ମାସରେ ଅଭିଭାବକମାନଙ୍କ ବୈଠକ କନ୍ୟାଶ୍ରମ ପରିସରରେ କଲେ ଛାତ୍ରୀମାନଙ୍କ ଅନେକ ସମସ୍ୟାର ସମାଧାନ ହୋଇଯାଇ ପାରିବ ।

ଏମିତି କୌଣସି ସମସ୍ୟା ନାହିଁ, ଯାହାର ସମାଧାନ ନାହିଁ । ସେ ସମାଧାନର ଖିଅ ଖୋଜି ବାହାର କରିବାକୁ ପଡ଼ିବ । ସେଥିପାଇଁ ଯଦି ଆମର ଉଦ୍ୟମ ଓ ଇଚ୍ଛାଶକ୍ତି ନାହିଁ, ତେବେ ସୋରିଷ ପରି ସମସ୍ୟାଟିଏ ଆମ ଆଗରେ ପର୍ବତ ପରି ହୋଇ ଆମ ପ୍ରଗତିର ପ୍ରତିରୋଧ କରିବ । ଅପର ପକ୍ଷେ ପର୍ବତ ପରି ସମସ୍ୟା ମଧ୍ୟ ଆମ ସାମୂହିକ ଉଦ୍ୟମ ଓ ଇଚ୍ଛାଶକ୍ତିର ପ୍ରଭାବରେ ତୁଳା ପରି କୁଆଡ଼େ ଉଡ଼ିଯିବ । ତେବେ କନ୍ୟାଶ୍ରମମାନଙ୍କରୁ ପୁଣି କିଛି ଅପ୍ରୀତିକର ସମ୍ବାଦ ଶୁଣିବା ପୂର୍ବରୁ ବିଚରା ପୀଡ଼ିତାମାନଙ୍କ ସୁରକ୍ଷା ପାଇଁ ଆମେ ଯେ ଯାହାର ସାମର୍ଥ୍ୟ ପ୍ରଦାନ କରିବାକୁ ନୀତିବଦ୍ଧ ହେବା । ସେମାନଙ୍କୁ ଏକ ସୁରକ୍ଷିତ ଭବିଷ୍ୟତ ଦେବା ଉଚିତ୍ ନୁହେଁ କି ?



# ମୋହଗ୍ରସ୍ତ ସୃଜନଶୀଳତା

ଶବ୍ଦରେ କୋଣାର୍କ ଗଢୁଥିବା ଶିଳ୍ପୀମାନଙ୍କୁ ସାରସ୍ୱତ ଜଗତର ବ୍ରହ୍ମା ବା ପ୍ରଜାପତି ବୋଲି କୁହାଯାଇଛି। ଅପାର କାବ୍ୟ ସଂସାରରେ କବିରେବ ପ୍ରଜାପତି। ଶତପଥ ବ୍ରାହ୍ମଣରେ ଶବ୍ଦକୁ ବ୍ରହ୍ମର ମାନ୍ୟତା ଦିଆଯାଇଛି। ବାଇବେଲ୍‌ରେ ସୁଦ୍ଧା ଶବ୍ଦକୁ କୁହାଯାଇଛି ଈଶ୍ୱର। ଏହି ଶବ୍ଦ ବ୍ରହ୍ମକୁ ନେଇ ସାଧନା କରୁଥିବା ଶବ୍ଦଶିଳ୍ପୀମାନଙ୍କୁ ଈଶ୍ୱରଙ୍କ ସମକକ୍ଷ ହେବାପରି କିଛି ମାନ୍ୟତା ଦେବାରେ କୌଣସି ଅଯଥାର୍ଥତା ନାହିଁ। ଏକାଗ୍ରତା, ନିଷ୍ଠା ଓ ବିଶ୍ୱସ୍ତତାର ସହ ଏହି ଶବ୍ଦମାନଙ୍କୁ ନେଇ ଅହରହ ଶିଳ୍ପମନସ୍କ ହୋଇ ରହୁଥିବା ଏହି କୁନିକୁନି ଈଶ୍ୱରମାନେ ବେଳେବେଳେ ପଥ ହୁଡନ୍ତି। ନିଜର ଜ୍ଞାନଗାରିମା ଓ ବିଭୁଦତ୍ତ ପ୍ରତିଭାକୁ ନିଲାମ କରିଦିଅନ୍ତି ଅର୍ଥ ବା ପୁରସ୍କାର ମୋହରେ। କ୍ଷମତାଶାଳୀ ଲୋକଙ୍କର ସ୍ତୁତିଗାନ କରନ୍ତି। ଅହଂଚେତନାକୁ ଭୂଲୁଣ୍ଠିତ କରନ୍ତି। ବିଭୁଦତ୍ତ ପ୍ରତିଭାର ସେ ଅମର୍ଯ୍ୟାଦା କରନ୍ତି।

ଏମିତି କଥାଟିଏ। ସଖୀ ପରିଚାରିକାଙ୍କ ଗହଣରେ ରାଜଜେମା ଯାଇଥିଲେ ବନ ବିହାରରେ। ସଦା ଚଳଚଞ୍ଚଳ ଖୁସି ମିଜାଜ୍‌ର ଜେମାଙ୍କ କାନରେ ପଡିଲା ହୃଦୟରେ କୋମଳ ବେଦନା ସୃଷ୍ଟି କରୁଥିବା ଏକଟଣା ବଂଶୀ ସ୍ୱନଟିଏ। ଆନମନା ହୋଇଗଲେ ଜେମା। ବଂଶୀର ବିରହସ୍ୱନ ତାଙ୍କ ନିଃସଙ୍ଗ ହୃଦୟରେ ସୃଷ୍ଟି କଲା ଅସହ୍ୟ ଯନ୍ତ୍ରଣା। ନିଜ ଚମ୍ପା କଢ଼ି ଆଙ୍ଗୁଠିରୁ ମୁଦ୍ରିକାଟି ବାହାର କରି ସଖୀକୁ ଦେଇ କହିଲେ - ଯାଆ ଏଇଟା ଦେଇ ବଂଶୀ ବାଦକକୁ ବଂଶୀବାଦନ ବନ୍ଦ କରିବାକୁ କହିବୁ। ଆଦେଶ ପାଳନ କଲା ସଖୀ। କିନ୍ତୁ ଫେରିଆସି ଜେମାଙ୍କ ହାତକୁ ମୁଦ୍ରିକାଟି ଫେରସ୍ତ ଦେଇ ବଂଶୀବାଦକର ଯେଉଁ ସର୍ତ୍ତ କଥା କହିଲା, ସେଥିରେ ହାତେ ଲମ୍ବ ଜିଭ କାମୁଡିଲେ ଜେମା। ଏ ମା ! କମ୍ ତ ସାହସ ନୁହେଁ ଟୋକାଟାର। ଚାହିଁଥିଲେ ବାପାଙ୍କୁ କହି ତା ମୁଣ୍ଡକାଟ କରିବାକୁ ମୁହୂର୍ତ୍ତେ ଲାଗିନଥା'ନ୍ତା ତାଙ୍କୁ। କିନ୍ତୁ ସେ ବେଦରଦୀ ନଥିଲେ। ଦୁଇ ହାତରୁ ଦୁଇଟା ସ୍ୱର୍ଣ୍ଣ କଙ୍କଣ ବାହହାର କରି ସେ ସଖୀ ହାତକୁ ଦେଇ କହିଲେ - ଏ ଦୁଇଟା ତାକୁ ଦେବୁ ଓ ବୁଝେଇ କହିବୁ, ସେ ବନ୍ଦ କରିଦବ ବଂଶୀ ବଜାଇବା। ଏଥର ବି ଫେରିଆସି ସଖୀ ସେଇ ସର୍ତ୍ତ ଦୋହରାଇଲା। ତାର ସେଇ ସର୍ତ୍ତ। ସେଇ ଜିଦ୍। ରାଜାଝିଅ ତାକୁ

ବାହାହେବା ପାଇଁ ପ୍ରତିଶ୍ରୁତି ଦେଲେ ସେ ବନ୍ଦ କରିଦେବ ତା ବଂଶୀବାଦନ। ଲାଜରେ ସଢ଼ିଗଲା ରାଜାଝିଅ। ଛି, ଛି, ଏ କି ଅଲାଜୁକ କଥା। ଏଥର ବେକର ମୁକ୍ତାମାଳଟି ସଖୀ ହାତରେ ଗୁଞ୍ଜିଦେଇ କହିଲେ ଯାଇ ଦେଖ୍ ତ, ଲୋକଟା ବୁଝୁଛି କି ନାହିଁ। ପୁଣି ଫେରିଲା ସଖୀ ନିରାଶରେ। ଏଥରକ ମୁଣ୍ଡର ସୁନା ମୁକୁଟଟି ବାହାର କରି ସଖୀ ହାତରେ ଦେଇ କହିଲେ ଏଇଥର  ଶେଷ ଚେଷ୍ଟା କରି ଦେଖ କ'ଣ କହୁଛି ଲୋକଟା। ତା'ପରେ ଯାହା କରିବା। ସଖୀ ହାତରେ ସୁନା ମୁକୁଟିକୁ ଦେଖି ବଂଶୀ ବାଦକ ଲୋଭାତୁର ହୋଇ ଗହିଁଲା। ଅଷ୍ଟ ଅଳଙ୍କାର ଖଚିତ ବହୁ ମୂଲ୍ୟବାନ୍ ମୁକୁଟ। ଏତେ ପାଖରୁ ସେ କେବେ ଏମତି ଜିନିଷ ଦେଖି ନଥିଲା। ଲୋଭ ସମ୍ବରଣ କରିପାରିଲା ନାହିଁ। ମୁଣ୍ଡ ନୁଆଁଇ ସଖୀ ହାତରୁ ମୁକୁଟଟି ଗ୍ରହଣକଲା ଓ କେବଳ ଏଇଠି ନୁହେଁ, ଯଦି ରାଜାଝିଅ କହିବେ ସେ ଆଉ କେବେ ବି କୋଉଠି ବଂଶୀବାଦନ କରିବ ନାହିଁ ବୋଲି ପ୍ରତିଶ୍ରୁତି ଦେଇ ଗଲିଗଲା। ଗଡ଼ଟିଏ ଜିତିଲା ପରି ସଖୀ ଫେରିଆସି ସବୁ କଥା ଜେମାକୁ କହିଲା। ଖୁସି ହୋଇ ପାରିଲେ ନାହିଁ ଜେମା। ଗୋଟିଏ ଅବରୁଦ୍ଧ ବେଦନାରେ ସ୍ୱଗତୋକ୍ତି କଲେ - ହତଭାଗ୍ୟ ତୁ କ'ଣ କଲୁ! ସୁନା ମୁକୁଟର ମୋହ ତୁଟେଇ ପାରିଥିଲେ ତୁ ମୋ ହୃଦୟରେ ରାଜ ରାଜେଶ୍ୱର ହୋଇପାରିଥା'ନ୍ତୁ। କାହାଣୀଟି କେଉଁ ଲୋକ କଥାକାର ମୁହଁରୁ ବାହାରିଥିଲା ଜଣାନାହିଁ, କିନ୍ତୁ କାହାଣୀଟିର ଆବେଦନ ମୋହଗ୍ରସ୍ତ ସୃଜନଶୀଳ ସାହିତ୍ୟିକମାନଙ୍କ ପାଇଁ ଅତ୍ୟନ୍ତ ଉପାଦେୟ।

ଏଇ ସୁନାମୁକୁଟର ମୋହ ସୃଜନଶୀଳ ପ୍ରତିଭାଙ୍କ ପାଇଁ ସବୁଠାରୁ ବଳି ବଡ ଶତ୍ରୁ। ଅବଶ୍ୟ ପ୍ରତିଭାଧରମାନଙ୍କର ସାମାଜିକ ସ୍ୱୀକୃତି କାମନା କରିବାରେ କିଛି ଅଯଥାର୍ଥତା ନାହିଁ। ସମ୍ମାନ ସମ୍ବର୍ଦ୍ଧନା ପୁରସ୍କାର ଆଦି ତା'ପାଇଁ ପ୍ରେରଣାପଦ, ଉତ୍ସାହ ବର୍ଦ୍ଧକ। କିନ୍ତୁ ଲକ୍ଷ୍ୟସ୍ଥଳ ନୁହେଁ। ତା ଯାତ୍ରାପଥରେ ଆଗକୁ ମାଡିଯିବାପାଇଁ ଏସବୁ ପ୍ରଚୋଦନା ମାତ୍ର। ଶୀର୍ଷତମ ବିନ୍ଦୁରେ ପହଞ୍ଚିବାପାଇଁ ଆବଶ୍ୟକ ଅସୀମ ଧୈର୍ଯ୍ୟ, ଗଭୀର ଅଧ୍ୟବସାୟ। ପ୍ରକୃତରେ ଲେଖାଟି ପାଇଁ ସାରସ୍ୱତ ସାଧକଟି ନିଷ୍ଠାର ସହ ଯେଉଁ ପରିଶ୍ରମ କରିଥାଏ ତାହା କେବେ ବ୍ୟର୍ଥ ଯିବନାହିଁ। ଆମ ପୂର୍ବଜମାନେ ଲେଖାଟିଏ ଲେଖିସାରି କାଳ ହସ୍ତରେ ଅର୍ପଣ କରି ଦେଉଥିଲେ। ବିପୁଳା ଚ ପୃଥ୍ୱୀରେ ନିରବଧିକାଳ ପର୍ଯ୍ୟନ୍ତ ପ୍ରତୀକ୍ଷା କରୁଥିଲେ। ଦିନେ ନା ଦିନେ କେହି ନା କେହି ଲେଖକର କୃତୀକୁ ସମ୍ମାନ ଦେବ। ଶ୍ରମ ସେତେବେଳେ ସାର୍ଥକ ହୋଇଯିବ। ଏହି ଆଶାରେ କାଳାତିପାତ କରୁଥିଲେ।

ଆମର ସେମାନଙ୍କ ପରି ଧୈର୍ଯ୍ୟଶୀଳତା ନାହିଁ। ସବୁଠାରୁ କମ୍ ସାମର୍ଥ୍ୟ ବିନିମୟ କରି ସର୍ବାଧିକ ସାଦର ସ୍ୱୀକୃତି ପାଇବାର କାମନାରେ ଆମେ ମୋହଗ୍ରସ୍ତ।

ଯୁଗୀୟ ପ୍ରବୃତ୍ତି ଉପଭୋକ୍ତା ମାନସିକତା ଆମ ସୃଜନୀ କଳାକୁ ବି ଆକ୍ରାନ୍ତ କରିସାରିଲାଣି। ଆମ ସୃଷ୍ଟିକୁ ଆମେ ଉତ୍ପାଦିତ ବସ୍ତୁ ରୂପେ ଗ୍ରହଣ କରିସାରିଲୁଣି। ତାର ବିଜ୍ଞାପନ ପାଇଁ ଆମେ ସମ୍ମାନ ସ୍ୱୀକୃତି ଅଥବା ପୁରସ୍କାର ଉପଢ଼ୌକନର ପୃଷ୍ଠା ଖୋଜୁଛୁ। ଥରେ ଏହି ମୋହରମାନ ବାଜିଗଲେ ବହିଟିକୁ କେହି ପଢ଼ନ୍ତୁ ବା ନପଢ଼ନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ। ବହିଟିକୁ ପଢ଼ି କେହି ଭ୍ରୂକୁଞ୍ଚିତ କରୁଛି ଅଥବା ପ୍ରଶଂସା କରୁଛି ସେଥିପ୍ରତି ମଧ୍ୟ ଆମର ଖାତିର ନଥାଏ। ଏତିକିରେ ଆମର ଚରମପ୍ରାପ୍ତି ହେଲାପରି ଆମେ ଅନୁଭବ କରୁ। ଆମର ଏ ମିଛ ମୋହକୁ ପରିପୁଷ୍ଟ କରିବାପାଇଁ ସଂସ୍ଥାମାନଙ୍କର ବି ଅଭାବ ନାହିଁ। ପୁରୁଷ୍କୃତ ବା ସମ୍ବର୍ଦ୍ଧିତ ବ୍ୟକ୍ତିଙ୍କ ଅର୍ଥରେ ଏ ସଂସ୍ଥା ଚଳେ। ମାଛ ତେଲରେ ମାଛ ଭାଜି ଏମାନେ ବେଶ୍ ଦି'ପଇସା ଅର୍ଜନ କରନ୍ତି। ଗୋଟିଏ ମଞ୍ଚରେ ଅର୍ଦ୍ଧଶତକ ପର୍ଯ୍ୟନ୍ତ ସମ୍ବର୍ଦ୍ଧିତ ପ୍ରତିଭା ଥା'ନ୍ତି। ସେମାନଙ୍କଠାରୁ ମୋଟା ଅଙ୍କର ଅର୍ଥ ନେଇ ଲଲିପପ୍ ପରି ସେମାନଙ୍କ ହାତରେ ଧରେଇ ଦିଅନ୍ତି ମାନପତ୍ର ଓ ଫୁଲ ତୋଡ଼ା। ଆମର ସମ୍ମାନରଙ୍କ ସାହିତ୍ୟିକମାନେ ଏହାକୁ ସର୍ବଶ୍ରେଷ୍ଠ ପ୍ରାପ୍ତି ବୋଲି ଅନୁଭବ କରନ୍ତି। ଏହି ଭଳି ପ୍ରହସନ ଭିତରେ କ୍ରମାଗତ ତାର ପ୍ରତିଭା ଯେ ଅବକ୍ଷୟମୁଖୀ ହେଉଥାଏ ସେଥିପ୍ରତି ସେ ସଂପୂର୍ଣ୍ଣ ଉଦାସୀନ ଥାଏ।

କଳାକୁ ମୂଲ୍ୟାଙ୍କନ କରିବାପାଇଁ ଠିକା ରୂପେ ନେଇଥିବା ଅନୁଷ୍ଠାନମାନେ କଳା ଓ କଳାକାରଙ୍କୁ ପୁରସ୍କୃତ କରନ୍ତି କି ତିରସ୍କୃତ କରନ୍ତି, ସମ୍ମାନିତ କରନ୍ତି କି ଅସମ୍ମାନିତ କରନ୍ତି, ତାହା ଦାତା ଓ ଗ୍ରହୀତା ଭଲ ଭାବରେ ଜାଣିଥା'ନ୍ତି। ତଥାପି ଏ ପ୍ରହସନ ଚାଲିଛି, ଚାଲୁଥିବ। ଅର୍ଥପାଇଁ ବ୍ୟବସାୟିକ ସଂସ୍ଥାମାନେ ଯେକୌଣସି ସ୍ତରକୁ ଯିବା ସ୍ୱାଭାବିକ। କିନ୍ତୁ ସାମାନ୍ୟତମ ସ୍ୱାଭିମାନ ନଥିବା ଯେଉଁ କଳାକାରମାନେ ନିଜକୁ ଏମାନଙ୍କ ପାଖରେ ବିକ୍ରି କରିଦେଉଛନ୍ତି ଶସ୍ତା ଲୋକପ୍ରିୟତା ପାଇଁ ମୋହଗ୍ରସ୍ତ ହେଉଛନ୍ତି, ସେମାନେ ହିଁ ଉଦ୍‌ବେଗର କାରଣ। ସତ୍ ସାହିତ୍ୟିକର ସ୍ୱାଭିମାନ ତାକୁ ଉଚ୍ଚତମ ପ୍ରଦେଶରେ ଉପନୀତ କରିଥାଏ। ତାର ସୃଷ୍ଟିବି ସେମିତି କାଳଜୟୀ ଓ ଯୁଗଜୟୀ। ସମ୍ମାନ ସମ୍ବର୍ଦ୍ଧନା ଓ ଉପଢ଼ୌକନ ଓ ପୁରସ୍କାର ମୋହରେ ସୃଷ୍ଟି ହେଉଥିବା ସାହିତ୍ୟ ଓ ସାହିତ୍ୟିକ କାଳସ୍ରୋତରେ ବିଲୀନ ହୋଇଯାଆନ୍ତି। ସତ୍ ସାହିତ୍ୟିକ କାଳର କପାଳରେ ଚିରକାଳ ଉର୍ଜସ୍ୱଳ। କଳାର ମୂଲ୍ୟ ଅମୂଲ। ଚିହ୍ନରା ଗ୍ରାହକ ତାର ଉପଯୁକ୍ତ ମୂଲ୍ୟ ଦେଇପାରେ। ଗୁଣଗ୍ରାହୀର ମୂଲ୍ୟାୟନରେ ସୃଷ୍ଟି ସାର୍ଥକ ହୋଇଥାଏ। କିମ୍ବଦନ୍ତୀ ଅଛି, ସଙ୍ଗୀତଜ୍ଞ ତାନ୍‌ସେନ୍‌ସିଂଙ୍କୁ ଓଡ଼ିଶାର ଜଣେ ସ୍ୱର୍ଣ୍ଣକାର ରୂପା ତାରକସିର ସରସ୍ୱତୀ ମୂର୍ତ୍ତିଟିଏ ଉପହାର ଦେଇଥିଲେ। ମୂର୍ତ୍ତିଟି ଏତେ ସୁନ୍ଦର କାରୁକାର୍ଯ୍ୟ ସଂପନ୍ନ ହୋଇଥିଲା

ଯେ ତାଙ୍କୁ କି ପ୍ରତିଉପହାର ଦେବେ ସେ ଚିନ୍ତା କରିପାରିଲେ ନାହିଁ। କଳାକାର ହିଁ ଜାଣେ ପ୍ରକୃତ କଳାର ମହତ୍ତ୍ୱ। ସଙ୍ଗୀତଜ୍ଞ ତାନ୍‌ସେନ୍ ସିଂ ତାଙ୍କୁ ଛାତ ଉପରକୁ ଡାକି ନେଇଥିଲେ ଓ ଗାନ କରିଥିଲେ ମେଘ ମହ୍ଲାର ସଂଗୀତ। ସଙ୍ଗେ ସଙ୍ଗେ ଆକାଶରେ ଘନେଇ ଆସିଥିଲା କଳାହାଣ୍ଡିଆ ମେଘ ଓ ଝରି ପଡିଥିଲା ବିନ୍ଦୁ ବିନ୍ଦୁ ବର୍ଷା। କୃତ୍ୟ କୃତ୍ୟ ହୋଇଯାଇଥିଲେ ସ୍ୱର୍ଣ୍ଣକାର ଜଣକ।

ପାଠକୀୟ ସ୍ୱୀକୃତି ରୂପେ ଦୂର ଦୂରାନ୍ତରରୁ ପାଠକମାନଙ୍କ ପାଖରୁ ଆସୁଥିବା ପୋଷ୍ଟକାର୍ଡ ଖଣ୍ଡେ, ଏସ୍.ଏମ୍.ଏସ୍. କିମ୍ବା ଫୋନ୍ କଲ୍‌ଟିଏ ଲେଖକ ପାଇଁ ଯେତେ ମହତ୍ତ୍ୱ ରଖେ ତାହା ବଡବଡ ପୁରସ୍କାରରେ ନଥାଏ। ସେଇଥିପାଇଁ ତ ପ୍ରାଚୀନ କବିମାନେ କହିଛନ୍ତି- "ଲେଖକର ଆୟୁଘେନି ପାଠକ ବଞ୍ଚିରହୁ। ସେମାନେ ହିଁ ବଞ୍ଚେଇ ରଖନ୍ତି ସ୍ରଷ୍ଟାକୁ ଓ ସୃଷ୍ଟିକୁ। ବ୍ୟବସାୟୀଟିଏ ତା'ର ଗ୍ରାହକମାନଙ୍କୁ କହେ ଗ୍ରାହକ ଈଶ୍ୱର। ଜଣେ ସାରସ୍ୱତ ସ୍ରଷ୍ଟା ପାଇଁ ପାଠକମାନେ ହେଉଛନ୍ତି ଈଶ୍ୱର। ପାଠକ ଈଶ୍ୱର। ଯିଏ ପାଠକର ହୃଦୟ ଜୟ କରିପାରିଛି, ତା ପାଖରେ ସବୁ ପୁରସ୍କାର ତୁଚ୍ଛ। ସବୁ ସମ୍ବର୍ଦ୍ଧନା ପ୍ରହସନ। ବିଶେଷତଃ ଆମ ରାଜ୍ୟର  ବଡ ବଡ ପୁରସ୍କାର ପାଉଥିବା ସ୍ରଷ୍ଟାମାନଙ୍କୁ ପୁରସ୍କାର ପାଇବା ପରେ ଯେଉଁପରି ତିରସ୍କୃତ କରାଯାଏ ସେଥିରେ ନିମ୍ନତମ ସ୍ୱାଭିମାନ ଥିବା ସ୍ରଷ୍ଟାଟି ଏ ପ୍ରକ୍ରିୟାରୁ ବିରତ ରହିବାକୁ ଋହିଁବ।

ତଥାପି ଆମର ମୋହ ତୁଟେ ନାହିଁ।



# ଚଣ୍ଟିକ୍ଲିଅର୍, ଆଦିଲ୍ ଓ ଅଶ୍ୱତ୍ଥାମା

ଇଂରାଜୀ ସାହିତ୍ୟର ଜନକ ଭାବରେ ପରିଚିତ ବିଶିଷ୍ଟ ଇଂରାଜୀ କବି ଓ ଲେଖକ ଚସରଙ୍କ 'କ୍ୟାଣ୍ଟରବରୀ ଟେଲ୍‌ସ୍' ଗଳ୍ପ ସଙ୍କଳନର ଗଳ୍ପଟିଏ। ଶିଆଳ ଓ ଗଞ୍ଜା ଏହି ଗଳ୍ପର ଦୁଇଟି ଚରିତ୍ର। ଚସରଙ୍କ ପ୍ରଦତ୍ତ ଗଞ୍ଜାଟିର ନାମ ଚଣ୍ଟି କ୍ଲିଅର୍। ଥରେ ଧୂର୍ତ୍ତ ଶିଆଳର ଚାଟୁବାକ୍ୟରେ ସେ ବିମୋହିତ ହୋଇଗଲା। ଆପଣାର ନିରୀହ ପଣରେ ଶିଆଳ କଥାରେ ପଡି ଗୀତ ଗାଇଲା ବେଳକୁ ଦୁଇ ଆଖି ବନ୍ଦ କରିଦେଲା। ଚତୁର ଶିଆଳ ତାକୁ ଝାମ୍ପ ମାରି ନେଇ ବଣକୁ ଧାଇଁଲା। ଏପରି ଅଘଟଣରେ ଅନ୍ୟ କୁକୁଡାମାନେ ଚିତ୍କାର କଲେ। ଚିତ୍କାର ଶୁଣି ଖାଉନ୍ଦାଣୀ ବାଡ଼ିଟିଏ ଧରି ଶିଆଳ ପଛରେ ଧାଇଁଲା। କିନ୍ତୁ ଶିଆଳ ପାଖରେ ପହଞ୍ଚି ପାରିଲା ନାହିଁ, ନିରାପଦ ଦୂରତ୍ୱକୁ ଗଲା ପରେ ଚଣ୍ଟିକ୍ଲିଅର୍ ଶିଆଳକୁ କହିଲା, 'ଏଥର ବୋକି ବୁଢ଼ୀକୁ କହିଦିଅ ସେ ବୃଥାରେ ଧାଉଁଛି, ଆଉ ମୋତେ ସେ ତୁମ ମୁହଁରୁ ଛଡ଼େଇ ନେଇ ପାରିବ ନାହିଁ।' ଆସନ୍ନ ବିପଦରୁ ମୁକ୍ତି ଓ ମୁଖରେ ସ୍ୱାଦିଷ୍ଟ ଗଞ୍ଜାଟିକୁ ପାଇ ଆନନ୍ଦରେ ବିଭୋର ହୋଇଗଲା ଶିଆଳ। ଗର୍ବରେ ଫାଟିପଡି ସତକୁ ସେ ବୁଢ଼ୀକୁ ଦୁଇପଦ ଶୁଣେଇବାକୁ ଯେମିତି ମୁଖ ଖୋଲିଛି, ଚଣ୍ଟିକ୍ଲିଅର୍ ଫୁର୍‌କିନା ଉଡ଼ି ଗଛ ଡାଳକୁ ଚାଲିଗଲା। ଶିଆଳ ଯେତେ ଯାହା କହିଲେ ସେ ଆଉ ଶୁଣିଲା ନାହିଁ।

ଗପଟି ଶିଶୁମାନଙ୍କ ପାଇଁ ହୋଇଥିଲେ ବି ବଡ଼ମାନଙ୍କୁ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ବାର୍ତ୍ତାଟିଏ ଦେଇଥାଏ। ଗଳ୍ପଟିରେ ଗଞ୍ଜାଟି ଶୃଗାଳ ମୁଖରୁ ମୁକ୍ତ ହେଲା ପରେ ନିଜକୁ ଧିକ୍କାର କରି କହିଛି, ଯେତେବେଳେ ମୁଁ ଚକ୍ଷୁ ଖୋଲା ରଖି ସତର୍କ ରହିବା କଥା, ସେତେବେଳେ ଚକ୍ଷୁ ବନ୍ଦ କରିଦେଲି। ସେହିପରି ଶୃଗାଳ ମଧ୍ୟ ଅନୁତପ୍ତ ହୋଇ କହିଛି, ଯେତେବେଳେ ତୁଣ୍ଡ ଖୋଲିବା କଥା ନୁହେଁ, ତୁଣ୍ଡ ଖୋଲି ଦେବାରୁ ମୋର ବହୁ ଶ୍ରମ ବ୍ୟର୍ଥ ହୋଇଗଲା (ମନୋଜ ଦାସ ଉକ୍ତ କାହାଣୀକୁ ତାଙ୍କର ଜୀବନ ଜିଜ୍ଞାସା ଏବଂ ସ୍ମରଣିକା ସ୍ତବକରେ ସୁନ୍ଦର ଭାବରେ ବ୍ୟାଖ୍ୟା କରିଛନ୍ତି)।

ଏବେ ଆମ ଦେଶରେ ଏମିତି ଏକ ସଙ୍କଟଜନକ ସ୍ଥିତି ଉପୁଜିଛି। ଏଥିରୁ ନିଷ୍କ୍ରାନ୍ତ ହେବାପାଇଁ, ଏହାର କଡ଼ା ମୁକାବିଲା କରିବା ପାଇଁ ଆମର ଶୋକ, ବିଳାପ,

କ୍ରୋଧ, ହିଂସା ଓ ଆବେଗ ଅପେକ୍ଷା ଧୈର୍ଯ୍ୟ, ସ୍ଥିରତା, ବୁଦ୍ଧିମତ୍ତାର ଆବଶ୍ୟକତା ରହିଛି। ଯେଉଁ ୪୪ ଜଣ ବୀର ସୈନିକଙ୍କ ରକ୍ତରେ ରଞ୍ଜିତ ହେଲା ଦେଶମାତୃକାର କୋଳ, ତାହା ଆମ ସେନାମାନଙ୍କର କମ୍ ବଡ ବଳିଦାନ ନୁହେଁ। ଯେତେ ଅପ୍ରିୟ ହେଲେ ମଧ୍ୟ ଏହା ସତ୍ୟ ଯେ ଠିକଣା ସମୟରେ ଆମେ ଚକ୍ଷୁ ବନ୍ଦ କରି ଦେଇଥିଲୁ। ୨,୫୦୦ ସିଆର.ପି.ଏ୍. ଯବାନ୍ କେତେବେଳେ, କେଉଁଠୁ, କେଉଁ ବାଟ ଦେଇ କେଉଁଠିକୁ ଯିବେ, ସେ ଖବର ଶତ୍ରୁଙ୍କ ପାଖରେ ରହିଲା, ଅଥଚ ଶତ୍ରୁ ଶିବିରର ସୁପରିକଳ୍ପିତ ଯୋଜନା ଆମ ଇଣ୍ଟେଲିଜେନ୍ସ ବ୍ୟୁରୋଙ୍କ ପାଖରେ ପହଞ୍ଚି ପାରିଲା ନାହିଁ ! ଶତ୍ରୁ ଦେଶ ଭିତରର ହୁଅନ୍ତୁ ଅଥବା ବାହାରର, ଆମ ଗୋଇନ୍ଦା ବିଭାଗ ଏତେ ଶକ୍ତିଶାଳୀ ଯେ ସେମାନଙ୍କ ପାଖରେ ଏ ସମ୍ବାଦ ପହଞ୍ଚିବାରେ ଆଦୌ ଅସୁବିଧା ହୋଇନଥାନ୍ତା। ୨୦/୨୨ ବର୍ଷର ପିଲାଟିଏ ଯେଉଁ ନରସଂହାରଟାଏ କରିଦେଲା, ତାକୁ ଯେତେ ନିନ୍ଦା ଭର୍ତ୍ସନା କଲେ ବି ଯଥେଷ୍ଟ ହେବ ନାହିଁ। ଏଥିପାଇଁ ନିଜକୁ ଦାୟୀ କରିଛି ଜୈଶ୍- ଇ- ମହମ୍ମଦ। ମହମ୍ମଦଙ୍କର ସେନା। ସେଇ ସେନାଙ୍କ ମଧ୍ୟରେ ଥିଲା ଆଦିଲ୍। ମହାପୁରୁଷ ମହମ୍ମଦ କେବେ ଭୂଖଣ୍ଡ ପାଇଁ ଯୁଦ୍ଧ କରିବା କଥା କହି ନଥିଲେ। ଅଥଚ ଧର୍ମାନ୍ଧ ପଣ ଏମାନଙ୍କୁ ଏମିତି ଗ୍ରାସ କରିଛି ଯେ ଜେହାଦ୍ ବା ଧର୍ମଯୁଦ୍ଧ ନାଁରେ ନିର୍ବିଚାରରେ ତାଙ୍କ ନାମରେ ନାମିତ ସଂଗଠନର ସଦସ୍ୟଗଣ ଆତ୍ମଘାତୀ ସାଜୁଛନ୍ତି। ଇସ୍‌ଲାମ୍ ଧର୍ମ ଆତ୍ମହତ୍ୟାକୁ ମହାପାପ ବୋଲି ଗ୍ରହଣ କରେ। ସେହି ହେତୁ ଅନ୍ୟ ଏକ ସନ୍ତ୍ରାସବାଦୀ ସଙ୍ଗଠନ ଇସ୍କର-ଇ-ତୋଇବା ଯେତେ ବର୍ବର କାଣ୍ଡ କଲେ ସୁଦ୍ଧା ଆତ୍ମଘାତୀ ବୋମାର ତାଣ୍ଡବ ଲୀଳା ରଚେନାହିଁ। କିନ୍ତୁ ଯୁଦ୍ଧରେ ସେମାନେ ମରିବାର ଓ ମାରିବାର ଶପଥ ନେଇଥାନ୍ତି; ଉଭୟ ସଂଗଠନ ଧର୍ମାନ୍ଧ। ଜେହାଦ୍ ବା ଧର୍ମଯୁଦ୍ଧ ନାଁରେ ନରସଂହାର ଏମାନଙ୍କ ପାଇଁ ପିଲା ଖେଳ ପରି। ଏହିଭଳି ସନ୍ତ୍ରାସବାଦକୁ ପୃଷ୍ଠପୋଷକ ଦେଉଥିବା ରାଷ୍ଟ୍ର ପ୍ରତିବେଶୀ ହୋଇଥିଲେ ସର୍ବଦା ଦେଶରେ ଆଶଙ୍କା, ଉଦ୍‌ବେଗ ଲାଗି ରହିବା ସ୍ୱାଭାବିକ। ଯେ କୌଣସି ମୁହୂର୍ତ୍ତରେ ଏମାନେ ଯେ କୌଣସି ଧ୍ୱଂସଲୀଳା ସାଧନ କରିପାରନ୍ତି। ଏମାନଙ୍କୁ ମୁକାବିଲା କରିବାପାଇଁ ଆବେଗ, ଉତ୍ତେଜନା ଅପେକ୍ଷା ସଜାଗ ଦୃଷ୍ଟିର ଆବଶ୍ୟକତା ରହିଛି। ଭାରତୀୟମାନଙ୍କ ଶିରା ପ୍ରଶିରାରେ ଦେଶପ୍ରେମର ଯେଉଁ ପବିତ୍ର ରକ୍ତ ପ୍ରବାହିତ ହେଉଛି, ତା'ର ଅଗ୍ନିବର୍ଷୀ ତେଜ ପୁଲ୍‌ୱାମାରେ ଘଟିଥିବା ଅଘଟଣ ପରଠୁ ଆଜି ପର୍ଯ୍ୟନ୍ତ ସମସ୍ତେ ଆମେ ଉପଲବ୍ଧି କରିଛେ। ପୁତ୍ର ହରାଇ ଥିବା ପିତାମାତା, ଭାଇକୁ ହରାଇ ଥିବା ଭଉଣୀ, ସ୍ୱାମୀ ହରାଇ ଥିବା ସ୍ତ୍ରୀ ଓ ଛେଉଣ୍ଡ ପୁତ୍ରକନ୍ୟାମାନଙ୍କ ଅଶ୍ରୁରେ ନୁହେଁ ସମଗ୍ର ଦେଶବାସୀଙ୍କ ଅଶ୍ରୁରେ ଭିଜୁଛି ଏ ମାଟି। କେତେବେଳେ ଶୋକର ଉଚ୍ଛ୍ୱାସ ତ ପୁଣି କେତେବେଳେ କ୍ରୋଧର

ଅଗ୍ନି । ମହମବତୀ ଶୋଭାଯାତ୍ରା, ଶୋକସଭା, ଦେବାଳୟମାନଙ୍କରେ ସହିଦଙ୍କ ଆତ୍ମାର ସଦ୍‌ଗତି ପାଇଁ ନିରବ ପ୍ରାର୍ଥନା ସହ ସନ୍ତ୍ରାସ କାର୍ଯ୍ୟକଳାପର ପ୍ରତିବାଦରେ ପାକିସ୍ତାନକୁ ନିନ୍ଦାବାଦ ଓ ମୁର୍ଦ୍ଦାବାଦ ଚାଲିଛି, ପାକିସ୍ତାନୀ ନେତାମାନଙ୍କୁ ଭର୍ତ୍ସନା ସହ ସେମାନଙ୍କର ମୁହଁରେ ପରିସ୍ରା କରିବାର ଚିତ୍ର ମଧ୍ୟ ସୋସିଆଲ୍ ମିଡିଆରେ ଭାଇରାଲ ହେଉଛି । ବିଶ୍ୱାସଘାତକତାର ଶିକାର ହୋଇଥିବା ଆମ ଜନତାଙ୍କର ଏ ପ୍ରତିକ୍ରିୟା ଅସ୍ୱାଭାବିକ ନୁହେଁ । ଚାରିଆଡେ ଯୁଦ୍ଧଂ ଦେହି ଡାକରା । ପାକିସ୍ତାନକୁ ମୁକାବିଲା କରିବାପାଇଁ ଆମ ପାଖରେ ଯଥେଷ୍ଟ ସାମର୍ଥ୍ୟ ରହିଛି । ତା'ର ସାମରିକ ଶକ୍ତି ଅପେକ୍ଷା ଆମ ଶକ୍ତି କାହିଁ କେତେ ଗୁଣରେ ବଳୀୟାନ୍ । ତଥାପି ଶତ୍ରୁକୁ କେବେହେଲେ ଦୁର୍ବଳ ନ ଭାବିବା ପାଇଁ ଆମ ପୂର୍ବଜମାନେ କହିଛନ୍ତି । ଏଠାରେ ଶତ୍ରୁକୁ ଭୟ କରିବା କଥା କୁହାଯାଇ ନାହିଁ । କିନ୍ତୁ ଯେତେ ସାମର୍ଥ୍ୟ ଥିଲେ ସୁଦ୍ଧା ଆମ ରଣକୌଶଳ ଦ୍ୱାରା ଯେ କେବଳ ଶତ୍ରୁ ସୈନ୍ୟ ନିପାତ ହେବେ, ଆମ ସୈନ୍ୟମାନେ ଆଦୌ ମୃତାହତ ହେବେନାହିଁ, ସେକଥା କହି ହେବ ନାହିଁ । ଯୁଦ୍ଧ ଗୋଟାଏ ଲୋକକ୍ଷୟକୃତ କାର୍ଯ୍ୟ । ସେ ଧନଜନ, ସମୟ, ସାମର୍ଥ୍ୟ-ସବୁକିଛି ବ୍ୟୟ କରିବାକୁ ହୋଇଥାଏ । ସାଧାରଣ ଜନତା ଏଥିରେ ବେଶି କ୍ଷତିଗ୍ରସ୍ତ ହୋଇଥାନ୍ତି । ସେଇଥିପାଇଁ ତ କୂଟନୀତିଜ୍ଞ ଶ୍ରୀକୃଷ୍ଣଙ୍କୁ ରଣଛୋଡ଼ ବୋଲି କହି ଉପହାସ କଲେ ସୁଦ୍ଧା ସେ ଏହି ଲୋକକ୍ଷୟକୃତ କାର୍ଯ୍ୟ ନ କରିବାପାଇଁ ସର୍ବଦା ଅନ୍ୟମାନଙ୍କୁ ପ୍ରବର୍ତ୍ତାଉ ଥିଲେ । ଜରାସନ୍ଧ ପାଖରୁ ପଳାୟନ କରି ଶେଷରେ ଭୀମ ଦ୍ୱାରା ଦ୍ୱନ୍ଦ୍ୱଯୁଦ୍ଧରେ ତାକୁ ହତ୍ୟା କରିଥିଲେ । କାଳଯବନଙ୍କୁ ମଧ୍ୟ ସେମିତି ଯୁଦ୍ଧକ୍ଷେତ୍ରରୁ ପଳାୟନ କରିବାର ଅଭିନୟ କରି ମୁଚୁକୁନ୍ଦ ଦ୍ୱାରା ହତ୍ୟା କରାଇଥିଲେ । ଶତ୍ରୁମାନେ ନିହତ ହୋଇଥିଲେ, କିନ୍ତୁ ନିରୀହ ସେନାଙ୍କ ମୃତାହତକୁ ରୋକା ଯାଇପାରିଥିଲା । ମହାଭାରତ ଯୁଦ୍ଧକୁ ମଧ୍ୟ ରୋକିବା ପାଇଁ ଶ୍ରୀକୃଷ୍ଣ ଅନେକ ଚେଷ୍ଟା କରିଥିଲେ, କିନ୍ତୁ ଦୁର୍ଯ୍ୟୋଧନର 'ବିନା ଯୁଦ୍ଧେ ସୁଚ୍ୟଗ୍ରେ ମେଦିନୀ ନ ଦେବା'ର ଅହଂକାରର କିପରି ପରିଣତି ହୋଇଥିଲା, ତାହା ସର୍ବଜନ ବିଦିତ ।

ସ୍ୱାଧୀନତା ପରବର୍ତ୍ତୀ ଯୁଦ୍ଧଜନିତ କ୍ଷୟକ୍ଷତି ଆମର ଅଙ୍ଗେନିଭା କଥା । ତାହା ବେଦୀରୁ ନବବଧୂ ତା'ର ଗହଣା ଯୁଦ୍ଧ ପାଣ୍ଠିକୁ ଦାନ କରିବାର ଦୃଷ୍ଟାନ୍ତ ଆମ ପାଖରେ ରହିଛି । ଗୋଟାଏ ଦେଶର ସାମର୍ଥ୍ୟ ତାର ଆର୍ଥିକ ବଳ ନୁହେଁ, ଆତ୍ମବଳ । ସେ ଆତ୍ମବଳ ଆମର ଅଛି । ଯୁଦ୍ଧ କଲେ ଯେ ବିଜୟ ସୁନିଶ୍ଚିତ କେବଳ ଆମେ ନୁହେଁ, ସମଗ୍ର ବିଶ୍ୱ ଜାଣିଛି । ତଥାପି ହାତରେ ନ ମାରି ଭାତରେ ମାରିବା ପାକିସ୍ତାନ ପାଇଁ ଉପଯୁକ୍ତ ଶାସ୍ତି ହେବ ।

ଏବେ ୪୪ଟି ମାଆଙ୍କ କୋଳ ଉଜୁଡିଛି, ଯଦି ଯୁଦ୍ଧ ହୁଏ, ୪୦୦ କିମ୍ବା ୪ ହଜାର ମାଆଙ୍କ କୋଳ ଯେ ନ ଉଜୁଡିବ, ସେକଥା କିଏ କହିବ ? ଆମର ବିକାଶ ପାଇଁ ଉଦ୍ଦିଷ୍ଟ ଅର୍ଥ ଲୋକକ୍ଷୟ କାର୍ଯ୍ୟରେ ବିନିଯୋଗ ହେବା ଗୋଟିଏ ବିକାଶଶୀଳ ରାଷ୍ଟ୍ର ପାଇଁ ଆଦୌ ସ୍ପୃହଣୀୟ ନୁହେଁ। ମହାଭାରତ ଯୁଦ୍ଧରେ ଦ୍ରୌପଦୀଙ୍କ କୋଳ ଉଜାଡି ଥିଲା ଅଶ୍ୱତ୍‌ଥାମା। ଶୋକସନ୍ତପ୍ତ ଦ୍ରୌପଦୀଙ୍କ ଆହତ ମାତୃତ୍ୱକୁ ସାନ୍ତ୍ୱନା ଦେବା ପାଇଁ ଅଶ୍ୱତ୍‌ଥାମାକୁ ଧରି ଅର୍ଜୁନ ତା'ର ମସ୍ତକ ଛିନ୍ନ କରିବାକୁ ଉଦ୍ୟତ ହୁଅନ୍ତେ ଦ୍ରୌପଦୀ ତାଙ୍କୁ କହିଥିଲେ ଅଶ୍ୱତ୍‌ଥାମାର ଅପରାଧ ପାଇଁ ମୃତ୍ୟୁଦଣ୍ଡ କମ୍ ପଡିଯିବ। ତେଣୁ ଏମିତି ଏକ ଦଣ୍ଡ ଦିଆଯାଉ, ତାହା ଯେପରି ମୃତ୍ୟୁଠାରୁ ଆହୁରି ଯନ୍ତ୍ରଣାଦାୟକ ହେବ। ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ଅର୍ଜୁନ ଜନ୍ମରୁ ଅଶ୍ୱତ୍‌ଥାମାର କପାଳରେ ଥିବା ମଣିଟିକୁ ତାଡ଼ି ବାହାର କରିଦେଲେ। ଏହାଦ୍ୱାରା ଅଶ୍ୱତ୍‌ଥାମା ଶରୀରରେ ଯେଉଁ କ୍ଷତ ସୃଷ୍ଟି ହେଲା, ତାହା ଆଉ ଶୁଖିଲା ନାହିଁ। ଘା' ଘାଉଡ଼ ଶରୀରରେ ଦୁର୍ବିସହ ଜୀବନକୁ ବଞ୍ଚିବା ପାଇଁ ବଣ ଜଙ୍ଗଲରେ ଲୁଚି ଲୁଚି ସେ ଘୁରି ବୁଲିଲା। ମୃତ୍ୟୁ ନୁହେଁ, ବଞ୍ଚିବା ତା' ପାଇଁ ଅଭିଶାପ ହୋଇପଡ଼ିଲା। କୁହାଯାଏ, ଆମର ସାତଜଣ ଅମର ଥିବା ବ୍ୟକ୍ତିଙ୍କ ମଧ୍ୟରେ ଅଶ୍ୱତ୍‌ଥାମା ଜଣେ। ବିଶ୍ୱର ପ୍ରଥମ ସନ୍ତ୍ରାସବାଦୀ ଅଶ୍ୱତ୍‌ଥାମା। ସେ ବ୍ୟକ୍ତିଟିଏ ଥିଲା, କିନ୍ତୁ ଯେଉଁଠି ରାଷ୍ଟ୍ରଟିଏ ଶହ ଶହ ଅଶ୍ୱତ୍‌ଥାମା ବନାମ ଆଦିଲ୍‌ମାନଙ୍କୁ ଜନ୍ମ ଦେଇଛି, ତାକୁ ଏତିକି ଶାସ୍ତି ଦିଆଯାଉ, ଯାହା ଫଳରେ ସମଗ୍ର ବିଶ୍ୱରେ ନିନ୍ଦିତ, ଭର୍ତ୍ସିତ ହୋଇ ସେ ବଞ୍ଚୁ। ବଞ୍ଚିବା ତା' ପାଇଁ ଦୁର୍ବିସହ ହୋଇପଡୁ। ଅଶ୍ୱତ୍‌ଥାମା ପରି ସେ ବିଶ୍ୱ ସମୁଦାୟ ପାଖରେ ମୁହଁଲୁଚା ଦେଉ। ସମସ୍ତେ ତା' ପାଖରୁ ସବୁ ପ୍ରକାର ସମ୍ପର୍କ ଛିନ୍ନ କରନ୍ତୁ। ସେଇ ଚଣ୍ଡିକ୍ଲିଅର୍‌ଠାରୁ କିଛି ଶିଖିବା। ଆମର ସଦା ଜାଗ୍ରତ ଦୃଷ୍ଟି ପୁଣି ସନ୍ତ୍ରାସ କାର୍ଯ୍ୟକଳାପ ରୋକିବାରେ ସମର୍ଥ ହେବ। ଏଇ ଘଡ଼ିସନ୍ଧି ମୁହୂର୍ତ୍ତରେ ତୁଣ୍ଡ ବନ୍ଦ ରଖି ମୁଣ୍ଡ ଖର୍ଚ୍ଚ କଲେ ଠିକଣା ଜବାବ୍ ପାଇବ ଶତ୍ରୁ।



# ମାଦକୀୟ ସୁଖ ଓ ଆଧ୍ୟାତ୍ମିକ ସୁଖ

କାଳଯବନ ଥିଲା ଜରାସନ୍ଧର ସେନାପତି। ଅତ୍ୟନ୍ତ ଦୁର୍ଦ୍ଦାନ୍ତ। ସେ ଗ୍ରୀକ୍‌ରୁ ଆସିଥିବା ଗବେଷକମାନେ ମତ ଦେଇଥା'ନ୍ତି। ଜାମାତା କଂସକୁ ହତ୍ୟାକରିଥିବା କୃଷ୍ଣ ବଳରାମଙ୍କ ଉପରେ ପ୍ରତିଶୋଧ ନେବାପାଇଁ ଏହାଥିଲା ଜରାସନ୍ଧର ସର୍ବଶେଷ ଅସ୍ତ୍ର। ବାରମ୍ବାର ମଥୁରା ଆକ୍ରମଣ କରି ପରାସ୍ତ ହେବାପରେ ସେ ଗୋଟିଏ ଅଭିନବ ଉପାୟରେ ଯଦୁବଂଶୀଙ୍କୁ ନିଷ୍କ୍ରିୟ କରିବାକୁ ଚାହିଁଥିଲା। ସେ କେବଳ କାଳଯବନକୁ ନିମନ୍ତ୍ରଣ କରି ଆଣିନଥିଲା ତା ସହ ସେ ପ୍ରଥମ କରି ଭାରତମାଟିକୁ ଆଣିଥିଲା ଗ୍ରୀକ୍ ପାନୀୟ ୱାଇନ୍ ବା ମଦ୍ୟ। କାଦମ୍ବରୀ ରସପାନରେ ବିଳାସ ରଖୁଥିବା ବଳରାମଙ୍କ ମାଧ୍ୟମରେ ଯଦୁବଂଶୀ ଯୁବକମାନଙ୍କ ନିକଟରେ ଏହି କଡା ପାନୀୟ ପହଞ୍ଚାଇବାକୁ ଜରାସନ୍ଧକୁ କଷ୍ଟ ହୋଇନଥିଲା। ଫଳରେ ଧୀରେ ଧୀରେ ଯଦୁବଂଶୀମାନେ ହୀନପ୍ରଭ ଓ ବିଶୃଙ୍ଖଳିତ ହେଉଥିଲେ। ଯେତେ ଗୋପନୀୟ ଭାବରେ ଏକାର୍ଯ୍ୟ ସପନ୍ନ କରାଯାଉଥିଲେ ସୁଦ୍ଧା ଶ୍ରୀକୃଷ୍ଣଙ୍କୁ ଏହା ଅଛପା ନଥିଲା। ଥରେ ଏ ନିଶାରେ ଅଭ୍ୟସ୍ତ ହୋଇଗଲେ ମଦ୍ୟପମାନଙ୍କୁ ନିଶାଠୁ ଦୂରରେ ରଖିବା କେତେ ଦୁରୁହ ବ୍ୟାପାର ତାହା ସେ ଭଲଭାବରେ ଜାଣିଥିଲେ। ବାରମ୍ବାର ଜରାସନ୍ଧକୁ ପରାସ୍ତ କରୁଥିଲେ ସୁଦ୍ଧା ମଥୁରାବାସୀଙ୍କୁ ଧରି ଦ୍ୱାରକା ଅଭିମୁଖେ ଯାତ୍ରା କରିବା ଓ ସେଠାରେ ବସତି ସ୍ଥାପନ କରିବା ମୂଳରେ ଯଦୁବଂଶୀଙ୍କୁ ସର୍ବଗ୍ରାସୀ ନିଶା କବଳରୁ ଦୂରରେ ରଖିବା ଥିଲା ଅନ୍ୟତମ କାରଣ। ମଥୁରା ଛାଡିବା ପୂର୍ବରୁ ସେ କାଳଯବନକୁ କିପରି ହତ୍ୟା କରିଥିଲେ ତାହା ପୁରାଣର ଏକ ରୋଚକ ଉପାଖ୍ୟାନ। ବର୍ଷ ବର୍ଷ ଧରି ସ୍ୱର୍ଗକୁ ଅସୁରମାନଙ୍କ କବଳରୁ ରକ୍ଷା ଦେବାପାଇଁ ଯୁଦ୍ଧ କରି କ୍ଳାନ୍ତ ହୋଇପଡିଥିଲେ ମୁଚୁକୁନ୍ଦ। ସେ ବିଶ୍ରାମ ଲୋଡିଥିଲେ। ତାଙ୍କ ନିଦ୍ରାରେ ବ୍ୟାଘାତ ସୃଷ୍ଟି କରୁଥିବା ଯାହା ଉପରେ ସେ ଦୃଷ୍ଟିପାତ କରିବେ ସେ ମୃତ୍ୟୁ ମୁଖରେ ପଡିବେ ବୋଲି ଇନ୍ଦ୍ରଙ୍କଠୁଁ ବର ମାଗି ଆଣିଥିଲେ। କାଳ ଯବନ ସହ ଅଧା ଯୁଦ୍ଧରୁ ପଳାୟନ କରିବାର ଅଭିନୟ କରି ଶ୍ରୀକୃଷ୍ଣ ମୁଚୁକୁନ୍ଦ ଶୋଇଥିବା ଗୁମ୍ଫାକୁ ଚାଲିଆସି ନିଜ ଉତ୍ତରୀୟ ତାଙ୍କ ଉପରେ ଢ଼ାଙ୍କି ଦେଇଥିଲେ। ମୁଚୁକନ୍ଦଙ୍କୁ କୃଷ୍ଣଭ୍ରମ କରି କାଳଯବନ ତାଙ୍କ ଉପରେ ଆକ୍ରମଣ ଆରମ୍ଭ କରିଦେଇଥିଲା, ଫଳରେ କାଳଯବନ ମୁଚୁକୁନ୍ଦଙ୍କ ଦୃଷ୍ଟି ସମ୍ମୁଖରେ ପଡି ଧ୍ୱଂସ ହୋଇଥିଲା। କାଳଯବନ ସିନା ମରିଥିଲା, କିନ୍ତୁ ତା ଦ୍ୱାରା ଭାରତକୁ ଆସିଥିବା ମଦ୍ୟର ପ୍ରଭାବ ଦୂର ହେଲାନାହିଁ।

କହିବା ବାହୁଲ୍ୟ, ବୈଦିକ ଯୁଗରେ ଇନ୍ଦ୍ର ଆଦି ଆମ ଦେବତାଗଣ ସୋମରସ ପାନ କରୁଥିଲେ। ଗ୍ରୀକ୍‌ର ଉଚ୍ଚବର୍ଗର ଲୋକେ ଓ ବୁଦ୍ଧିଜୀବୀମାନେ ମଧ୍ୟ ଏମିତି କିଛି ହାଲ୍‌କା ନିଶା ସେବନ କରୁଥିଲେ। କିନ୍ତୁ ଆଧୁନିକ ପରିଭାଷାରେ ଆମେ ଯାହାକୁ ମଦ୍ୟ (ୱାଇନ୍) କହୁଛୁ ପ୍ରଥମେ ଗ୍ରୀସ୍‌ରେ ହୋଇଥିଲା, ଏହାର ଦେବତା ଥିଲେ ଡାଇ ଓ ବିସିସ୍। ତାଙ୍କୁ ମଦରେ ଆବାହନ କରାଯାଏ। ତାଙ୍କ ଭକ୍ତମାନେ ବିଶ୍ୱାସ କରନ୍ତି ଯେ ଯେତେ ଅଧିକ ଓ କଡ଼ା ମଦ୍ୟପାନ କରାଯିବ ସେତେ ଶୀଘ୍ର ଏ ଦେବତା ତୃପ୍ତ ହୋଇ ବରଦେବେ। ଡାଇଓନିସିସ୍‌ଙ୍କ ଭକ୍ତ ମାନେ ପ୍ରାୟତଃ ନିମ୍ନବର୍ଗର ଲୋକ। ସଂଯୋଗ ବଶତଃ ଡାଇଓନିସିସ୍ ମଧ୍ୟ ମୃତ୍ୟୁ ଲୋକର ଦେବତା। ମଦ୍ୟପାନର ପରିଣତି ଯେ ବିନାଶ ଏହାହିଁ ସୂକ୍ଷ୍ମଭାବରେ ସୂଚିତ କରେ। କଳାଯବନ ଗ୍ରୀକ୍‌ର ବୁଦ୍ଧିଜୀବୀ ନଥିଲା। ନିମ୍ନବର୍ଗକୁ ପ୍ରତିନିଧିତ୍ୱ କରୁଥିଲା। ଯଦୁବଂଶୀଙ୍କୁ ମଥୁରାରୁ ସ୍ଥାନାନ୍ତରିତ କରି ମଧ୍ୟ ଶ୍ରୀକୃଷ୍ଣ ସେମାନଙ୍କୁ ନିଶାମୁକ୍ତ କରିପାରି ନଥିଲେ, କାଦମ୍ବରୀ ରସରେ ପ୍ରମତ୍ତ ହୋଇ ସେମାନେ ଉଚ୍ଛୃଙ୍ଖଳିତ ହେଉଥିଲେ। ଫଳରେ ଅସହାୟ ଶ୍ରୀକୃଷ୍ଣଙ୍କୁ ନିଜ ବଂଶର ଅନ୍ତ କରିବାର ନିଷ୍ଠୁର ନିଷ୍ପତ୍ତି ନେବାକୁ ହୋଇଥିଲା। ଯୁବ ସଂପ୍ରଦାୟଙ୍କୁ ନିଶା କିପରି ଧ୍ୱଂସବିଧ୍ୱଂସ୍ତ କରିଦିଏ ଯଦୁବଂଶୀଙ୍କ ଠାରୁ ଆଉ ଉତ୍କୃଷ୍ଟ ଉଦାହରଣ ନାହିଁ। ପ୍ଲାଟୋ ମଧ୍ୟ ଗ୍ରୀକ୍‌ବାସୀଙ୍କୁ ୪୦ ବର୍ଷ ପୂର୍ବରୁ ମଦ୍ୟପାନ ନ କରିବାପାଇଁ ଉପଦେଶ ଦେଉଥିଲେ।

ଆମ ଦେଶରେ ସୁଦ୍ଧା ତନ୍ତ୍ରସାଧକମାନେ ସେମାନଙ୍କ ଉପାସ୍ୟ ଦେବୀଙ୍କୁ ମଦ୍ୟ ଅର୍ପଣ କରନ୍ତି। କିନ୍ତୁ ପ୍ରତ୍ୟକ୍ଷ ଭାବରେ ନୁହେଁ। କାଂସ୍ୟ ପାତ୍ରରେ ପଇଡ ପାଣି ରହିଲେ ତାହା ମଦ ହୋଇଯାଏ। ଏହାକୁ ଦେବୀଙ୍କୁ ଅର୍ପଣ କରାଯାଇଥାଏ। କିନ୍ତୁ ସାତ୍ତ୍ୱିକ ପୂଜାପଦ୍ଧତିରେ ଏସବୁ ଚଳେ ନାହିଁ।

ଗ୍ରୀକ୍‌ର ଡାଇଓନିସିସ୍‌ଙ୍କ ପରି ଆମ ଦେଶର ଆଦିବାସୀ ସଂପ୍ରଦାୟର ଦେବାଦେବୀମାନଙ୍କୁ ମଦ୍ୟ ମାଂସ ଅର୍ପଣ କରି ଆବାହନ ଓ ପୂଜାଅର୍ଚ୍ଚନା କରାଯାଏ। ସାମୁହିକ ମଦ୍ୟପାନ କରି ଆଦିବାସୀମାନେ ତଦ୍‌ଗତ ହୋଇଯାଆନ୍ତି। ସେମାନଙ୍କ ଶରୀରକୁ ଦେବତାମାନେ ଓହ୍ଲେଇ ଆସନ୍ତି ବୋଲି ସେମାନେ ବିଶ୍ୱାସ କରନ୍ତି। ଏସବୁ ସତ୍ୟ ହେଉ କି ମନସ୍ତାତ୍ତ୍ୱିକ ଭ୍ରମ, କିନ୍ତୁ ସେମାନେ ଉପାସ୍ୟ ଦେବତାଙ୍କ ସାନ୍ନିଧ ପାଇବାର ତୃପ୍ତିରେ ତନ୍ମୟ ହୋଇଯାଆନ୍ତି।

ବ୍ୟକ୍ତିଗତ ଜୀବନର ଦୁଃଖ ଯନ୍ତ୍ରଣା ଅବସାଦ ଅବସୋସରୁ ମୁକ୍ତି ପାଇଁ, ବଞ୍ଚିବାର ଟିକିଏ ମାଦକତା ଓ ଉତ୍ତେଜନା ପାଇଁ ଅଥବା ଜୀବନର ବୃହତ୍ତର ଲକ୍ଷ୍ୟ ନିକଟରେ ପହଞ୍ଚିବାପାଇଁ ମଣିଷ କିଛି ଗୋଟାଏ ମାଧ୍ୟମର ଆବଶ୍ୟକ କରେ। ଏଥିପାଇଁ କିଏ

କେତେ ପ୍ରକାର ଜୀବନ ବଞ୍ଚନ୍ତି ତା'ର ହିସାବ ନାହିଁ। କିଏ ଗୀତ ଗାଏ କିଏ ଚିତ୍ର ଆଙ୍କେ କିଏ ଗଳ୍ପ କବିତା ଲେଖେ କେହି ଅଭିନୟ କରି ଅଥବା ସମାଜସେବା ଭିତରେ କେହି ନିଜକୁ ହଜେଇ ଜୀବନର ଦୁଃଖ ଭୁଲି ସୁଖର ସନ୍ଧାନ କରୁଥିବାବେଳେ ଆଉକେହି ମଦ୍ୟପାତ୍ର ଭିତରେ ନିଜ ଜୀବନର ଦୁଃଖକୁ ହଜେଇ ସୁଖ ଅନୁଭବ କରୁଥାଏ। ଏସବୁ ଉର୍ଦ୍ଧ୍ୱରେ ରହିଛି ଆଧ୍ୟାତ୍ମିକ ସୁଖ। ଥରେ ଏ ସୁଖର ସନ୍ଧାନ ପାଇଗଲେ ତାହା ମହାସୁଖରେ ପରିଣତ ହୋଇଯାଏ। ମୃତ୍ୟୁପରେ ଆତ୍ମା ପରମାତ୍ମାରେ ବିଲୀନ ହୋଇଯାଏ। ଜନ୍ମମରଣ ଚକ୍ରରୁ ମୁକ୍ତି ହୋଇ ବ୍ୟକ୍ତି ନିର୍ବାଣ ଲାଭ କରେ। ଏସବୁ ବିଶ୍ୱାସର କଥା। ମଣିଷର ଜନ୍ମପୂର୍ବରୁ ଯେ ଆଉଗୋଟାଏ ଜନ୍ମଥିଲା ଓ ମୃତ୍ୟୁପରେ ବି ଆଉ ଗୋଟାଏ ଜନ୍ମ ଅଛି ଏ ସବୁ କଳ୍ପଜଗତର କଥା। ପୁଣି ନିଶାସେବନ ଦ୍ୱାରା ଦୁଃଖଭୁଲି ସୁଖ ଅନୁଭବ କରିବା ତ ଆହୁରି ଭ୍ରମାତ୍ମକ ବିଚାର। ମଣିଷର ଅତୀତ ବର୍ତ୍ତମାନ ଓ ଭବିଷ୍ୟତ ସବୁକିଛି ବିପର୍ଯ୍ୟସ୍ତ ହୋଇପଡେ। ସଭ୍ୟ ମଣିଷକୁ ପୁଣି ଅସଭ୍ୟ ବର୍ବର କରିଦିଏ। ଅଫିମ, ଗଞ୍ଜେଇ, ଭାଙ୍ଗ ଓ ବିଭିନ୍ନ ପ୍ରକାର ଡ୍ରଗ୍ସ ମଣିଷର ସବାର ହୋଇଯାଏ।

ମାଦକଦ୍ରବ୍ୟ ସେବନ କରି କ୍ଷଣିକ ସୁଖର ମୋହ ଲୋଭ କିମ୍ବା ଜନ୍ମମୃତ୍ୟୁ ଚକ୍ରରୁ ମୁକ୍ତିପାଇବାର ଆଧ୍ୟାତ୍ମିକ ସୁଖ ଏସବୁ ବୋଧହୁଏ ବିଶ୍ୱମଣିଷର ଦୁଃଖ ବେଦନା ଦୂରୀଭୂତ କରିବାରେ ସମର୍ଥ ହୁଏନାହିଁ। ଏସବୁ ଏକାନ୍ତ ବ୍ୟକ୍ତିଗତ କଥା। ରାମକୃଷ୍ଣ ପରମହଂସ ଥରେ ପ୍ରଶ୍ନ କରିଥିଲେ, ବିବେକାନନ୍ଦଙ୍କୁ - "ତୁ ଜୀବନରେ କ'ଣ ଚାହୁଁଛୁ ?" ତତ୍‌କ୍ଷଣାତ୍ ବିବେକାନନ୍ଦ ଉତ୍ତର ଦେଇଥିଲେ - "ନିର୍ବିକଳ୍ପ ସମାଧିର ସୁଖ, ଶୁକଦେବଙ୍କ ପରି କିଛିଦିନ ନିର୍ବିକଳ୍ପ ସମାଧିରେ ଲୀନ ହୋଇଯିବି, ପୁଣି ଥରେ ଫେରିଆସି ଦେହ ରକ୍ଷା ପାଇଁ କିଛି ଖାଦ୍ୟ ଗ୍ରହଣ କରି ପୁଣି ସମାଧିସ୍ଥ ହୋଇଯିବି।" ଏହା ଶୁଣି ରାମକୃଷ୍ଣ ତାଙ୍କୁ ଧିକ୍କାର କରି କହିଥଲେ - " ତୋତେ ଲାଜ ଲାଗୁନାହିଁ ? କେବଳ ନିଜ ମୁକ୍ତି କଥା ଚିନ୍ତା କରୁଛୁ ?, ତୁ ଗୋଟାଏ ବରଗଛ ହେବୁ ଏବଂ ତୋ ଛାଇରେ ହଜାର ହଜାର ଲୋକ ଆଶ୍ରୟ ନେବେ।" ବିବେକାନନ୍ଦ ଗୁରୁଙ୍କ ଆଦେଶରେ ଆଧ୍ୟାତ୍ମିକ ମହାସୁଖର ମୋହ ଛାଡ଼ି ବିଶ୍ୱଜନତାର ଦୁଃଖଦୁର୍ଦ୍ଦଶା ଦୂର କରିବାର ସଂକଳ୍ପ ନେଲେ ଓ ନିଜକୁ ସେଥିପାଇଁ ଉତ୍ସର୍ଗ କରିଦେଲେ। ଯୁବ ସମାଜକୁ ଆହ୍ୱାନ ଦେଇ ସେ କହୁଥିଲେ - "ସେ ଧର୍ମ ଫର୍ମ କଥା ଆରଜନ୍ମକୁ ଥାଉ, ଏବେ ଫୁଟ୍‌ବଲ୍ ଖେଳ, ଖାଅପିଅ, ନିଜକୁ ଶକ୍ତିଶାଳୀ କର ସିଂହଛୁଆ ପରି। ଯାହାଫଳରେ ତମେମାନେ ବିଶ୍ୱଜନତାର ସେବା କରିବା ପାଇଁ ନିଜକୁ ସମର୍ଥ କରିପାରିବ।"

କେତେ ମର୍ମସ୍ପର୍ଶ କଥାଟିଏ ସତେ !



# ଅଧ୍ୟାପନା, ଅଧ୍ୟୟନ ଓ ବାୟୋମେଟ୍ରିକ୍

ଯେ ଅଧ୍ୟାପନା କରେ, ସେ ଅଧ୍ୟାପକ। ଅଧ୍ୟୟନ ଏମାନଙ୍କର ମୂଳ ପୁଞ୍ଜି। ସମାଜରେ ଏମାନେ ଉଚ୍ଚ ମର୍ଯ୍ୟାଦାର ଅଧିକାରୀ। ମଣିଷର ଆତ୍ମିକ ଉନ୍ନତି ପାଇଁ ମାର୍ଗ ଦର୍ଶନ କରାଉ ଥିବା ଅଧ୍ୟାପକ/ ଅଧ୍ୟାପିକାମାନଙ୍କୁ ଅନ୍ୟାନ୍ୟ ବୃତ୍ତିଧାରୀଙ୍କ ସହ ସମକକ୍ଷ କରିବା ଆଦୌ ସମୀଚୀନ ନୁହେଁ। ଈଶ୍ୱରଙ୍କ କଥା ସମସ୍ତେ କହନ୍ତି। ତେବେ ଈଶ୍ୱରଙ୍କ ପାଖକୁ ଯଦି କେହି ପ୍ରକୃତ ରାସ୍ତା ଦେଖାଇଥାନ୍ତି, ସେମାନେ ହେଉଛନ୍ତି ଅଧ୍ୟାପକ।

ତେବେ ଅଧ୍ୟାପକ ହେବା ଏତେ ସହଜ କଥା ନୁହେଁ। କଳେବଳେ କୌଶଳେ ଅଧ୍ୟାପନା ଚାକିରି ଭିତରେ ଭର୍ତ୍ତି ହୋଇଗଲେ ଜଣେ ଅଧ୍ୟାପକ କିମ୍ୱା ଅଧ୍ୟାପିକା ହୋଇଯାଏ ନାହିଁ। ଅଧ୍ୟାପକ ହେବା ପାଇଁ ଯେଉଁ ମାପଦଣ୍ଡ (୫୫% ନମ୍ବର) ରହିଛି, ସେହି ମାପଦଣ୍ଡକୁ ସ୍ପର୍ଶ କରି ଆମେ ନିଜକୁ ଅଧ୍ୟାପକ ହେବା ପାଇଁ ଯୋଗ୍ୟ ବିଚାର କରିବା ଅତ୍ୟନ୍ତ ହାସ୍ୟାସ୍ପଦ କଥା। ଅପ୍ରିୟ ହେଲେ ବି ଏକଥା ସତ୍ୟ ଯେ ବିଗତ ତିନି ଦଶନ୍ଧି ଧରି ଓଡ଼ିଶାରେ ମହାବିଦ୍ୟାଳୟ ଶିକ୍ଷା ଓ ଅଧ୍ୟାପକ/ ଅଧ୍ୟାପିକା ଯେଉଁ ସଂକଟମୟ ପରିସ୍ଥିତିର ଶିକାର ହୋଇଛନ୍ତି, ତା'ର କାରଣ ହେଉଛି ମହାବିଦ୍ୟାଳୟ ସ୍ଥାପନା ମୂଳରେ ସ୍ୱାର୍ଥାନ୍ୱେଷୀ ଚେତନା। ପ୍ରତିଯୋଗିତାପୂର୍ଣ୍ଣ ପରିସ୍ଥିତିରେ ସରକାରୀ ଚାକିରିଟିଏ ପାଇବାକୁ ଅକ୍ଷମ ଥିବା ପୁତ୍ର କନ୍ୟାମାନଙ୍କର ଅଭିଭାବକମାନେ କଲେଜଟିଏ ସ୍ଥାପନ କରି ସେମାନଙ୍କର ଅନ୍ନ ସଂସ୍ଥାନର ବ୍ୟବସ୍ଥା କରିଥାନ୍ତି। ନିଜର ଝିଅ-ଜ୍ୱାଇଁ, ପୁଅ-ବୋହୂ ତଥା ଅନ୍ୟାନ୍ୟ ଆତ୍ମୀୟ ସ୍ୱଜନଙ୍କୁ କଲେଜର ବିଭିନ୍ନ ପଦରେ ନିଯୁକ୍ତି ଦେଇ ଦିଅନ୍ତି। ଏହି ଉପାୟରେ ଅନେକ ଅଯୋଗ୍ୟ ପ୍ରାର୍ଥୀ ପଶି ଆସିଛନ୍ତି ଶିକ୍ଷା ବିଭାଗକୁ। ଯୋଗ୍ୟତା ନଥାଇ ପରେ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ଆଉ ଥରେ ପରୀକ୍ଷା ଦେଇ ଅଥବା କଣ୍ଡୋନେସନ୍ ବା ବିଶ୍ୱବିଦ୍ୟାଳୟ ଦ୍ୱାରା ଦୟା ପ୍ରଦର୍ଶନ ମାଧ୍ୟମରେ ବି ଅନେକ ଅଯୋଗ୍ୟ ପ୍ରାର୍ଥୀଙ୍କ ଚାକିରି ବୈଧ ହୋଇଛି। ଏମାନଙ୍କ ପାଇଁ ଅନ୍ୟ ଯୋଗ୍ୟ

ଅଧିବସାୟୀ ପ୍ରତିଭାଧର ଅଧ୍ୟାପକ/ ଅଧ୍ୟାପିକାମାନେ ସମାଜରେ ହାସ୍ୟାସ୍ପଦ ହେଉଛନ୍ତି। ମହାବିଦ୍ୟାଳୟଙ୍କୁ ଅନୁଦାନ ଦେବା, ଅନୁଦାନକୁ ବ୍ଲକ୍ କରି ରଖିବା, ଅଧ୍ୟାପକ/ ଅଧ୍ୟାପିକାମାନଙ୍କ ଚାକିରି ବୈଧ କରିବା, ଚାକିରିର ସର୍ତ୍ତାବଳୀ ପାଇଁ ଯେଉଁ ଟାଳଟୁଳ ନୀତି ସରକାର ଗ୍ରହଣ କରୁଛନ୍ତି, ତା'ର ମୂଳ କାରଣ ବୋଧହୁଏ ଏଇଠି।

ଅଧ୍ୟାପନା ଏକ ପବିତ୍ର କର୍ମ। ଏହା ଅନେକ ଦାୟିତ୍ୱଶୀଳତାର ଅପେକ୍ଷା ରଖେ। ଏମାନେ ଯେଉଁ କର୍ମକ୍ଷେତ୍ରରେ କାର୍ଯ୍ୟ କରନ୍ତି, ସେଠାରୁ ବସ୍ତୁ ନୁହେଁ, ବ୍ୟକ୍ତି ସୃଷ୍ଟି ହୁଅନ୍ତି। ମଧୁବାବୁ ତାଙ୍କ ଉତ୍କଳ ଟ୍ୟାନେରୀରୁ ହଳେ ଯୋତା ନିମ୍ନମାନର ଦେଖିଲେ ଶହ ଶହ ହଳ ଯୋତା ପୋଡ଼ି ନଷ୍ଟ କରି ଦେଉଥିଲେ। କିନ୍ତୁ ଆମର ଏ ଅନୁଷ୍ଠାନମାନଙ୍କରୁ ଉତ୍ପାଦିତମାନେ ନିମ୍ନ ମାନର ହେଲେ ସେମାନଙ୍କୁ ପୋଡ଼ି ହେବନାହିଁ କି ନଷ୍ଟ କରିହେବ ନାହିଁ। ପଙ୍କ ଗାଡ଼ିଆକୁ ଗଙ୍ଗାରେ ପରିଣତ କରିବା ଦାୟିତ୍ୱ ଆମ ଅଧ୍ୟାପକ/ ଅଧ୍ୟାପିକାମାନଙ୍କର। ଆମେ ଯଦି ଆମ ଦାୟିତ୍ୱକୁ ସୂଚାରୁ ରୂପେ ସମ୍ପନ୍ନ ନ କରିବୁ, ସମଗ୍ର ଗଙ୍ଗା ପଙ୍କ ଗାଡ଼ିଆରେ ପରିଣତରେ ହେବା ପାଇଁ ମୁହୂର୍ତ୍ତେ ଲାଗିବ ନାହିଁ।

ପେଟପାଟଣାରେ ସବୁ ବୃତ୍ତିଧାରୀ ସମାନ। ସମସ୍ତଙ୍କର ଅର୍ଥର ଆବଶ୍ୟକତା ରହିଛି। ସ୍ୱଚ୍ଛନ୍ଦ ଜୀବନଟିଏ ସମସ୍ତଙ୍କୁ ଲୋଡ଼ା। ଚାପଗ୍ରସ୍ତ ଜୀବନ ବୃତ୍ତି ପ୍ରତି ବିଶ୍ୱସ୍ତ ରହି ପାରିବ ନାହିଁ। ନିଜ ଦାୟିତ୍ୱ ଠିକ୍ ଭାବେ ନିର୍ବାହ କରି ପାରିବ ନାହିଁ। ପ୍ରାଚୀନ କାଳରେ ଯେଉଁମାନେ ଅଧ୍ୟାପନା ବୃତ୍ତି ଗ୍ରହଣ କରୁଥିଲେ, ସେମାନଙ୍କ ଅନ୍ନ ସଂସ୍ଥାନର ଦାୟିତ୍ୱ ସମ୍ପୂର୍ଣ୍ଣ ରୂପେ ରାଜା ଓ ଶିଷ୍ୟମାନେ ଗ୍ରହଣ କରି ନେଉଥିଲେ। ଏପରିକି ଶିଷ୍ୟମାନେ ଭିକ୍ଷା କରି ଗୁରୁଙ୍କ ପରିବାରର ଅନ୍ନ ସଂସ୍ଥାନ ବ୍ୟବସ୍ଥା କରୁଥିଲେ। ସେମାନଙ୍କ ବୌଦ୍ଧିକ ସମ୍ବଳ ସମାଜକୁ ଦିଗ୍‌ଦର୍ଶନ ଦେଉ ଥିବାରୁ ତାଙ୍କୁ ସକଳ ବାହ୍ୟ ଚାପରୁ ମୁକ୍ତ ରଖା ଯାଉଥିଲା। ମଣିଷ ଗଢ଼ିବା ଅଭିଯନ୍ତାମାନେ ନିଶ୍ଚିତ ରୂପେ ସମାଜର ଅନ୍ୟ ସବୁ ନିର୍ମାଣକାରୀ ଯନ୍ତ୍ରୀମାନଙ୍କଠାରୁ ଊର୍ଦ୍ଧ୍ୱରେ। କହିବା ବାହୁଲ୍ୟ, ସମାଜର ସର୍ବାଙ୍ଗୀନ ଉନ୍ନତି ପାଇଁ ସାମୂହିକ ଭାବରେ ଦାୟିତ୍ୱ ନେଇଥିବା ନିର୍ମାଣକାରୀ, ପାଳନକାରୀ ଓ ସୁରକ୍ଷାକାରୀମାନେ ଏହି ମଣିଷ ଗଢ଼ା ଯନ୍ତ୍ରୀମାନଙ୍କ ଦ୍ୱାରା ଗଢ଼ା ହୋଇଛନ୍ତି। ପରୋକ୍ଷ ଭାବରେ ଏମାନେ ସ୍ରଷ୍ଟାଙ୍କର ସ୍ରଷ୍ଟା। ଯେଉଁ ଗୁରୁ ଦାୟିତ୍ୱ ସେମାନଙ୍କୁ ଅର୍ପଣ କରାଯାଇଛି, ତାହା ନିର୍ବାହ କରିବା କୌଣସି ନିର୍ଦ୍ଦିଷ୍ଟ ସମୟ ନିର୍ଘଣ୍ଟ ଭିତରେ ହୁଏନାହିଁ। ଜଣେ ଉତ୍ତମ ଅଧ୍ୟାପକ/ ଅଧ୍ୟାପିକା ଶିକ୍ଷାନୁଷ୍ଠାନ ବାହାରେ ମଧ ଛାତ୍ରଛାତ୍ରୀଙ୍କ ପାଇଁ ଅନେକ ସମୟ ଦେଇଥାଏ। ଉପକୃତ ହୋଇଥାନ୍ତି ଛାତ୍ରଛାତ୍ରୀ। ଜଣେ ଶାରୀରିକ ସ୍ତରରେ ଅସୁସ୍ଥ ହେଲେ ବେଶି କିଛି ଫରକ୍ ପଡ଼େନାହିଁ, କିନ୍ତୁ

ମାନସିକ ଅସୁସ୍ଥ ବ୍ୟକ୍ତି ସମାଜ ପାଇଁ ସମ୍ପୂର୍ଣ୍ଣ ଅକାମୀ ହୋଇଯାଏ। ଛାତ୍ରଛାତ୍ରୀଙ୍କ ଅନ୍ତଃଶକ୍ତିକୁ ଦୃଢ଼ କରିବାର ଦାୟିତ୍ୱ ବହନ କରିଥିବା ଏହି ବୁଦ୍ଧିଜୀବୀଟିର ବୌଦ୍ଧିକତା ଯେତେ ଉଚ୍ଚ ହେବ, ସମାଜ ତତୋଧିକ ସମ୍ପନ୍ନ ହେବ। ଏହା ସର୍ବ ସ୍ୱୀକାର୍ଯ୍ୟ ଥିଲା। ସେହି ହେତୁ ପର୍ଯ୍ୟାପ୍ତ ସୁଯୋଗ ଦିଆ ଯାଉଥିଲା ସେମାନଙ୍କ ବୌଦ୍ଧିକ ସମ୍ବଳର ଉତ୍ତରଣ ପାଇଁ। ସେମାନଙ୍କ ପାଇଁ କାର୍ଯ୍ୟ ଦିବସ କମ୍ ଥିଲା। ପର୍ଯ୍ୟାପ୍ତ ଛୁଟି ଦିଆ ଯାଉଥିଲା। ଦଶହରା ଛୁଟି, ଗ୍ରୀଷ୍ମ ଅବକାଶ, ଖ୍ରୀଷ୍ଟମାସ ଛୁଟି ସବୁ ବେଶ୍ ଲମ୍ବା ଥିଲା। ଏହି ସମୟମାନଙ୍କରେ ଛାତ୍ରଛାତ୍ରୀମାନଙ୍କୁ ନେଇ ସେମାନେ ଏନ୍‌ଏସ୍‌ଏସ୍, ଏନ୍‌ସିସି, ରେଡ୍‌କ୍ରସ୍, ସ୍କାଉଟ୍ସ ଗାଇଡ୍ ଆଦି ସଂସ୍ଥା ତରଫରୁ ବିଭିନ୍ନ କାର୍ଯ୍ୟକ୍ରମରେ ସାମିଲ୍ ହେଉଥିଲେ। ଗବେଷଣା କାମରେ ଛାତ୍ରଛାତ୍ରୀମାନଙ୍କୁ ମାର୍ଗଦର୍ଶନ ଦେଉଥିଲେ। ନିଜେ ଗଭୀର ଅଧ୍ୟୟନ ଅଥବା ବିଭିନ୍ନ ସେମିନାରରେ ଯୋଗଦାନ, ଭ୍ରମଣଦ୍ୱାରା ନିଜ ଜ୍ଞାନ ଗରିମାର ପରିସର ବୃଦ୍ଧି କରୁଥିଲେ ଯାହାଦ୍ୱାରା ସିଧା ସଳଖ ଉପକୃତ ହେଉଥିଲେ ଛାତ୍ରଛାତ୍ରୀ। ଏବେ ସୁଦ୍ଧା ଷ୍ଟଡି ଟୁର୍ ପାଠ୍ୟକ୍ରମର ଏକ ଅଙ୍ଗ ହୋଇ ରହିଛି। ଏସବୁ ପାଇଁ ଆମ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ସ୍ୱତନ୍ତ୍ର ବ୍ୟବସ୍ଥା କରିଛନ୍ତି। କିନ୍ତୁ ଏବେ ଏତେ ସବୁ ସୁବିଧା ସୁଯୋଗ ପାଉଛନ୍ତି ବୋଲି ତାଙ୍କରି ହାତରେ ଗଢ଼ା ହୋଇଥିବା ମଣିଷମାନେ ଈର୍ଷାନ୍ୱିତ। ଅଧ୍ୟାପକ/ ଅଧ୍ୟାପିକାମାନେ ସାତଘଣ୍ଟା କର୍ମ କ୍ଷେତ୍ରରେ ରହିବେ। ସେଥିପାଇଁ କାଇଦା କଟକଣା। ଶିକ୍ଷାନୁଷ୍ଠାନମାନଙ୍କରେ ବାୟୋମେଟ୍ରିକ୍ ବ୍ୟବସ୍ଥା ହୋଇଛି।

କହିବାର କଥା, ଜଣେ ଉତ୍ତମ ଅଧ୍ୟାପକର ମାତ୍ର ସାତଘଣ୍ଟା ନୁହେଁ, ତା'ର ଶୟନ, ସପନ, ଜାଗରଣର ପ୍ରତିଟି ମୁହୂର୍ତ୍ତ ଛାତ୍ରଛାତ୍ରୀମାନଙ୍କ ଉନ୍ନତି କଳ୍ପେ ବିନିଯୋଗ ହୋଇଥାଏ। ଅଧ୍ୟୟନ ହିଁ ଅଧ୍ୟାପକ/ ଅଧ୍ୟାପିକାଙ୍କର ସଂଜ୍ଞା ଓ ସ୍ୱରୂପ। ଶାସ୍ତ୍ରଜ୍ଞାନ ହେଉ ଅଥବା ନିଜ ଅନୁଭବସିଦ୍ଧ ପ୍ରଜ୍ଞା, ଛାତ୍ରଛାତ୍ରୀଙ୍କୁ ବଣ୍ଟନ ନ କରିବା ପର୍ଯ୍ୟନ୍ତ ତା'ର ପୂର୍ଣ୍ଣତା ପ୍ରାପ୍ତି ହୁଏ ନାହିଁ। ତା' ଅନୁଭବର ପ୍ରଥମ ଶ୍ରୋତା ଛାତ୍ରଛାତ୍ରୀ। ଏମିତି ବି ଆଦର୍ଶ ଅଧ୍ୟାପକ/ ଅଧ୍ୟାପିକା ଆମ ଭିତରେ ଅଛନ୍ତି ଯେଉଁମାନେ ନିଜ ବ୍ୟକ୍ତିଗତ ଓ ପାରିବାରିକ ଜୀବନକୁ ଅଣଦେଖା କରି ତପନିଷ୍ଠ ସାଧକଙ୍କ ପରି ନିଜର ପ୍ରଜ୍ଞା ପ୍ରତିଭାକୁ ତିଳ ତିଳ କରି ଛାତ୍ରଛାତ୍ରୀଙ୍କ ପାଇଁ ଉତ୍ସର୍ଗ କରି ଆଆନ୍ତି। ତଥାପି କ୍ଷୋଭର ସହ କହିବା ପାଇଁ ପଡୁଛି ଯେ ବହିପତ୍ର ସହ ଆଦୌ ସମ୍ପର୍କ ନଥିବା, ବିନା ଅଧ୍ୟୟନରେ ଅଧ୍ୟାପକ ବୋଲାଉ ଥିବା ମୁଷ୍ଟିମେୟ ବ୍ୟକ୍ତି ବି ଅଛନ୍ତି ଯେଉଁମାନଙ୍କ ପାଇଁ ସମଗ୍ର ଅଧ୍ୟାପକ/ ଅଧ୍ୟାପିକା ଲଜ୍ଜିତ ହେଉଛନ୍ତି ଓ ଅନ୍ୟମାନଙ୍କ ବିଷଦୃଷ୍ଟିର ଶିକାର ହେଉଛନ୍ତି।

ସେମାନେ ଶିକ୍ଷା ବିଭାଗର କଳଙ୍କ।

ଅଧ୍ୟୟନ, ଅଧ୍ୟବସାୟ ଅଧ୍ୟାପକମାନଙ୍କର ସମ୍ବଳ। ଏହି ସମ୍ବଳ ବୃଦ୍ଧି କରିବା ଯେମିତି ଆମର କର୍ତ୍ତବ୍ୟ, ସେଥିପାଇଁ ପର୍ଯ୍ୟାପ୍ତ ପରିସର ସୃଷ୍ଟି କରିବା ମଧ ସମାଜର ଦାୟିତ୍ୱ। କିନ୍ତୁ ବିଡ଼ମ୍ବନାର ବିଷୟ, ଏବେ ଆମ ଶିକ୍ଷା ବ୍ୟବସ୍ଥାର ସ୍ଥିତି ଏପରି ଯେ ଗୋଟିଏ ଗୋଷ୍ଠୀ ଏତେ ପଇସା ପାଉଛନ୍ତି ଯେ ତା'ର ଜମାଖର୍ଚ୍ଚ ହିସାବ ଓ ଇନ୍‌କମ୍ ଟ୍ୟାକ୍ସ ଦାଉରୁ ମୁକ୍ତ ହେବାର ଯୋଜନା କରୁ କରୁ ପୁଣି ମୋଟା ଅଙ୍କର ରାଶି ଜମା ହୋଇଯାଏ ଆକାଉଣ୍ଟରେ। ଅଥଚ ଆଉ ଗୋଟିଏ ଗୋଷ୍ଠୀ ସରକାରଙ୍କ ପାଖରେ ଅନୁଗ୍ରହ ଦାବି ଉପସ୍ଥାପନ, ଧର୍ମଘଟ, ଅନଶନ କରି ଯାହା ପାଆନ୍ତି, ସେଥିରେ ସେମାନଙ୍କ ସଂସାର ଚଳେନାହିଁ। ଏଇଭଳି ଅବ୍ୟବସ୍ଥିତ ଚିତ୍ତରେ ସେମାନେ କେମିତି ମଣିଷ ଗଢ଼ିବେ, ସେକଥା କେହି ଚିନ୍ତା କରନ୍ତି ନାହିଁ।

ବାୟୋମେଟ୍ରିକ୍ ବ୍ୟବସ୍ଥା ଉତ୍ତମ ପ୍ରଶାସନିକ ବ୍ୟବସ୍ଥା ହୋଇପାରେ, କିନ୍ତୁ ଜଣେ ଉତ୍ତମ ଅଧ୍ୟାପକ/ ଅଧ୍ୟାପିକା ଯିଏ ଜୀବନର ପ୍ରତିଟି ମୁହୂର୍ତ୍ତ କେବଳ ଅଧ୍ୟୟନ କରୁଥାଏ, ସେହି ଅଧ୍ୟୟନଲବ୍ଧ ଜ୍ଞାନକୁ ନିଜ ବୃତ୍ତି ପାଇଁ ଉତ୍ସର୍ଗ କରୁଥାଏ, ତା' ପାଇଁ ଏ ବାୟୋମେଟ୍ରିକ୍ ତୁଚ୍ଛ। କାର୍ଯ୍ୟ ଦିବସର ସୀମିତ ସମୟ ନିର୍ଘଣ୍ଟ ଭିତରେ ସେ ବାନ୍ଧି ହୋଇ ପାରେନା। ସେ ସକଳ ବାୟୋମେଟ୍ରିକ୍‌ର ଊର୍ଦ୍ଧ୍ୱରେ।





**ଡ. ବାସନ୍ତୀ ମହାନ୍ତି** ଆମ ସମୟର ଜଣେ ସୁପରିଚିତା ଲେଖିକା। ଭାଷା ସାହିତ୍ୟର ଅଧ୍ୟାପନା ତାଙ୍କର ବୃତ୍ତି ହୋଇଥିଲାବେଳେ ପ୍ରବୃତ୍ତି ହେଉଛି ସାହିତ୍ୟ ସାଧନାରେ ନିରନ୍ତର ମଗ୍ନ ରହିବା। ଗଳ୍ପ ପୁସ୍ତକ ରାଜଜେମା, ବିଲେଇ ଓ ଲୁଲି ପ୍ରସଙ୍ଗ, ପିତୃଋଣ, ସୁଲିଅପାର ଭାତୁଡ଼ି, ଅଭିଯୁକ୍ତା, ମାଆ, ନିର୍ବାଚିତ ଗଳ୍ପ, କୁନ୍ତୀ, ଗୀତ କୁଡ଼ିଆଣୀ ଆଦିରେ ତାଙ୍କର ସୃଜନ ଆଭା ପ୍ରତିଫଳିତ। ନୀଳଶୈଳର ପଦଚାରୀ, ସୁରେନ୍ଦ୍ର ମହାନ୍ତିଙ୍କ କଥାକୋଣାର୍କ ଭଳି ସମାଲୋଚନାଧର୍ମୀ ପୁସ୍ତକର ମନ୍ମୟ ବିଚାରଧାରା ପାଠକଙ୍କ ଦ୍ୱାରା ବେଶ୍ ଆଦୃତ।

ଚିରାଚରିତ ଜୀବନର ଗତି, ପ୍ରବୃତ୍ତି ଓ ପ୍ରକୃତିକୁ ନେଇ ତାଙ୍କର ସ୍ତମ୍ଭ ସଂକଳନଗୁଡ଼ିକ ବେଶ୍ ଭାବ ଉଦ୍ରେକକାରୀ, ସମୟୋଚିତ ଓ ବୁଦ୍ଧିଦୀପ୍ତ। ଆଜିର ସମସ୍ୟା ଓ ତା'ର ସମାଧାନର ସୂତ୍ରକୁ 'ଭୋକ ବିଳାସ' ପୁସ୍ତକରେ ଯେମିତି ଯୁକ୍ତିନିଷ୍ଠ ଢଙ୍ଗରେ ଉପସ୍ଥାପନା କରାଯାଇଛି, ତାହା ସମସାମୟିକ ବାଙ୍ମୟ ଇତିହାସ ହୋଇ ପାଠକ ପ୍ରାଣକୁ ଆଲୋକିତ କରିବ, ବିଶ୍ୱାସ ରହିଛି।



a timepass publication
NONFICTION
cover : ramakanta samantaray

